ସଂକଳକଙ୍କ ମୁଖବନ୍ଧ

## ନେତାସିଏ, କବିସିଏ : ଗୋପବନ୍ଧୁ

ଉତ୍କଳର ଯୋଗ୍ୟତମ ନେତା, ବାଗ୍ମୀ, ସାଧକ, ସାମ୍ବାଦିକ, ସମ୍ପାଦକ ଓ କବି ମନୀଷୀ ଭାବରେ ପଣ୍ଡିତ ଗୋପବନ୍ଧୁ ସାରା ଉତ୍କଳରେ ତଥା ଭାରତରେ ସୁବିଖ୍ୟାତ । ୧୯.. ମସିହାରେ ଯେତେବେଳେ ପ୍ରାଦେଶିକ ସମ୍ମିଳନୀ ଅନୁଷ୍ଠିତ ହେଉଥିଲା, ବିଶିଷ୍ଟ ବୈଜ୍ଞାନିକ ସ୍ୱଦେଶ ପ୍ରେମିକ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ତହିଁରେ ପୌରହିତ୍ୟ କରୁଥିଲେ, କାରାମୁକ୍ତ ହୋଇ ଗୋପବନ୍ଧୁ ସମ୍ମିଳନୀ ମଣ୍ଡପରେ ହଠାତ୍ ପହଞ୍ଚି ଯାଇ ସମସ୍ତଙ୍କୁ ବିସ୍ମିତ ଓ ନିର୍ବାକ କରିଦେଲେ । ସେହି ଅବସରରେ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ଭାଷଣ ଦେଲାବେଳେ ଉତ୍କଳମଣି ଆଖ୍ୟା ଦେଇ ଗୋପବନ୍ଧୁଙ୍କୁ ସ୍ୱତଃସ୍ଫୂର୍ତ୍ତ ଭାବରେ ସମ୍ମାନିତ କରିଥିଲେ । ସେହି ଦିନଠାରୁ ଆମ ଦେଶରେ ଗୋପବନ୍ଧୁ ହୋଇଛନ୍ତି "ଉତ୍କଳମଣି" ।

ମହାତ୍ମା ଗାନ୍ଧିଙ୍କର ଭାଷାରେ ଯେଉଁ ଗୋପବନ୍ଧୁ 'ତପସ୍ୱୀ,' ଥିଲେ ତ୍ୟାଗ ଓ ଅପୂର୍ବ ସାଧନା ବଳରେ, ସେହି ନେତାଙ୍କର ନାମ ଉତ୍କଳର ସୀମା ମଧ୍ୟରେ ଆବଦ୍ଧ ହୋଇ ରହିଗଲା ।

ମାତ୍ର ୧୯୭୭ର ଫେବୃୟାରୀ ମାସର ୧୨ଓ୧୩ ତାରିଖରେ ଗୋପବନ୍ଧୁଙ୍କର ଜନ୍ମଶତବାର୍ଷିକୀ ପାଳିତ ହେଉଥିଲା ଦିଲ୍ଲୀରେ । କେନ୍ଦ୍ର ସାହିତ୍ୟ ଏକାଡେମୀରେ ସେହି ଜାତୀୟ ସେମିନାର୍‌ରେ ରବୀନ୍ଦ୍ର ଭାରତୀ ବିଶ୍ୱବିଦ୍ୟାଳୟର ପୂର୍ବତନ ଭାଇସ୍ ଚାନ୍ସେଲର ଡଃ ରମା ଚୌଧୁରୀ ଗୋପବନ୍ଧୁଙ୍କ ସମ୍ପର୍କରେ ଗୋଟିଏ ନିବନ୍ଧ ପାଠ କରିଥିଲେ । ତହିଁରେ ସେ ଗୋପବନ୍ଧୁଙ୍କୁ 'ଭାରତମଣି' ବୋଲି ଉଲ୍ଲେଖ କରି ତାର ଯଥାଯଥ ...ଷଣ କରିଥିଲେ ।

ଗୋପବନ୍ଧୁଙ୍କ ଭିତରେ ଯେଉଁ ମହାନ୍ ବ୍ୟକ୍ତିତ୍ୱ ଜାଗରୂକ ରହି-ଥିଲା ଏବଂ ତା ଭିତରୁ ଯେଉଁ ବଳିଷ୍ଠ ଅଭିବ୍ୟକ୍ତି ଉଚ୍ଛାରିତ ହେଉଥିଲା, ସେହି ଭିତ୍ତି ଭୂମିରେ ତାଙ୍କୁ ଭାରତର ନେତୃଶ୍ରେଣୀରେ ଅଧିଷ୍ଠିତ କରିବାର କଥା ମାତ୍ର ଆମର ଏ ଉତ୍କଳରେ ସେଥିପାଇଁ ଉଦ୍ୟୋଗ ନାହିଁ, ପ୍ରଚେଷ୍ଟା ନାହିଁ, ଆନ୍ଦୋଳନ ନାହିଁ, ସଂଗ୍ରାମ ନାହିଁ ।

ସେତେବେଳେ ଆମଦେଶରେ ଇଂରେଜୀ ଶାସନର ପ୍ରାଦୁର୍ଭାବ । ଦେଶର ପ୍ରଜାବର୍ଗ ଦାସତ୍ୱ ଶୃଙ୍ଖଳରେ ଆବଦ୍ଧ । ଇଂରେଜୀ ଶାସନର ଅନ୍ୟାୟ ଓ ଅନ୍ୟ ଆୟ ବିରୁଦ୍ଧରେ ଧ୍ୱଜା ଉତ୍ତୋଳନ କରିବା ଅତ୍ୟନ୍ତ ଅସମ୍ଭବ । ଏପରିକି ଦେଶର ଚେତନାଶୀଳ କବି କୋବିଦବୃନ୍ଦ ଇଂରେଜୀ ଶାସନର ସ୍ତୁତିପାଠରେ ଆତ୍ମହରା ହେଉଥିଲେ । ଆମ ଓଡ଼ିଶାରେ ରାଧା-ନାଥ ରାୟ, ମଧୁସୂଦନ ରାଓ, ଗଙ୍ଗାଧର ମେହେର, ଚିନ୍ତାମଣି ମହାନ୍ତି, ନନ୍ଦକିଶୋର ବଳ, ମଦନ ମୋହନ ପଟ୍ଟନାୟକ, ପଦ୍ମଚରଣ ପଟ୍ଟନାୟକ, ବିଶ୍ୱନାଥ କର, ଗୋପାଳଚନ୍ଦ୍ର ପ୍ରହରାଜ ଓ ମୃତ୍ୟୁଞ୍ଜୟ ରଥ କବି ମନୀଷୀମାନେ ବିଦେଶୀ ଶାସନର ନାନ୍ଦୀ ପାଠ କରୁଥିଲେ ।

ଦେଶରେ ଯଦି ଗୋଟିଏ ଦଳ ତାହା କରିନାହାନ୍ତି, ତାହାହେଲେ ତାହା ସତ୍ୟବାଦୀ ଦଳ । ଗୋପବନ୍ଧୁଙ୍କୁ କେନ୍ଦ୍ର କରି ସେଇ ସର୍ବତ୍ୟାଗୀ ଦଳ ପ୍ରତିଷ୍ଠିତ ହୋଇଥିଲା । ଖଣ୍ଡିତ ଛିନ୍ନ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ କରିବା ପାଇଁ ତାଙ୍କର ଆପ୍ରାଣ ସାଧନା । ପରାଧୀନ ଦେଶରେ ମୁକ୍ତି ଓ ସ୍ୱାଧୀନତା ଆଣିବା ପାଇଁ ସେମାନେ ଆନ୍ଦୋଳନ କରୁଥିଲେ । ସମ୍ବାଦ-ପତ୍ରିକା ଓ ସାହିତ୍ୟପତ୍ରିକା ପ୍ରକାଶ କରାଇ ଚେତନା ଓ ଜାଗୃତିର ସ୍ପନ୍ଦନ ସୃଷ୍ଟି କରୁ-ଥିଲେ, ଦେଶରେ ଦାସ ଗଢିବାର ଶିକ୍ଷାକୁ ସମର୍ଥନ ନ କରି ଜାତୀୟ ସଂଗ୍ରାମର ସୈନିକ ଗଢ଼ିବାକୁ ସତ୍ୟବାଦୀରେ ବନ ବିଦ୍ୟାଳୟ ପ୍ରତିଷ୍ଠିତ କରିଥିଲେ, ବନ୍ୟା ଦୁର୍ଭିକ୍ଷର ଲୀଳାଭୂମି ଆମ ଦେଶରେ ବିପନ୍ନ ଜନତାର ସେବା କାର୍ଯ୍ୟରେ ଲିପ୍ତରହି ମଣିଷ ଧର୍ମ ସଂପାଦନ କରୁଥିଲେ । ଚନ୍ଦନ ବୃକ୍ଷର କାଠେ କାଠେ ବାସ୍ନା ରହିଥିଲା ପରି ସେତେବେଳର ସମସ୍ତ ଆନ୍ଦୋଳନ,ଅଭିଯାନ ସଂଗ୍ରାମ ଓ ସେବାଧର୍ମ ଭିତରେ ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱ ହିଁ ସ୍ପଷ୍ଟ ।

ଗୋପବନ୍ଧୁ ଯେତେବେଳେ ପୁରୀ ଜିଲ୍ଲା ସ୍କୁଲର ଛାତ୍ର, ପଞ୍ଚମ କି ଷଷ୍ଠ ଶ୍ରେଣୀର ବୋଧହୁଏ, ପୁରୀରେ ଜଣେ ସ୍ୱଦେଶ ପ୍ରେମିକ ମୁକ୍ତିଆର ଥିଲେ—ତାଙ୍କ ନାମ ଶ୍ରୀ ରାମଚନ୍ଦ୍ର ଦାଶ । ସେ ଥିଲେ ଗୋପବନ୍ଧୁଙ୍କର ଆଦ୍ୟଗୁରୁ ଓ ପଥ ପ୍ରଦର୍ଶକ ।

ଗୋପବନ୍ଧୁ ବାସୁଦେବ ରଥଙ୍କ ସହିତ ପ୍ରତିଦିନ ତାଙ୍କ ନିକଟକୁ ଯାଉଥିଲେ । ତାଙ୍କ ଘରେ ବଙ୍ଗବାସୀ, ବସୁମତୀ, ସଞ୍ଜୀବନୀ ଓ ଉତ୍କଳ ଦୀପିକା, ସମ୍ବାଦ ବାହିକା ପ୍ରଭୃତି ବଙ୍ଗଳା ଓ ଓଡ଼ିଆ ପତ୍ର ପତ୍ରିକାମାନ ନିୟମିତ ଭାବରେ ପାଠ କରିବାକୁ ସୁଯୋଗ ପାଉଥିଲେ । ସ୍କୁଲରୁ ଫେରି ଉଭୟେ ଯାଉଥିଲେ ରାମଚନ୍ଦ୍ରଙ୍କ ଗୃହକୁ । ଦିନେ ଦିନେ ରାତି ୧୨ ଟା ଯାଏ ରହୁଥିଲେ । ନାନା ପ୍ରସଙ୍ଗରେ ଆଲୋଚନା ଚାଲେ ।

ବାସୁଦେବ ପଢ଼ୁଥିଲେ ସଂସ୍କୃତ ଟୋଲରେ । ଗୋପବନ୍ଧୁ ଜିଲ୍ଲା ହାଇସ୍କୁଲରେ । ଦିନେ ରାମଚନ୍ଦ୍ର ଦାଶ ଦୁହିଁଙ୍କ ମୁଣ୍ଡରେ ହାତ ବୁଲାଇ ଆନନ୍ଦରେ କହିଥିଲେ—

ମୁଁ ତୁମ ଦୁହିଁଙ୍କୁ ମିଶାଇଦେଲି । ପ୍ରାଚ୍ୟ ପାଶ୍ଚାତ୍ୟର ମିଳନ କରାଇ ଦେଲି ।

ପ୍ରକୃତରେ ସଂସ୍କୃତ ଓ ଇଂରେଜୀରେ ଛାତ୍ର ହେଲେ ସୁଦ୍ଧା ବାସୁଦେବ ଓ ଗୋପବନ୍ଧୁଙ୍କ ଭିତରେ ରହିଥିଲା ନିବିଡ଼ ସଂପର୍କ ।

ପରେ ପରେ ରାମଚନ୍ଦ୍ରଙ୍କ ଘରକୁ ଆସିଲେ ରଘୁନାଥ ରାଓ, ଦିବାକର ଦାସ ଓ ଦିବ୍ୟ ସିଂହ ମିଶ୍ର । ପ୍ରତିଦିନର ଆଲୋଚନାରେ ଯୋଗ ଦେଇ ସଭ୍ୟ ସଂଖ୍ୟା ବଢ଼ାଇଥିଲେ ।

୧୮୯୭ରେ ରଘୁନାଥ ରାଓ ଶିକ୍ଷା ବିଭାଗର ଡେପୁଟି ଇନସ୍ପେକ୍ଟରଙ୍କ ଅଫିସରେ ନିଯୁକ୍ତି ଲାଭ କଲେ, ଦିବାକର ଦାସ କଲିକତାରୁ ଏଣ୍ଟ୍ରାନ୍ସ ପାସ୍ କରି ପୁରୀ ଆସି ଷ୍ଟେଟ୍ସ୍‌ମ୍ୟାନ ଇଂରେଜୀ ପତ୍ରିକାର ସମ୍ବାଦଦାତା ଭାବରେ କାର୍ଯ୍ୟ କଲେ । ଦିବ୍ୟସିଂହ ମିଶ୍ର ବି. ଏ. ପାସ୍ କରି ସହକାରୀ ଶିକ୍ଷକ ହୋଇ ଜିଲ୍ଲା ସ୍କୁଲରେ ନିଯୁକ୍ତ ହେଲେ ।

ସେତକବେଳେ ଗୋଟିଏ ଘଟଣା ପୁରୀରେ ବେଶ୍ ଏକ ଚମକ ଓ ଚହଳ ପକାଇ ଦେଇଥିଲା—ସେଇ ସମୟରେ ଗୋରା ଅଫିସର ମାନେ ଯେଉଁ ଅନ୍ୟାୟ ଅତ୍ୟାଚାର କରୁଥିଲେ ସେ ଘଟନାରେ ଆଉ ସେପରି କରିବାକୁ ସାହସ କରି ପାରୁ ନ ଥିଲେ—

ଜଣେ ଗୋରା ସାହେବ ପୁରୀରେ ଥିଲେ ସିଭିଲ ସର୍ଜନ । ତାଙ୍କ ବିରୁଦ୍ଧରେ ଷ୍ଟେଟ୍‌ସ୍‌ମ୍ୟାନ ପତ୍ରିକାରେ ଏକ ସମ୍ବାଦ ପ୍ରକାଶିତ ହେଲା । ସମ୍ବାଦଦାତା ଭାବରେ ସେ ଦିବାକରଙ୍କ ଉପରେ ଖୁବ୍ ଉତ୍କ୍ଷିପ୍ତ ହୋଇଗଲେ ଏବଂ ବଡ଼୍ ରାସ୍ତାରେ ତାଙ୍କୁ ଅପମାନ ଦେଇ ବେତାଘାତ କଲେ । ତାହା ଜାଣିଲାକ୍ଷଣି ମୁକ୍ତିଆର ରାମଚନ୍ଦ୍ର ଦାଶ ଓ ଗୋପବନ୍ଧୁ ମିଶି ସାହେବଙ୍କ ବିରୁଦ୍ଧରେ ଏକ ଅସମ୍ଭାଳ ପରିସ୍ଥିତି ସୃଷ୍ଟିକଲେ । ଶେଷରେ ସାହେବ ସେଇ ସ୍ଥାନକୁ ଯାଇ ଦିବାକରଙ୍କୁ କ୍ଷମା ଭିକ୍ଷା କଲେ ।

ସେତେବେଳେ ଓଡ଼ିଆ ସାହିତ୍ୟ ଆକାଶରେ ଦେଖା ଦେଇଥିଲା "ଇନ୍ଦ୍ରଧନୁ" ଓ "ବିଜୁଳି" ଦୁଇଟି ସାହିତ୍ୟ ସମାଲୋଚନା ପତ୍ରିକା । ମହା-କବି ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ ସୃଷ୍ଟିର ପୃଷ୍ଠ ପୋଷଣ କରୁଥିଲା ଇନ୍ଦ୍ରଧନୁ ଏବଂ କବିବର ରାଧାନାଥଙ୍କ ରଚନାକୁ ସମର୍ଥନ କରୁଥିଲା ବିଜୁଳି । ପ୍ରଥମଟି କଟକରୁ ଓ ଦ୍ୱିତୀୟଟି ବାମଣ୍ଡାରୁ ପ୍ରକାଶିତ ହେଉଥିଲା ।

କବିବର ରାଧାନାଥ ରାୟ ସେତେବେଳକୁ ଓଡ଼ିଶା ସ୍କୁଲ ସମୂହର ଇନସ୍‌ପେକ୍ଟର । ଇନ୍ଦ୍ରଧନୁରେ ତାଙ୍କର ବିରୁଦ୍ଧରେ ଗୋଟିଏ ବ୍ୟଙ୍ଗ କବିତା ପ୍ରକାଶିତ ହେଲା, ତାହାର କେତୋଟି ପଂକ୍ତି—

"କେତେ ଦୂରେ ଛନ୍ତି ଧଉଡ଼ିଆ ପଣ୍ଡିତମନ୍ୟ
ବାଉର ସାହିରେ ଶୃଗାଳ କେଶରୀ
ପରି, ହେଉଥାନ୍ତି ଗଣ୍ୟ"

କଥା ଲୁଚି ରହି ପାରିଲା ନାହିଁ—ଜଣାଗଲା, ତାର ଲେଖକ ପୁରୀ ଜିଲ୍ଲା ସ୍କୁଲର ଜଣେ ଛାତ୍ର—ଗୋପବନ୍ଧୁ ଦାସ । ରାଧାନାଥ ସେଇ କବିତାର ଶରବ୍ୟ । ହଠାତ୍ ପୁରୀ ଜିଲ୍ଲା ସ୍କୁଲ ପରିଦର୍ଶନରେ ଯାନ୍ତି,

ରାଧାନାଥ । ଗୋପବନ୍ଧୁ ସେଇ କବିତାର ଲେଖକ—ସେଥିପାଇଁ ତାଙ୍କୁ ଶାସ୍ତି ଦିଆଗଲା । ତାଙ୍କର ବୃତ୍ତି କାଟି ଦିଆଗଲା, କ୍ଲାସରେ ବେଞ୍ଚଉପରେ ଛିଡ଼ା ହେବାପାଇଁ ଦଣ୍ଡ ମିଳିଲା ।

ତାହା ଶୁଣିଲାକ୍ଷଣି ଶ୍ରୀ ରାମଚନ୍ଦ୍ର ଦାସ ହେଡ୍‌ମାଷ୍ଟର ଶ୍ରୀ ଗୋପାଳ ଦାସ ସରକାରଙ୍କ ନିକଟକୁ ଯାଇ ସ୍କୁଲରୁ ଗୋପବନ୍ଧୁଙ୍କ ସାର୍ଟିଫିକେଟ୍ ଆଣିବାକୁ ଦାବି କଲେ । ହେଡ୍‌ମାଷ୍ଟର ଇନସ୍‌ପେକ୍ଟରଙ୍କୁ ଜଣାଇଲେ—ତାହାର ଗୋଟାଏ ସମାଧାନ ହେଲା—ବେଞ୍ଚ ଉପରେ ଆଉ ଛିଡ଼ା ହେବାକୁ ହେଲା ନାହିଁ ! ମାତ୍ର ଯେଉଁ ବୃତ୍ତି କାଟି ଦିଆ ହୋଇଥିଲା ଗୋପବନ୍ଧୁ ତାହା ଆଉ ପାଇଲେ ନାହିଁ ।

ଗୋପବନ୍ଧୁ ବାଲ୍ୟକାଳରୁ କିପରି ବୈପ୍ଳବିକ ମନୋବୃତ୍ତିର ଅଧିକାରୀ ଥିଲେ ତାହା ଏଇ ଘଟଣାରୁ ସ୍ପଷ୍ଟ ।

ପରେ ରାଧାନାଥଙ୍କ ସହିତ ଗୋପବନ୍ଧୁଙ୍କର ସମ୍ପର୍କ ଅତ୍ୟନ୍ତ ନିବିଡ଼ ହୋଇଥିଲା । (ଆଉ ଗୋଟିଏ ଘଟଣା—ଗୋପବନ୍ଧୁ ରେଭେନ୍‌ସା କଲେଜ୍‌ରେ ୨ୟ ଶ୍ରେଣୀର ଛାତ୍ର । ପତ୍ର ପତ୍ରିକାରେ ତାଙ୍କର ଲେଖା ବାହାରୁ ଥାଏ । ସେ ରହୁଥାନ୍ତି ହଷ୍ଟେଲ୍‌ରେ, ଯାହା ବର୍ତ୍ତମାନ ରେଭେନ୍‌ସା କଲେଜିଏଟ୍ ସ୍କୁଲର ହଷ୍ଟେଲ । ହଠାତ୍ ଦିନେ ସନ୍ଧ୍ୟା ସମୟରେ ସେଇ ଛାତ୍ରାବାସରେ କବି ରାଧାନାଥଙ୍କର ଆବିର୍ଭାବ । ଗୋପବନ୍ଧୁଙ୍କୁ ଡାକି ଉଚ୍ଛ୍ୱସିତ ପ୍ରଶଂସା କଲେ—ସେଇ ମାସର ମୁକୁରରେ ପ୍ରକାଶିତ ଗୋପବନ୍ଧୁଙ୍କର ଗୋଟିଏ କବିତା ପାଇଁ । କବିତାର ଦିଓଟି ପଂକ୍ତି ହେଲା—

> "ଅବନ୍ଧୁ ଜୀବନ ଅସୂର୍ଯ୍ୟ ମହୀ
> 'ଦେହ ଧରି କିଏ ପାରିବ ସହି ?")

ଗୋପବନ୍ଧୁ ୧୯୦୨ ରେ ଖଣ୍ଡିଏ କାବ୍ୟ ରଚନା କରିଥିଲେ—'କବି କଳ୍ପଲତା' । ପାଣ୍ଡୁ ଲିପିଟି କବି ରାଧାନାଥଙ୍କୁ ଦେବାରେ ସେ ତାହା ଉପରେ ଅଭିମତ ଦେଇଥିଲେ—

"ଗୋପବନ୍ଧୁ ! ତୁମ କାବ୍ୟ ଚମତ୍କାର ହୋଇଛି । ତୁମର ଏ ରଚନା ପ୍ରାଣରୁ ନିସୃତ । ଏଭଳି ଲେଖା ମୁଁ ଦେଖି ନଥିଲି ।"

ସେଇ କାବ୍ୟ ଖଣ୍ଡିକ ପୃଥିବୀର ଆଲୋକ ଦେଖି ପାରିଲା ନାହିଁ । ଥରେ ରେଳ ଗାଡ଼ିରେ ଯିବା ସମୟରେ ତାହା କେଉଁଠି କେମିତି ହଜିଗଲା । ଗୋପବନ୍ଧୁ ପରେ ଗଭୀର ଦୁଃଖର ସହିତ କହିଥିଲେ, "ଇଚ୍ଛାମୟ ଇଚ୍ଛା ଭିନ୍ନ ବୋଧହୁଏ । ଏପରି କାବ୍ୟ କବିତା ଲେଖିବା-ପାଇଁ ତାଙ୍କର ମୋଟି ଇଚ୍ଛା ନୁହେ ନିଶ୍ଚୟ ।"

ରାଧାନାଥ ଓଡ଼ିଆ ସାହିତ୍ୟରେ ଯେଉଁ ଧାରାର ସ୍ରଷ୍ଟା ଓ ଯେଉଁ ଭାବର ପ୍ରବକ୍ତା ଗୋପବନ୍ଧୁଙ୍କର ସେଇ'କବି କଳ୍ପଲତା ସେଇ ଧାରା ଓ ସେଇ ଧରଣର । କବି କଳ୍ପଲତା ହଜିଗଲା । ତହିଁରେ ପୃଷ୍ଟ ଫୁଟାଇବା ପାଇଁ ଯତେ ଯେପରି ଗୋପବନ୍ଧୁଙ୍କର ଜନ୍ମ ନୁହେ । ଧର୍ମ ନୁହେ ମଧ୍ୟ ।

ତା ପୂର୍ବରୁ ମଧ୍ୟ ଗୋପବନ୍ଧୁଙ୍କର କେତେକ କବିତା ନଷ୍ଟ ହୋଇ ଯାଇଥିଲା । ଏ ସଂପର୍କରେ ଗୋପବନ୍ଧୁଙ୍କ ନିଜ ଭାଷାରେ ବର୍ଣ୍ଣନାକରିବାର ଲୋଭ ମୁଁ ସମ୍ବରଣ କରି ପାରୁ ନାହିଁ ।

"ବହୁ ଯତ୍ନ ସହକାରେ ଏଥି ପୂର୍ବେ ଅନେକ ଗୁଡ଼ିଏ ପଦ୍ୟ ଲେଖିଥିଲି କିନ୍ତୁ ଦୁର୍ଭାଗ୍ୟ ବଶତଃ ସେ ସକଳ ଦୁଇବାର ନଷ୍ଟ ହୋଇ ଯାଇଅଛି । ଶେଷଥର ନିତାନ୍ତ ବ୍ୟଥିତ ହୋଇ କବିତା ଦେବୀଙ୍କଠାରୁ ଚିର ବିଦାୟ ଗ୍ରହଣ କରିବା ଲାଗି ଯେ ପଦ୍ୟଟି ରଚନା କରିଥିଲି ସେହି ପଦ୍ୟର ପ୍ରଥମ ତିନିପଦ ଏହି "କବିତା ଦେବୀଙ୍କ" ପ୍ରଥମ ତିନି ପଦ ସଙ୍ଗେ ଅବିକଳ ସମାନ । କିନ୍ତୁ ଚତୁର୍ଥ, ପଞ୍ଚମ ଏହାଠାରୁ ଭିନ୍ନ ।

ତୋ ଚରଣ ସେବି ସୁଖେ କାଟିବି ଜୀବନ
ବାଳକାଳୁଁ ପୋଷିଥିଲି ଏହି ଅଭିଳାଷ,
ଜାଣିଲି ସେ ସାଧୁ କାର୍ଯ୍ୟ ନୁହେ ମୁଁ ଭାଜନ
ସଂସାର ଘଟନା ଚକ୍ରେ ହୋଇଣ ବିମୁଖ । –

ସୁଧାମୟୀ ତୋ ସେବାରେ ନୁହଇ ମୁଁ କ୍ଷମ,
ଚିରଦିନ ଲାଗି ଏବେ ଦିଅ ଗୋ ବିଦାୟ ।
କରିବ କିପାଇଁ ଆଉ ପଣ୍ଡ ପରିଶ୍ରମ ?
ମୋ ବନ୍ଧୁ ଉଦ୍ୟମେ ସତ୍ତ ? ହୁଅ ଗୋ ସହାୟ ।

ପ୍ରେମାସ୍ପଦ ବନ୍ଧୁ ଶ୍ରୀ ବୈଦ୍ୟନାଥ ମିଶ୍ରଙ୍କର ପଦ୍ୟ ରଚନା ପ୍ରତି ନୂତନ ରୁଚି ଦେଖି ତାହାଙ୍କ ଉତ୍ସାହାର୍ଥେ ଉକ୍ତ ବିଦାୟ ଗ୍ରହଣ ପଦ୍ୟଟି ତାଙ୍କୁ ଅର୍ପିତ ହୋଇଥିଲା କିନ୍ତୁ ମୋହର ସମସ୍ତ ବନ୍ଧୁ ପୁନରାୟ ଲେଖିବାକୁ ନିତାନ୍ତ ଅନୁରୋଧ କରିବାରୁ ଏବଂ ସମୟ କ୍ରମେ ମନର ପରିବର୍ତ୍ତନ ଘଟିବାରୁ ଏହି ପଦ୍ୟ କେତୋଟି ଲେଖିଅଛି ।"

ଉପରୋକ୍ତ ପଂକ୍ତି ହିଁଉଛି "କବିତା ଦେବୀ" କବିତାର ବର୍ତ୍ତମାନ ମୁଦ୍ରଣରେ ନାହିଁ । ପଞ୍ଚମ ପଦର ଶେଷ ପଂକ୍ତିରେ ଥିଲା—

"ବହୁବାର ସତ୍ନେ ଯେଣୁ ହୋଇଛି ନିରାଶ"
ତାହାର ପରିବର୍ତ୍ତେରେ ବର୍ତ୍ତମାନ ହୋଇଛି—
"ପ୍ରକାଶୁ ଏ ପ୍ରାଣେ ପୁଣ୍ୟ ମଧୁର ଉଚ୍ଛ୍ୱାସ ।"

ଉପରୋକ୍ତ କେତୋଟି ପଂକ୍ତିରେ କବିତା ରାଜ୍ୟରୁ ଗୋପବନ୍ଧୁଙ୍କର ବିଦାୟ ପୁଣି କବିତା ରାଜ୍ୟକୁ ଫେରିବା ସମ୍ବାଦଟି ଗୋଟିଏ ଲୋଭନୀୟ ବିଷୟ ।

ମୁକ୍ତିଆର ରାମଚନ୍ଦ୍ର ଦାସଙ୍କର ପ୍ରଭାବ ଗୋପବନ୍ଧୁ ପ୍ରଭୃତିଙ୍କ ଉପରେ ଗଭୀର ରେଖାପାତ କରୁଥିଲା । ଗୋପବନ୍ଧୁ ଛୁଟିରେ କଟକରୁ ଯାଇ ତାଙ୍କର ପାଖରେ ସମୟ କାଟୁଥିଲେ । ଦିନେ ମୁକ୍ତିଆରଙ୍କ ପାଖରେ ବସିଥିଲେ ଗୋପବନ୍ଧୁ ଓ ତାଙ୍କର ସହକର୍ମୀ ଗୁରୁଜଣ ରାମଚନ୍ଦ୍ର ତାଙ୍କ ମନର ସଂକଳ୍ପ ପ୍ରକାଶ କଲେ—"ତୁମେ ପାଞ୍ଚଜଣ ଶପଥ ନିଅ, ପ୍ରତ୍ୟେକେ ଅନ୍ତତଃ ପାଞ୍ଚଜଣଙ୍କୁ ଶିକ୍ଷିତ କରିବାର ଦାୟିତ୍ୱ ନେବ । ଯିଏ ଶିକ୍ଷିତ ହେବେ ସେମାନେ ପ୍ରତ୍ୟେକେ ଆଉ ପାଞ୍ଚ ଜଣଙ୍କୁ ଶିକ୍ଷିତ କରାଇବେ । ତାହା ହେଲେ ପାଞ୍ଚ ବର୍ଷ ଭିତରେ ଓଡ଼ିଶାରେ ଶିକ୍ଷିତ ମାନଙ୍କର ସଂଖ୍ୟା ବହୁତ ହୋଇଯିବ ।"

୧୯୦୦ ରେ ମୁକ୍ତିଆର ରାମଚନ୍ଦ୍ର ଦାଶଙ୍କର ଏକମାତ୍ର ପୁତ୍ର ଏକବର୍ଷ ବୟସରେ ଆରପୁରକୁ ଚାଲିଗଲା । ତାହା ଶୁଣି ଗୋପବନ୍ଧୁ କଟକରୁ ଧାଇଁ ଆସିଥିଲେ । ଶୋକାର୍ତ୍ତ ହେବା ଦୂରେ ଥାଉ, ରାମଚନ୍ଦ୍ର ଦାଶ ପ୍ରାର୍ଥନା କରିଲେ "ହେ ପ୍ରଭୁ ଭବିଷ୍ୟତରେ ମୋତେ ଆଉ ପୁଅ ଦିଅନ୍ତୁ ନାହିଁ—ତାହା ହେଲେ ମୁଁ ମୋର ସଂସାର ବନ୍ଧନରେ ଦୁନିଆ ଭୁଲିଯିବି ।"

ଆଦ୍ୟଗୁରୁଙ୍କର ସେଇ ମନୋଭାବ ଗୋପବନ୍ଧୁଙ୍କ ଭିତରେ ରହିଗଲା । ସେଇଥି ପାଇଁ ଗୋପବନ୍ଧୁ ପୀଡ଼ିତ ପୁତ୍ରକୁ ଛାଡ଼ି ଦେଇ ବନ୍ୟାଗ୍ରସ୍ତ ଅଞ୍ଚଳରେ ଜନସେବା ପାଇଁ ଚାଲିଯାଇ ଥିଲେ—ଫେରି ଆସି ଜାଣିଲେ ପୁଅ ଆଉ ନାହିଁ । ମାତ୍ର ତାଙ୍କ କଣ୍ଠରୁ ଫୁଟି ଉଠିଲା—

"ଗୋଟିଏ ପୁତ୍ର ଦେଇ
ହୃଦୟେ ମୋହର ଶତପୁତ୍ର ମୁଁ
କୁଡାଇ ଆଣିଛି ଏଇ ।"
(ରାଧାମୋହନ)

(୧୯୦୪ ରେ ଗୋପବନ୍ଧୁ, ବୈଦ୍ୟନାଥ ଓ ଗୋପିନାଥ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ।) ରାମଚନ୍ଦ୍ର ଦାସଙ୍କର ଆନନ୍ଦ କହିଲେ ନ ସରେ । ସମସ୍ତଙ୍କୁ ପଚାରିଲେ—ବର୍ତ୍ତମାନ ତୁମେ କିଏ କ'ଣ କରିବ ? ବୈଦ୍ୟନାଥ ଓ ଗୋପିନାଥ ସରକାରୀ ଚାକିରି କରିବେ ବୋଲି ଜଣାଇଲେ, କାରଣ ତାହାହିଁ ତାଙ୍କ ଅଭିଭାବକଙ୍କର ଇଚ୍ଛା ।

ତା ପରେ ପଚାରିଲେ ଗୋପବନ୍ଧୁଙ୍କୁ—ଗୋପବନ୍ଧୁ ଭିତରେ ବିବ୍ରତ ହୋଇ ପଡ଼ିଲେ—ତାଙ୍କ ଆଖିରୁ ଅଶ୍ରୁଧାର ଝରିବାକୁ ଲାଗିଲା । ତାହା ଲୋତକ ନୁହେ ତାଙ୍କ ହୃଦୟର ବିଗଳିତ ଭାଷା । ରାମଚନ୍ଦ୍ର ତାଙ୍କୁ କୁଣ୍ଢାଇ ପକାଇ କହିଲେ "ତୁମେ ତେବେ ଓକାଲତି ପଢ଼ । ସ୍ୱାଧୀନ ବୃତ୍ତି ନେଇ ଦେଶର ସେବାକର ।

ଗୋପବନ୍ଧୁଙ୍କ ପକ୍ଷରେ ତାହା ଥିଲା ମନ୍ତ୍ର ବାଣୀ ।

ଆଇନ ଅଧ୍ୟୟନ କରିବାକୁ ଗୋପବନ୍ଧୁ କଲିକତା ଗଲେ । ୧୯୦୬ ରେ ପରୀକ୍ଷାରେ କୃତକାର୍ଯ୍ୟ ହେଲେ । ଯେଉଁଦିନ ପରୀକ୍ଷାର ଫଳ ବାହାରିଲା ସେଇଦିନ ଶୁଣିବାକୁ ପାଇଲେ, ସହଧର୍ମିଣୀ ମୋତି ଦେବୀଙ୍କର ମୃତ୍ୟୁ ସଂବାଦ । ଶୈଶବରେ ଜନନୀ ଯାଇଥିଲେ, ପିତା ଯାଇଥିଲେ, ତିନୋଟି ପୁତ୍ର ସନ୍ତାନ ମଧ୍ୟ ଯାଇଥିଲେ, ବର୍ତ୍ତମାନ ଗଲେ ପତ୍ନୀ । ସେଇ କଥା ଗୋପବନ୍ଧୁ ଗୋଟିଏ କବିତାରେ କହି ଯାଇଛନ୍ତି ।

"ଦେଖି ନାହିଁ ମାତୃମୁଖ ଅଜ୍ଞାନ ଶୈଶବେ
ପିତା ପୁତ୍ର ପତ୍ନୀ ବନ୍ଧୁ ବିୟୋଗ ବିଘାତ
ବାରବାର ତଡ଼ି ଦେଇ ଶୋକ ମହାର୍ଣ୍ଣବେ
ବୁଡ଼ାଇ ଦେଇଛି ବୁକେ ତୀବ୍ର କଷାଘାତ ।

ବିରହ ବିଷାଦ ବିଷେ ରସାଣିତ ଧାର
କ୍ରୂରକାଳ ବାରବାର ତୀକ୍ଷ୍ଣ କରବାଲେ,
କରିଛି ଏ ବକ୍ଷେ ମୋର ଦାରୁଣ ପ୍ରହାର ।
କୁଞ୍ଚିତ ଶୈବାଳ ସ୍ତୂପ ମାଡ଼ିଛି ମୋ ସ୍ଥଳେ ।"

ସେହି ଶୋକ ସନ୍ତାପ ମାନଙ୍କରେ ଗୋପବନ୍ଧୁ ବିଚଳିତ ହୋଇ ନାହାନ୍ତି । ଇଚ୍ଛାମୟଙ୍କର ଇଚ୍ଛା ବୋଲି ଭାବ ନେଇଛନ୍ତି । ଲବ୍ଧ ଅଭିଜ୍ଞତାକୁ ଜୀବନର ସାର୍ଥକ ପାଥେୟ ବୋଲି ମନେ କରିଛନ୍ତି—

"ଅଳପ ବୟସେ ମୋର ବହୁ ଅନୁଭବ,
ହୃଦ ନିଷ୍ପେଷିତ ମୋର ବିରହ କଷଣେ,
ଭୁଲିଛି ମୋ କଳ୍ପନାର ବିଳାସ ବୈଭବ,
ଦେଖେ ମୁଁ ଜୀବନ ଗତି ବାସ୍ତବ ନୟନେ ।"

ଗୋପବନ୍ଧୁ ତା'ପରେ ସାରସ୍ୱତ ରାଜ୍ୟରୁ ଚାଲିଯାଇଛନ୍ତି ଜୀବନର ନିଷ୍ଠୁର ବାସ୍ତବତା ପାଖକୁ । ଦେଶର ଦୁର୍ଗତି ଦେଖି ତାର ମୁକ୍ତି ଓ ସ୍ୱାଧୀନତା ପାଇଁ ପ୍ରାଣପାତ କରିଛନ୍ତି ।

ପୁଷ୍ପରେ, କଣ୍ଟକରେ ଓଡ଼ିଶାକୁ ଜଗିରହିଛନ୍ତି ମାତ୍ର ଶେଷରେ ନିଜକୁ ଡାଳି ଦେଇଛନ୍ତି ଲୋକ ସେବାରେ । ଓଡ଼ିଶାରେ ବନ୍ୟା ଓ ଦୁର୍ଭିକ୍ଷର ଆକ୍ରମଣ ବର୍ଷ ବର୍ଷ ଦେଖି ଦେଖି ସେ କାତର ହୋଇ ପଡ଼ିଛନ୍ତି ।

୧୯୧୯-୨୦ରେ ପୁରୀ ଜିଲ୍ଲାର ଗୋଟାଏ ବଡ଼ ଅଞ୍ଚଳରେ ଭୟଙ୍କର ଦୁର୍ଭିକ୍ଷ ଦେଖାଦେଲା । ହା ଅନ୍ନ ହା ଅନ୍ନ ରୋଳରେ ଗ୍ରାମଭୂମି ମୁଖରିତ ହେଲା । ଡଗର, ପୁରୀ ସଦର, ଗୋପ, ବାଲିଅନ୍ତା, ବାଣପୁର ଥାନା ଲୋକଙ୍କର ଦୁର୍ଦ୍ଦଶାର ପ୍ରତିକାର ପାଇଁ ଗୋପବନ୍ଧୁ ଆପ୍ରାଣ ଚେଷ୍ଟାକଲେ । ସବୁ ଅଞ୍ଚଳ ବୁଲି ସରକାରଙ୍କୁ ସମସ୍ତ ଅବସ୍ଥା ଜଣାଇଲେ ।

ବିହାର ଓଡ଼ିଶା କାଉନ୍‌ସିଲର ସଭ୍ୟ ଭାବରେ ଗୋପବନ୍ଧୁ ଦୁର୍ଭିକ୍ଷ ଅଞ୍ଚଳ ପାଇଁ ଯଥେଷ୍ଟ ସାହାଯ୍ୟର ଦାବି କଲେ । ଓଡ଼ିଶା ଡିଭିଜନର କମିଶନର ଗ୍ରୁନିଂ ସାହେବ ତାହା ସତ୍ୟ ନୁହେଁ ବୋଲି ପ୍ରତିବାଦ କଲେ । ସେତିକିବେଳେ ଗୋପବନ୍ଧୁ ତାଙ୍କ ରୁମାଲରୁ କେତୋଟି ମୁଠିଶାଗ ଓ ମୁଠାଏ ଖୁଦକୁଣ୍ଡା କାଢ଼ି ସଭ୍ୟମାନଙ୍କୁ ଦେଖାଇ ନିଜେ କାମୁଡ଼ି ପକାଇଲେ ଏବଂ ବଳିଷ୍ଠ ଭାବରେ ଉପସ୍ଥାପିତ କଲେ—

> "If any human being in an unknown corner on this province within the great empire of this majesty dies for want of food, I think that his blood will be upon me and upon all those who are directly or indirectly responsible for conducting the administration."

ସଭ୍ୟମାନେ ବିଚଳିତ ହୋଇଗଲେ । ଲାଟ ସାହେବ ବିଚଳିତ ହେଲା ପରି ଭାବ ଦେଖାଇଲେ । ଲାଟ ସାହେବ ନିଜେ ଆସି ଦେଖିବେ, ଆସି ଦେଖିଲେ ମାତ୍ର ସେପରି ଆଶାନୁରୂପ ବ୍ୟବସ୍ଥା କଲେ ନାହିଁ । ସାମାନ୍ୟ ମୁଠି ରିଲିଫ ଦେବାର ବ୍ୟବସ୍ଥା ହେଲା ।

ଶିକ୍ଷାର ନୂତନ ଆଦର୍ଶ ମୁଖ୍ୟ ଦେବା ଗୋପବନ୍ଧୁ ସତ୍ୟବାଦୀରେ ଯେଉଁ ବନ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ, ଯେଉଁଠି ସେ ଦେଶର ମୁକ୍ତିର ସଂଗ୍ରାମ ପାଇଁ ଉପଯୁକ୍ତ ସେନା ସୃଷ୍ଟି କରୁଥିଲେ ସେଇ ପ୍ରତିଷ୍ଠାନ ଦେଖି ମହାତ୍ମା ଉଚ୍ଛ୍ୱସିତ ଭାଷାରେ ୧୩।୪।୨୧ର young Indiaରେ ଲେଖିଥିଲେ—

"× × No wonder if I belive that with such earnest men, Swaraj is possible to attain within the year, Pandit Gopabandhu has an open-air school at Sakhi Gopal, twelve miles of this side of Puri. It is worthy of a visit. I passed a most delightful day in the midst of the boys and their teachers. It is a serious experiment in open-air teaching."

ଦେଶର ଆହ୍ୱାନରେ ଗୋପବନ୍ଧୁ ସେଇ ପ୍ରତିଷ୍ଠାନର ମୋହ ଏଡ଼ି ଦେଇ ନିଜେ ଲମ୍ଫ ଦେଇଥିଲେ ମହାତ୍ମା ଗାନ୍ଧିଙ୍କର ଅସହଯୋଗ ଆନ୍ଦୋଳନରେ ।

ଗୋପବନ୍ଧୁ ହେଲେ ସରକାରଙ୍କର ପରମ ଆତଙ୍କ । ତେଣୁ ତାଙ୍କୁ ବାହାରେ କାର୍ଯ୍ୟ କରିବାକୁ ନ ଦେଇ ମକଦ୍ଦମା ସୃଷ୍ଟିକରି ବନ୍ଦୀଶାଳାକୁ ନିଆଗଲା ।

କଟକରେ ଗୋପବନ୍ଧୁ ଓ ତାଙ୍କର ସାଥୀ ଭଗୀରଥି ମହାପାତ୍ର, ଏକରାମ ରସୁଲ, ଅଟଳ ଆଚାର୍ଯ୍ୟ ପ୍ରମୁଖଙ୍କ ନାମରେ ଯେଉଁ ମକଦ୍ଦମା ହୋଇଥିଲା ଏବଂ ବିଚାରବେଳେ ପୁଲିସ ପକ୍ଷରୁ ଯେପରି ସାକ୍ଷ୍ୟ ନିଆଗଲା ତାହା ଆଜି ଭାବିଲାବେଳକୁ "ଜ୍ଞାନ ବୁଦ୍ଧି ପରାଜିତ ସେ ତନ୍ତ୍ର ଶିକ୍ଷାରେ" ।

କନିକା ମେଳିବେଳେ ପୁଲିସ ପକ୍ଷରୁ କଟକରେ ଓ ବାଲେଶ୍ୱରରେ ଘରପୋଡ଼ି ଚାଲିଥାଏ । ସେଇ ଘଟଣାମାନଙ୍କରେ ଉପରୋକ୍ତ ମୁଦାଲି-ମାନେ ପୁଲିସ୍‌କୁ ପିଟିଛନ୍ତି ବୋଲି ପ୍ରଚାର କରାଯାଉଥାଏ । କଟକର

ଲୋକେ ଉତ୍ତ୍ୟକ୍ତ ହୋଇ ଥରେ ଜଣେ କନେଷ୍ଟବଲଙ୍କୁ ନିର୍ମମ ବାଡ଼େଇ ରକ୍ତାକ୍ତ କରିଦେଲେ । ଲୋକେ ଭଲ କରି ଜାଣିଥିଲେ ସେ ଜଣେ ପୁଲିସ ସୁପରିଣ୍ଟେଣ୍ଡେଣ୍ଟଙ୍କ ନିର୍ଦ୍ଦେଶରେ ପୁଲିସ ଗୁପ୍ତରେ ଘର ପୋଡ଼ିଦେଉଥିଲେ । ଆହତ ପୁଲିସର ସମ୍ବାଦ ପାଇ ଗୋପବନ୍ଧୁ ସ୍ୱେଚ୍ଛା ସେବକ ପଠାଇ ତାଙ୍କୁ ଆଶ୍ରମକୁ ନେଇଗଲେ । ସେ ନିଜେ ତାର ସେବାକରି ଚେତା କରାଇଲେ ରକ୍ତ ଧୁଆଧୁଇ କରିଦେଲେ, ଖାଇବାକୁ ଦେଲେ । ପୁଲିସର ଲୁଗାପଟା ରକ୍ତାକ୍ତ ହୋଇ ଯାଇଥିବାର ଦେଖି ନିଜର ଖଦଡ଼ ଖଦଡ଼ ପିନ୍ଧିବାକୁ ଦେଲେ । ମାତ୍ର ମକଦ୍ଦମାବେଳେ ସେ କନେଷ୍ଟବଲ ଯେଉଁ ସାକ୍ଷ୍ୟ ଦେଇଥିଲା ତାହା ଅପରିକଳ୍ପିତ । ଗୋପବନ୍ଧୁ ତାଙ୍କୁ ଲୁଆଡ଼େ ସ୍ୱେଚ୍ଛା ସେବକଙ୍କ ଦ୍ୱାରା ମାଡ଼ ଦିଆଇ ଖଦଡ଼ ପିନ୍ଧିବାକୁ ବାଧ୍ୟ କରିଥିଲେ । ସେଇପରି ସାକ୍ଷ୍ୟରେ ଗୋପବନ୍ଧୁ ପାଇଲେ ଦୁଇବର୍ଷ ଜେଲଦଣ୍ଡ ।

ସେଇ ବିଦେଶୀ ଶାସନ ଆଉ ଆମ ଦେଶରେ ନାହିଁ । ଗୋପବନ୍ଧୁ ଜୀବନରେ ଯେତେ ଅତ୍ୟାଚାର ସହ୍ୟ କରିଥିଲେ ତାର ପୁରସ୍କାର ସ୍ୱରୂପ ସ୍ୱାଧୀନ ଦେଶର ସ୍ୱରୂପ ସେ ନିଜେ ଜୀବନ କାଳରେ ଦେଖି ପାରିଲେ ନାହିଁ । ପରପାଇଁ ଯିଏ ତିଳତିଳ କରି ନିଜର ଲହୁ ଦେଇ ଯାଇଛନ୍ତି ସେହି ମଣିଷ ତାହା ଦେଖିପାନ୍ତେ କାହିଁ । ମୃତ୍ୟୁପଥରେ ମଧ୍ୟ ସେ ନିଜ ପାଇଁ ନୁହନ୍ତି ତାହା ସ୍ପଷ୍ଟ ପ୍ରମାଣିତ ହେଉଛି ।

ଆମ ଦେଶରୁ ବିଦେଶୀ ଶାସନ ଅପସରି ଯାଇଛି । ମାତ୍ର ସେଇ ଶାସନରେ ଅତ୍ୟାଚାରିତ ଅବିଚାରିତ ଗୋପବନ୍ଧୁ ଦେଶରେ ଆଜି ଅମର ଓ ଅଜର ।

"The actions of just
Small sweet and blossom in the just"

ଗୋପବନ୍ଧୁଙ୍କର କାବ୍ୟ କବିତା ନିଅଖଣ୍ଡି ପୁସ୍ତିକାରେ ପ୍ରକାଶିତ ହୋଇଛି—

୧—ଅବକାଶ ଚିନ୍ତା
୨—କାରା କବିତା

୩—ବନ୍ଦୀର ଆତ୍ମକଥା
୪—ଧର୍ମପଦ
୫—ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନ
୬—ଗୋମହାତ୍ମ୍ୟ

"ଅବକାଶ ଚିନ୍ତା"ରେ ପ୍ରତିଫଳିତ ହୋଇଛି ଗୋପବନ୍ଧୁଙ୍କର ଈଶ୍ୱରପ୍ରୀତି, ଦେଶପ୍ରୀତି ଓ ମାନବ ପ୍ରୀତି । ତାଙ୍କର ଉତ୍ତର-ରଚନା ମାନଙ୍କରେ ତା ସବୁ ପୁଷ୍କଳ ଓ ପରିପୁଷ୍ଟ ହୋଇଅଛି ।

କାରା-କବିତା ଓ ବନ୍ଦୀର ଆତ୍ମକଥାରେ ଦେଶ ଓ ଦଶ ପାଇଁ ବିପ୍ଳବ କରି ଗୋପବନ୍ଧୁ କାରାବରଣ କରିଛନ୍ତି—ସେଠାରେ ନିପୀଡ଼ନ ସହ୍ୟ କରିଛନ୍ତି କିନ୍ତୁ ସେତିକ ତାଙ୍କ ଦୃଷ୍ଟିରେ ଯଥେଷ୍ଟ ନୁହେଁ । ଜୀବନ ଉତ୍ସର୍ଗ କରି ଦେବାରେ ତାହାର ପରିପୂର୍ତ୍ତି ।

ତେଣୁ ବନ୍ଦୀ କବି ବାଛି ନେଇଛି "ଧର୍ମପଦ"ର ଆତ୍ମବଳି ଜାତି ପାଇଁ ଗଣ ପାଇଁ ସେ କିପରି ଜୀବନ ଡାଳି ଦେଇଛି । ଦେଶରେ ଜୀବନ ବଳି ନ ଦେଲେ ଦେଶର ମୁକ୍ତି ଓ ସ୍ୱାଧୀନତା ସୁଦୂର ପରାହତ ।

ଅନ୍ୟ ପାଇଁ ଜୀବନ ବଳିଦେଲେ, ମୃତ୍ୟୁ ବରଣ କରିନେଲେ ତାହା ମୃତ୍ୟୁରେ ବିଲୀନ ହୋଇଯାଏ ନାହିଁ—ସେ ଜୀବନ ମୃତ୍ୟୁ ବିଜୟୀ । ତେଣୁ ଗୋପବନ୍ଧୁ ରଚନା କରିଛନ୍ତି ନଚିକେତା ଉପାଖ୍ୟାନ । ଯେଉଁ ନଚିକେତା ସତ୍ୟପାଇଁ ପିତାଙ୍କର ନିର୍ଦ୍ଦେଶରେ ମୃତ୍ୟୁ ପୁରକୁ ଯାଇଥିଲା ମାତ୍ର ସତ୍ୟସନ୍ଧ ଜୀବନର ମୃତ୍ୟୁ ନାହିଁ । ନଚିକେତା ମୃତ୍ୟୁଠାରୁ ବର ଆହରଣ କରି ଫେରି ଆସିଛି ପିତାଙ୍କ ନିକଟକୁ । ତେଣୁ କବି ତାଙ୍କ କାବ୍ୟ ପାଇଁ ସେ କଥାବସ୍ତୁ ଗ୍ରହଣ କରନ୍ତି । ଗୋପବନ୍ଧୁଙ୍କର ଚରମ ସ୍ୱପ୍ନ ତହିଁରେ ପ୍ରତିଫଳିତ ।

ବନ୍ଦୀର ଆତ୍ମକଥାରେ ଠାଏ ଗୋପବନ୍ଧୁ କହନ୍ତି—

"ଆସିଥିଲି ଥରେ ଦୁଇବର୍ଷ ତଳେ
ବୁଡ଼ିଥିଲି ଜେନାପୁର ଯେବେ ଜଳେ ।

କେତେ ଗ୍ରାମ କେତେ ଘର କେତେ ଧନ
ହୋଇଥିଲା ବନ୍ୟାବପ୍ଳାବେ ଉଚ୍ଛନ୍ନ ।
କେତେ ଗ୍ରାମଦାଣ୍ଡେ ଗ୍ଳୁଥିଲା ସୁଅ
କେତେ ନୟନରୁ ବହୁଥିଲା ଲୁହ ।
କେତେ ନରନାରୀ, କେତେ ଗୋରୁଗାଈ
ମରୁଥିଲେ କଷ୍ଟେ ଆହାର ନ ପାଇ ।"

ଗୋପବନ୍ଧୁଙ୍କର ସମବେଦନା ଓ ସହାନୁଭୂତି କେବଳ ମଣିଷ ମାଇଁ ସୀମିତ ନ ଥିଲା ମଣିଷର ଦୁଃଖ ଦୁର୍ଗତି କଥା ଭାବୁ ଭାବୁ ସେ ଭାବଛନ୍ତି ଯିଏ ଲୁଣ୍ଡ ଫିଟାଇ ନଜର ଦୁଃଖ କହି ପାରବ ନାହିଁ Dumb, **driven cattle,**—ସେଇ ଜୀବଜନ୍ତୁ ସେଇ ଗୋରୁଗାଈ ।

ତେଣୁ ଆମ ଦେଶରେ ଗୋ ଜାତିର ଯାହା ଦୁର୍ଗତି ତାଙ୍କର ବର୍ଣ୍ଣ-ନ୍ତାଣ ଓ କବପ୍ରାଣ ସୃଷ୍ଟି କରଚ "ଗୋ ମହାତ୍ମ୍ୟ ।"

ସେଇ ବଶ୍ୱମରମୀ ଓ ବଶ୍ୱଦରଦୀ କବଙ୍କର ମନ ଓ ହୃଦୟ ତାଙ୍କର କାବ୍ୟ କବତାରେ ଜଡ଼ିତ ହୋଇ ରହିଚ୍ଛି ।

"ଦେଖ ମୁଁ ଜୀବନ ଗତି ବାସ୍ତବ ନୟନେ" ।

## ଅବକାଶ ଚନ୍ତା

ଗୋପବନ୍ଧୁଙ୍କର କବତା-ସ୍ୱପ୍ନର ପ୍ରଥମ ରୂପାୟନ—'ଅବକାଶ ଚନ୍ତା' । ତାହାର ଭିତରେ ଯେଉଁ ସ୍ୱର ଫୁଟି ଉଠିଚ ତାହା ବେଶ୍ ପ୍ରାଣିତ ଓ ପ୍ରାଣବନ୍ତ ।

ପ୍ରକୃତି ଓ ମଣିଷ ପରସ୍ପର ଅଙ୍ଗାଙ୍ଗୀଭାବେ ସମ୍ପୃକ୍ତ—ଠିକ୍ ବାକ୍ ଓ ଅର୍ଥ ପର । "ବାଗର୍ଥାବବ ସମ୍ପୃକ୍ତୌ" । ଗୋପବନ୍ଧୁ ତେଣୁ ତାଙ୍କର 'କବତା ବେଳା' ରେ ପ୍ରାଞ୍ଜଳ ଭାବରେ କହିଯାଇଛନ୍ତି—

"ପ୍ରକୃତିର ବିଚିତ୍ରତା ଶୋ ପବିତ୍ର ଅଙ୍ଗେ
ନାନାବିଧ ମାନବର ବିଭିନ୍ନ ସ୍ୱଭାବ,
ହୋଇଣ ପ୍ରତି ଫଳିତ ଆହା କେଡ଼େ ରଙ୍ଗେ
ଉପୁଜାଏ ହୃଦ କ୍ଷେତ୍ରେ ନବ ନବ ଭାବ ।"

ଗୋପବନ୍ଧୁ ଉପରଲିଖିତ ଗୁଚ୍ଛିଏ ପଂକ୍ତିରେ କହିଛନ୍ତି ପ୍ରକୃତିର ଶିଶୁ ଓ ମଣିଷର ଚରିତ୍ର କବିତାର ମନୋଜ୍ଞ ଉପାଦାନ ।

ଅଦ୍ୟତନ 'ଅବକାଶ ଚିନ୍ତା' ପୃଷ୍ଠାରୁ ସମାହାର ଓ ୩୯ଟି କବିତାର ସଂପ୍ରସାରଣ । ମାତ୍ର ତାହା ୧୮୯୯ରେ ଓଡ଼ିଶା ପେଟ୍ରିୟଟ୍ ପ୍ରେସରୁ "କର୍ତ୍ତବ୍ୟ ବୋଧିନୀ ସମିତି"ର ବାର୍ଷିକ ଉତ୍ସବ ଉପଲକ୍ଷରେ ପ୍ରକାଶିତ ହୋଇଥିଲା । ସେତେବେଳେ ତାର କଳେବର ଥିଲା ଅତ୍ୟନ୍ତ ଶୀର୍ଣ୍ଣ, କ୍ଷୀଣାଙ୍ଗ—କେବଳ ୧୯ଟି ପୃଷ୍ଠାରେ ନଅଟି କବିତାର ସଙ୍କଳନ ।

୧—କବିତା ଦେବୀ
୨—କାଠଯୋଡ଼ି ତଟରେ ସାୟଂକାଳ (୧)
୩—କାଠଯୋଡ଼ି ତଟରେ ସାୟଂକାଳ (୨)
୪—କାଠଯୋଡ଼ି ତଟରେ ଚନ୍ଦ୍ରାଲୋକ ନିଶୀଥ
୫—ପଣ୍ଡିତ ହରିହର ଦାସ ଶର୍ମା
୬—ମୋ ନାମ
୭—ଚନ୍ଦ୍ର
୮—କୋକିଳ
୯—ଗ୍ରୀଷ୍ମେ ଝୁଣ୍ଟା ଗଛ

ଅବକାଶ ଚିନ୍ତାର ପ୍ରଥମ ପ୍ରକାଶରେ ତହିଁରେ ଗୋଟିଏ ଉତ୍ସର୍ଗ ପତ୍ର ସନ୍ନିବିଷ୍ଟ ହୋଇଥିଲା । ବର୍ତ୍ତମାନ ତାହା ତହିଁରେ ପରିଦୃଷ୍ଟ ହେଉ-ନାହିଁ । ପାଠକ ପାଠିକାମାନଙ୍କର କୌତୂହଳ ନିବୃତ୍ତି ପାଇଁ ତାହା ନିମ୍ନରେ ଉଲ୍ଲେଖ କରୁଅଛୁ—

"କଠିନ ସାଧନା ଦ୍ୱାରା ଯେଉଁ ମହାତ୍ମା ପ୍ରାଚୀନ ଆର୍ଯ୍ୟ ଜ୍ୟୋତିର୍ବିଦ୍ୟାରେ ସିଦ୍ଧି ଲାଭ କରି ଉତ୍କଳର ନାମକୁ ଗୌରବାନ୍ୱିତ କରି

ଅଛନ୍ତି, ଯାହାଙ୍କ ଜୀବନରେ ଆର୍ଯ୍ୟ ଋଷି ପ୍ରାଣ ପ୍ରତିଫଳିତ ହୋଇଅଛି, ଏବଂ କବି ଯାହାଙ୍କୁ "ଶ୍ମଶାନେ ତୁଳସୀ" ଆଖ୍ୟା ପ୍ରଦାନ କରିଅଛନ୍ତି, ସେ ମହାମହୋପାଧ୍ୟାୟ ସାମନ୍ତ ଶ୍ରୀ ଚନ୍ଦ୍ରଶେଖର ହରିଚନ୍ଦନ ମହାପାତ୍ର ମହୋଦୟଙ୍କ ଶ୍ରୀକର କମଳରେ ଆନ୍ତରିକ ଭକ୍ତିର ଚିହ୍ନ ସ୍ୱରୂପ ଏହି ପୁସ୍ତିକା ଖଣ୍ଡ ଅର୍ପିତ ହେଲା ।

ରଚକ

ବର୍ତ୍ତମାନ ଅବକାଶ ଚିନ୍ତାରେ ଯେଉଁ ୩୦ଟି କବିତା ଅଧିକ ସନ୍ନିବିଷ୍ଟ ହୋଇଛି ତାହା ୧୯୧୨ର ଦ୍ୱିତୀୟ ପ୍ରକାଶନରେ ବା ଆଉ କେଉଁ ସମୟରେ ହୋଇଛି ତାହା ଅଧିକ ଅନୁସନ୍ଧାନ ସାପେକ୍ଷ ।

କୌଣସି ନଦୀ ଯେପରି ତାର ଉପନଦୀମାନଙ୍କର ଜଳ ଲାଭକରି ପରିପୁଷ୍ଟ ଓ ପୃଥୁଳ ହୁଏ ସେହିପରି ଗୋପବନ୍ଧୁଙ୍କର ଅବକାଶ ଚିନ୍ତା ଭିନ୍ନ ଭିନ୍ନ ସମୟର ଚିନ୍ତାରେ ପୁଷ୍ଟି ଲାଭ କରିଅଛି । ତେଣୁ ପ୍ରଥମ ଅବକାଶ ଚିନ୍ତାର କବିତାମାନଙ୍କର ଆଲୋଚନା କଲେ କବିଙ୍କର ସେଇ ୨୨ବର୍ଷ ବୟସର କବିତାର ଆଭିମୁଖ୍ୟ ଜାଣିବାରେ ସୁବିଧା ହେବ ବୋଧହୁଏ । ତେଣୁ ମୁଁ ପ୍ରଥମ ନଅଟି କବିତାର ଆଲୋଚନା କରୁଅଛି ।

ପ୍ରଥମ କବିତାର ନାମ ଥିଲା—"କବିତା ଦେବୀ" । ବର୍ତ୍ତମାନର ପ୍ରକାଶନରେ ତାହା "କବିତା ଶିରୋନାମାରେ ସ୍ଥାନ ପାଇଛି" ।

"କବିତା ଦେବୀ ରେ ତାଙ୍କର ଦର୍ଶନ ଓ ଆଭିମୁଖ୍ୟ ଆଶାନୁରୂପ ସୂଚିତ ହୋଇଅଛି । କବିତାର ବହିରଙ୍ଗ ଶୁଦ୍ଧ ସରଳତାରେ ଗଢ଼ା । ମାତ୍ର ଅନ୍ତରଙ୍ଗ ରସରେ, ଅମୃତରେ ଓତପ୍ରୋତଃ—ଯାହା ଦୁଃଖ କ୍ଲେଶ ଦୂର କରିଦିଏ—ପ୍ରାଣରେ ଆହ୍ଲାଦର ସ୍ରୋତ ଖେଳାଇ ଦିଏ । ସାଧାରଣ ଜନ ତାହାର ବାହ୍ୟ ରୂପରେ ମୁଗ୍ଧ···ଯିଏ ବିଜ୍ଞ ଓ ସରଜ୍ଞ ସିଏ ବୁଝେ ତାର ଅନ୍ତରର ଅଭ୍ୟନ୍ତର ।

କବିତା କେବଳ ପ୍ରକୃତିରେ ବୈଚିତ୍ର୍ୟରେ ଶବଳିତ ନୁହେଁ । ମଣିଷର ଭିନ୍ନ ଭିନ୍ନ ଭାବବିଭବରେ ଭରପୂର । କବିତା କଳ୍ପନାର ଅବଲମ୍ବନରେ ବିକସିତ ହୁଏନାହିଁ—ବିବେକ ବା ଚେତନା ତାର ସାଙ୍ଗେ ସାଙ୍ଗେ ରହୁଥାଏ—କବିତାର ଦୁଇ ପାଖରେ ଦୁଇ ସଖୀ—ଜଣେ କଳ୍ପନା, ଆଉ ଜଣକ ଚେତନା ।

କବିତା ପୁଣି "ଇନ୍ଦ୍ରଜାଗ୍ରଣମୟୀ ଦେବୀବାଣୀ ସ୍ୱରୂପିଣୀ" । ବାଣୀ —ବାଣ ଅଛି ଅର୍ଥରେ ଶବ୍ଦ ଅର୍ଥାତ୍ ଅସ୍ତ୍ରଧାରିଣୀ; ତେଣୁ ଗୋପବନ୍ଧୁ ପ୍ରଥମେ ସେହି ବାଣୀ-ସ୍ୱରୂପିଣୀ ବାଣୀ ଓ କବିତା ଦେବୀଙ୍କ ଚରଣରେ ଡାକ ଦେଇଛନ୍ତି ତାଙ୍କର ପ୍ରାଣର ଯାଚ୍ଞା ।

"ଏ ମୂଢ଼ ଅଜ୍ଞାନେ ଦୟା କର ଗୋ ଭାବିନି ।"

ପୁରୀ ଜିଲ୍ଲା ସ୍କୁଲରୁ ଏଣ୍ଟ୍ରାନ୍ସ ପାଶ୍ କରି ଗୋପବନ୍ଧୁ କଟକ ରେଭେନ୍‌ସା କଲେଜରେ ନାମ ଲେଖାଇଥାନ୍ତି । ଆଜିର ରେଭେନ୍‌ସା କଲେଜିଏଟ୍ ସ୍କୁଲରେ କଲେଜ ହେଉଥାଏ । କଲେଜିଏଟ୍‌ର ଆଜି ଯେଉଁ ହଷ୍ଟେଲ ଅଛି ସେଇଥିରେ ଗୋପବନ୍ଧୁ ରହୁଥାନ୍ତି । ତେଣୁ ଗୋପବନ୍ଧୁ ସାୟଂ କାଳରେ କେବେ କେବେ ସର୍ବୀରେ କାଠଯୋଡ଼ି କୂଳରେ ବସୁଥାନ୍ତି । ସେଇ ସେଇ ମୁହୂର୍ତ୍ତର ସ୍ପର୍ଶରେ ସେ ତିନୋଟି କବିତା ରଚନା କରିଛନ୍ତି—

୧—କାଠଯୋଡ଼ି ଖରେ ସାୟଂକାଳ (୧)
୨—କାଠଯୋଡ଼ି ଖରେ ସାୟଂକାଳ (୨)
୩—କାଠଯୋଡ଼ି ଖରେ ଚନ୍ଦ୍ରାଲୋକ ନିଶୀଥ

କାଠଯୋଡ଼ିର ସଂଧ୍ୟା ଓ ଚନ୍ଦ୍ର ଯାମିନୀର ଶୋଭାରେ ମୁଗ୍ଧ ହୋଇ ଗୋପବନ୍ଧୁ ତାହାର ଭିତରେ ଉପଲବ୍ଧି କରିଛନ୍ତି ମଣିଷ ଓ ପ୍ରକୃତିର ପ୍ରାଣ ବିନିମୟ ।

"ଜାଣିଲି ମାନବ ହୃଦ ସଙ୍ଗେ ଆହାକର
ଯୁକ୍ତଛନ୍ତି ପ୍ରକୃତିର ବିଚିତ୍ର ସଂବନ୍ଧ ।"

କାଠଯୋଡ଼ିର ସାୟଂତନ ସୁଷମାରେ ଗୋପବନ୍ଧୁ ଯାହା ପାଉଛନ୍ତି ତା'ଠାରୁ ବେଶି ପାଉଛନ୍ତି ଚନ୍ଦ୍ରାଲୋକ ନିଶୀଥରେ—

ସଂସାରର ଲଜ୍ଜା ଘୃଣା ପ୍ରବଞ୍ଚନା ଜାଲେ,
ପ୍ରପୀଡ଼ିତ ହୁଏ ମୋର ମାନସ ଯେକାଳେ ।
ନିଭୃତେ ତୋ ତୀରେ ଆସି କରେ ବିଚରଣ,
କି ମୋହନ ମନ୍ତ୍ରେ କରୁ ସକଳ ହରଣ ।
ବିବିଧ ସ୍ୱର୍ଗୀୟ ଚିନ୍ତା ନାନା ପ୍ରିୟ ଭାବ,
କଳୁଷିତ ହୃଦେ ମୋର କରାଉ ଉଦ୍ଭବ ।
ତୋର ପଦ ଯୁଗେ ମୁହିଁ ଚିରକାଳ ଋଣୀ
ଏହି ଭାବ ଥାଉ ନିତ୍ୟ ହେ ସୁର ତରୁଣୀ ।

କବି ସେଠି କାଠଯୋଡ଼ି ନିକଟରେ ଋଣୀ ବୋଲି କହୁଛନ୍ତି— ଅଧମର୍ଣ୍ଣତାର ଉଚ୍ଚାରଣ ତଳେ ତାଙ୍କର ଅଛି ଉଦାର ମନର ଗୁଞ୍ଜରଣ ।

କଟକର ସହର ବେଷ୍ଟନୀରୁ ମୁକ୍ତ ହୋଇ ଗୋପବନ୍ଧୁ କାଠ-ଯୋଡ଼ି ତୀରରେ ବସିଛନ୍ତି—ଦେଖୁଛନ୍ତି ନଦୀର ବିପୁଳ ପ୍ରବାହ, ନାବିକ ବଡ଼ ସାହସର ସହିତ ଢେଉ କାଟି, ଆହୁଲା ମାରି ଡଙ୍ଗା ଚଳାଉଛି, ତାହା ଦେଖି ତାଙ୍କ ମନରେ ଫୁଟି ଉଠିଛି ଅପୂର୍ବ ଭାବ—

ସାମାନ୍ୟ ଏ ନଦୀ ଏପରି ଦୁର୍ଗମ,
ଭବସିନ୍ଧୁ ଆହା ନୁହେ କି ବିଷମ ?

ନଦୀରେ ଡଙ୍ଗା ଚଳାଇବାକୁ ହେଲେ ଲୋଡ଼ା ତିନୋଟି କଥା····· ନୈତିକ ସାହସ, କର୍ତ୍ତବ୍ୟର ଡଙ୍ଗା ଓ ବିବେକର ଆହୁଲା । ସେହି ଡଙ୍ଗାରେ ପାର ହେଉଛନ୍ତି ବ୍ରାହ୍ମଣ, ଚଣ୍ଡାଳ, ଧନିଷ୍ଠ, ଭିକାରୀ, ଭେଦ ନାହିଁ, ବିକାର ନାହିଁ । ଗୋପବନ୍ଧୁଙ୍କ ମନରେ ସେହିପରି ସାମ୍ୟଭାବ, ଧର୍ମଭାବ ଫୁଟିଉଠୁଥିଲା ତେଣୁ ତାଙ୍କର କବିତାର ଅଭିବ୍ୟକ୍ତି ସାର୍ବଜନୀନ ।

ସେହି ଅବସରରେ ସେ ପୁଣି ଲକ୍ଷ୍ୟ କରିଛନ୍ତି ସାନ୍ଧ୍ୟ ଗଗନର ନୀଳିମା, ଅସ୍ତମାନ ସୂର୍ଯ୍ୟଙ୍କର କିରଣ ମେଘକୁ କିପରି ଅନୁରଞ୍ଜିତ କରୁଛି। ତହିଁରୁ ସେ ମହତ ଜନର ପ୍ରଭାବ ଓ ସଜ୍ଜନ ସଙ୍ଗତିର ପରିକଳ୍ପନା କରି ପାରିଛନ୍ତି।

"କ୍ଷଣ ମାତ୍ର ହେବେ ସଜ୍ଜନ ସଙ୍ଗତି
ଛୁଟେ ଯିନା ସବେ ସଂସାର ଦୁର୍ଗତି।"

ଆଚାର୍ଯ୍ୟ ଶଙ୍କରଙ୍କର ବାଣୀ ତାଙ୍କ ମନରେ ଜାଗି ଉଠିଥିଲା ବୋଧହୁଏ।

"କ୍ଷଣମିହ ସଜ୍ଜନ ସଙ୍ଗତିରେକା
ଭବତି ଭବାର୍ଣ୍ଣବ—ତରଣେ ନୌକା।"

କବିଙ୍କ ଚକ୍ଷୁରେ କାଠଯୋଡ଼ି ଏକ ନାୟିକା—ନାୟକ ତାର ସମୁଦ୍ର, ଯେଉଁ ସମୁଦ୍ର କବିଙ୍କର ଅତ୍ୟନ୍ତ ପରିଚିତ—ଶ୍ରୀକ୍ଷେତ୍ରରେ। ସେଠି ସେ ଦେଖିଛନ୍ତି ତାର ଗମ୍ଭୀର ପ୍ରକୃତି, ଯାହା ପ୍ରାଣରେ ଭରିଦିଏ ବିଶ୍ୱପତିଙ୍କର ଅନନ୍ତ ଶକ୍ତି। ମାତ୍ର କାଠଯୋଡ଼ିରେ ସେ ଲକ୍ଷ୍ୟ କରୁଛନ୍ତି ଚଞ୍ଚଳତା, ଚପଳତା, ନାନା ବିଚିତ୍ରତା। ତାହାରି ଉତ୍ତର କବିଙ୍କ କଣ୍ଠରେ ଝଙ୍କୃତ ହୋଇଛି।

"ଉଚ୍ଚ ନୀଚ ବୃତ୍ତି ସକଳ
ଯେବେ ସମେ ବିକଶେ,
ପୂର୍ଣ୍ଣ ହୁଏ ନର ସଂସାର
ପୂରେ ସ୍ୱର୍ଗ ଉଲ୍ଲାସେ।"

ସ୍ୱର୍ଗୀୟ ପଣ୍ଡିତ ଶ୍ରୀ ହରିହର ଦାଶ ଶର୍ମାଙ୍କ କବିତାର ପାଦଟୀକାରେ ଉଲ୍ଲେଖ ଅଛି—

"ପୁରୀର ବିଖ୍ୟାତ ପଣ୍ଡିତ ଥିଲେ। ଏହାଙ୍କ ଯତ୍ନରେ ପୁରୀ ସଂସ୍କୃତ ବିଦ୍ୟାଳୟ ସଂସ୍ଥାପିତ ଭାରତର ନାନା ସ୍ଥାନରେ ସଭାମାନଙ୍କରେ

ଏ ନିଜ ଅସାଧାରଣ ବାଗ୍ମିତାର ପରିଚୟ ଦେଇଥିଲେ । ୩୫ ବର୍ଷ ବୟସରେ ମାନବଲୀଳା ସମ୍ବରଣ କରିବାରୁ ନିଜର ଉଚ୍ଚ କଳ୍ପନାମାନ କାର୍ଯ୍ୟରେ ପରିଣତ କରିପାରିଲେ ନାହିଁ ।”

ଅଧିକନ୍ତୁ ସେ ଉଇଲିୟମ୍ ସେକ୍ସପିଅରଙ୍କର “ମ୍ୟାକ୍ ବେଥ୍” ନାଟକକୁ ସଂସ୍କୃତରେ ଅନୁବାଦ କରିଥିଲେ । ପୁରୀର ଭିକ୍ଟୋରିଆ କଲେଜ୍‌ର ସାହେବଙ୍କୁ ସେ ସଂସ୍କୃତ ପଢ଼ାଉଥିଲେ । ବିନିମୟରେ ତାଙ୍କ-ଠାରୁ ଲାଟିନ୍ ଇଂରେଜୀ, ଫ୍ରେଞ୍ଚ, ଜର୍ମାନୀ ଶିକ୍ଷା କରୁଥିଲେ । ତେଣୁ ଇଂରେଜୀ ନାଟକ ଅନୁବାଦ କରିବାରେ ତାଙ୍କର ଯୋଗ୍ୟତା ସୁନିଶ୍ଚିତ ।

ବ୍ରାହ୍ମଣମାନେ ସେତେବେଳେ ଇଂରେଜୀ ଶିକ୍ଷାକୁ ଜାତିପାତ ବୋଲି ମନେ କରୁଥିଲେ । ମାତ୍ର ସେ ଘୋଡ଼ାରେ ଚଢ଼ି ଇଂରେଜୀ ଶିକ୍ଷା ପାଇଁ ଗାଁ ଗାଁ ଉଦ୍‌ବୋଧନ ଦେଉଥିଲେ । ସେ ଥିଲେ ଜଣେ ମହାପଣ୍ଡିତ ଓ ସଂସ୍କାରକ । ତେଣୁ ଗୋପବନ୍ଧୁ ବିପନ୍ନ ଦେଶର କଲ୍ୟାଣ ପାଇଁ ତାଙ୍କ ନିକଟରେ ନିବେଦନ କରିଥିଲେ—

“ଉତ୍କଳ ମଣ୍ଡଳେ ନବ୍ୟ ସଭ୍ୟଦଳେ
ସର୍ବେ ଆଜି ସ୍ୱାର୍ଥପର
ଆହେ ହରିହର ପଣ୍ଡିତ ପ୍ରବର
ସମାଜ ସଂସ୍କାର କର ।”

ଗୋପବନ୍ଧୁଙ୍କର ଜନ୍ମର ଅଳ୍ପଦିନ ପରେ ତାଙ୍କର ଜନନୀ ସ୍ୱର୍ଣ୍ଣମୟୀ ଦେବୀ ଚିରକାଳ ପାଇଁ ଆଖିବୁଜି ଦେଇଥିଲେ । ସେ ଶୈଶବରୁ ହୋଇଥିଲେ ମା ଛେଉଣ୍ଡ । ତେଣୁ ତାଙ୍କର “ସ୍ୱର୍ଗେ ସ୍ମୃତି” କବିତାରେ ସେ ମନର ସେହି ଅଭାବ ଓ ବ୍ୟାକୁଳତା ପ୍ରକାଶ କରି ଯାଇଛନ୍ତି—

“ଦେଖିନାହିଁ ମୁଁ ମାତୃବଦନ
ପାନ କରି ନାହିଁ ମାତୃସ୍ତନ,

ହୋଇଣ ସଦୟ ଦେଇ ନିଜପୟ
ବଞ୍ଚାଇଲୁ ମୋ ଶିଶୁଜୀବନ
ଲୋ ଚନ୍ଦ୍ରିମା ।"

ପୁଣି "ରେଭେନ୍‌ସା କଲେଜରୁ ବିଦାୟ" କବିତାରେ ସେହି ଭାବର ପରିପ୍ରକାଶ ଦେଖିବାକୁ ମିଳେ ।

"ଦେଲେ ଏ ଯେ ନରଦେହ
ଥିଲେ କିଶ ଥାନ୍ତେ ସ୍ନେହ
ସ୍ୱପ୍ନେ ହିନେ ଦେଖି ନାହିଁ ତାଙ୍କ ସୁଧା ମୁଖ
ଆଜନମ କାନ୍ଦୁଁ ମୋର ଚିରସଖା—ଦୁଃଖ ।"

ଗୋପବନ୍ଧୁଙ୍କର "ମୋ ନାନୀ" ତାଙ୍କର ପିଉସୀ ନାନୀ ନାମତଃ କମଳା ନାନୀ, ସେ ବାଲ୍ୟରୁ ବିଧବା, ତେଣୁ ପିତୃଗୃହରେ ରହୁଥିଲେ । ତାଙ୍କର ଉପରେ ପଡ଼ିଲା ଗୋପବନ୍ଧୁଙ୍କୁ ସମ୍ଭାଳିବା ଦାୟିତ୍ୱ । ସେ ତାହା ବରଣ କରି ନେଇଥିଲେ । ସେଇ ନାନୀ ନିଜର ସ୍ତନ ଉପରେ ଗାଈ କ୍ଷୀର ଢାଳି ଦିଅନ୍ତି—ତାହା ଚୁଚୁକ ଉପରୁ ଧାର ଧାର ବୋହିପଡ଼େ, ସେତିକିବେଳେ ସେ ତାଙ୍କୁ ତାହା ପିଆଉଥାନ୍ତି ।

ସେଇ କମଳା ନାନୀ, "ମୋ ନାନୀ" ଗୋପବନ୍ଧୁଙ୍କ ଜନନୀର ପ୍ରତିନିଧି । ତାଙ୍କ ଜୀବନର ପୁଣ୍ୟ, ପାବିତ୍ର୍ୟ, ସ୍ନେହ, ତ୍ୟାଗ ପ୍ରଭୃତି ଗୁଣ ସଂପର୍କରେ, କବି ନାନ୍ଦୀଗାନ କରିଛନ୍ତି ମାତ୍ର ସେତିକି ଯଥେଷ୍ଟ ନୁହେଁ—

"ଯେତେଦିନ ଥିଲେ ସ୍ମରୁଥିବି ନିତ 'ନାନୀ' 'ନାନୀ' ।"

ଉକ୍ତ କବିତାଟି ଉତ୍କଳ ସାହିତ୍ୟ ୨ୟ ଭାଗ ୧୩୦୫ ଅର୍ଥାତ୍ ୧୮୯୮ ର ଆଷାଢ଼ ୭ମ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ବର୍ତ୍ତମାନ ପ୍ରକାଶିତ କବିତାର ଦୁଇଟି ସ୍ଥାନରେ ପାଠାନ୍ତର ପରିଲକ୍ଷିତ ହୁଏ ।

୧—ଥିଲା—ତୋ ଚରିତ୍ର ଚିନ୍ତା ମନନ କରିବାକୁ ଏ ଭଜନ ?
୨ ହୋଇଛି—ତୋ ନିଗୂଢ଼ ତତ୍ତ୍ୱମାନ, ବୁଝିବ କି ଏ ଅଜ୍ଞାନ ?

୨—ଥିଲ—ନିର୍ଜୀବ ବୋଲି ବା ତୋତେ ବୋଲିବ କେମନେ ?
ହୋଇଛି—ନିର୍ଜୀବ ବୋଲିଣ ତୋତେ ବୋଲିବ କେମନେ ?

ପ୍ରାଚୀନ ସାହିତ୍ୟର ବର୍ତ୍ତମାନ ବିଜ୍ଞାନରେ ଚନ୍ଦ୍ର ଏକ ଅଚେତନ ବସ୍ତୁ । କାଳିଦାସ ତାଙ୍କର କୁମାର ସମ୍ଭବରେ କହିଛନ୍ତି—

"ଶଶିନା ସହ ଯାତି କୌମୁଦୀ
ସହ ମେଘେନ ତଡ଼ିତ୍ ପ୍ରଲୀୟତେ ।
ପ୍ରମଦା ପତିବର୍ତ୍ମଗା ଇତି
ପ୍ରତିପନ୍ନଂ ହି ବିଚେତନୈରପି ॥"

ଚନ୍ଦ୍ର ଅଚେତନ ହେଲେହେଁ ତାର ଆଲୋକ ଅବଦାନ ପାଇଁ, ସାଧନା ପାଇଁ କବି ତାକୁ ଅଚେତନ କହିବାକୁ ପଶ୍ଚାତ୍ପଦ । ବରଂ ତାକୁ ଯିଏ ସୃଷ୍ଟି କରିଛନ୍ତି ସେଇ ବିଭୁଙ୍କ ସଙ୍ଗତରେ ରହିବା ପାଇଁ ତାଙ୍କର ମନର ଇଚ୍ଛା ।

ପୃଥିବୀରେ ଅନେକ କବି ପ୍ରାୟ କୋକିଳ ସମ୍ପର୍କରେ କିଛି ନା କିଛି ଲେଖିଯାଇଛନ୍ତି । ବିଶେଷତଃ ପ୍ରକୃତି କବି Words worthଙ୍କର To the Cuckoo କବିତା ଏକ ମନୋଜ୍ଞ କବିତା । ଆମର ଗୋପବନ୍ଧୁଙ୍କୁ ତାହା ପ୍ରଭାବିତ କରିଛି । ତେଣୁ ତାଙ୍କ କଣ୍ଠରୁ ସମସ୍ୱରରେ ବାଜି ଉଠିଛି—

"ସୁଶ୍ୟାମଳ ତୃଣ ବାସେ ଆଚ୍ଛାଦିତ ମହୀ
ସୁଶୀତଳ ସମୀରଣ ବହେ ରହି ରହି ।
ଆହା କିଏ ସେ ଏକାଳେ
ମୋ ଶ୍ରୁତି ପଥରେ ସୁଧାମୟ ବାଣୀ ଢାଳେ ।"

କୋକିଳର ସ୍ୱର ଶୁଣି କବିଙ୍କର ହୃଦୟରେ ଯେଉଁ ଭାବ, ଯେଉଁ ଚିନ୍ତନ ସଞ୍ଚାରିତ ହୋଇଛି ତାହା ସେ ନିମ୍ନ ପଂକ୍ତିମାନଙ୍କରେ ପ୍ରକାଶ କରିଛନ୍ତି—

"ଭାରତ ପ୍ରାଚୀନ ଆର୍ଯ୍ୟ ମୁନିଗଣ ପରି
ମହାଲକ୍ଷ୍ୟ ସାଧି ଗୁପ୍ତ ସାଧୁବ୍ରତ ଧରି
ତେଣୁ ତେଜ ଆଡ଼ମ୍ବର
ଉଚାରୁ ନାହୁଁତେ ବସି ଏ ମହାମନ୍ତ୍ର ।"

ତେଣୁ କବି ପ୍ରଲୋଭିତ ହୋଇ ମନର ଅଭିଳାଷ ଜଣାଇବାକୁ କୁଣ୍ଠିତ ହୋଇନାହାନ୍ତି—

"ଆରେ ପ୍ରବୀଣ ବିହଙ୍ଗ,
ଲଭିବାକୁ ମୋର ଇଚ୍ଛା ତୋର ସାଧୁ ସଙ୍ଗ ।"

କେବଳ ପ୍ରକୃତିର ଉଲ୍ଲସିତ, ପୁଷ୍ପିତ ବା ପଲ୍ଲବିତ ରୂପରେ କବି ଗୋପବନ୍ଧୁ ମୁଗ୍ଧ ହୋଇନାହାନ୍ତି । ନେପଥ୍ୟକୁ ଦୃଷ୍ଟିଦେଇ ଉପେକ୍ଷିତକୁ ଆବିଷ୍କାର କରିଅଛନ୍ତି । "ଗ୍ରୀଷ୍ମେ ଖୁଣ୍ଟା ଗଛ" ପ୍ରତି ଲକ୍ଷ୍ୟ ଦେବା ତେଣୁ ଏକ ବ୍ୟତିକ୍ରମ । ସେହି ବ୍ୟତିକ୍ରମହିଁ ତାଙ୍କ ସାଧନାର ଏକ ଉପକ୍ରମ ।

ତରୁଟିଏ—ବସନ୍ତରେ ପଲ୍ଲବିତ ଓ ମନୋହର ହୋଇଥିଲା । ଗ୍ରୀଷ୍ମରେ ସବୁ ହରାଇ ଦେଇ ଖୁଣ୍ଟାହୋଇ ଛିଡ଼ା ହୋଇଛି, ତାହାର ଜୀବନ ସହିତ ମଣିଷର ଜୀବନକୁ କବି ତୁଳନା କରିଛନ୍ତି । ଯୌବନରେ ମଣିଷ ଅମାର୍ଜିତ ଆଚରଣ କରେ, ମାତ୍ର ତରୁ ପକ୍ଷରେ ତା ଅସମ୍ଭବ । ବରଂ ତ ସେ ଫଳ ଦିଏ, ଫୁଲ ଦିଏ, ସୌନ୍ଦର୍ଯ୍ୟ ଦିଏ, ଛାୟା ଦିଏ, ପରର ଉପକାର କରିଥାଏ । ତାହାର ଦୁରବସ୍ଥା ଦେଖି କବି ଭାବୁଛନ୍ତି ସେ ତପସ୍ୟା କରୁଛି—ସେଇ ଖୁଣ୍ଟା ଗଛ ଦୁର୍ଗତ ଭାରତର ଛବି । ଭାରତର ଧର୍ମ, କର୍ମ, ପ୍ରେମ କେମିତି ଫେରିଆସିବ ସେଥିପାଇଁ ଖୁଣ୍ଟା ଗଛଭଳି ତପସ୍ୟା ଓ ସାଧନା ଲୋଡ଼ା ।

କବି ଗୋପବନ୍ଧୁ ସବୁବେଳେ ତାଙ୍କ କବିତାରେ ଆଙ୍କିଛନ୍ତି ଈଶ୍ୱର ପ୍ରୀତି, ଦେଶ ପ୍ରୀତି ଓ ମାନବ ପ୍ରୀତି । ବାଇଶ ବର୍ଷ ବୟସରେ ତାଙ୍କ ଦାନ ଓ ଅବଦାନ ଆମ ସାରସ୍ୱତ କ୍ଷେତ୍ରରେ ଅଭିନନ୍ଦନୀୟ ।

"ଅବକାଶ ଚିନ୍ତା"ରେ ଆଉ ତିରିଶଟି କବିତା । ତନ୍ମଧ୍ୟରୁ ପ୍ରଥମରେ ନେଉଁ କବିତାଟି ସ୍ଥାନ ପାଇଛି ତାହା ପ୍ରାର୍ଥନା—ତାହା

ବିଦ୍ୟାପୀଠମାନଙ୍କରେ ଛାତ୍ରମାନଙ୍କର ପ୍ରାର୍ଥନା ବୋଲି ମନେହୁଏ—ମାତ୍ର ତାହାଁରେ ଯେଉଁ ସାର୍ବଜନୀନ ଭାବ ମୂର୍ଚ୍ଛିତ ହୋଇଛି ତାହା ସତ୍ୟବାଦୀ ଅନୁଷ୍ଠାନରେ ସମ୍ଭବ । ଗୋପବନ୍ଧୁ ବୋଧହୁଏ ସତ୍ୟବାଦୀର ଛାତ୍ରମାନଙ୍କ ପାଇଁ ସେ କବିତାଟି ରଚନା କରିଥିଲେ ।

"ହିନ୍ଦୁ ଖ୍ରୀଷ୍ଟ ଜୈନ ମୁସଲମାନ
ଭେଦ ଭୁଲି ଏବେ ସର୍ବେ ସମାନ,
ଭ୍ରାତୃପ୍ରେମ ଡୋରେ ହୋଇଣ ବାନ୍ଧ
ଜଣାଉଛୁ ତବ ଶ୍ରୀମୁଖରେ କାନ୍ଦ,
ଅରକ୍ଷିତ ଶିଶୁକୁଳ,
ଜନନୀ ବିଷାଦେ ଭସାଇ ନ ଦିଅ
କେବେ ପ୍ରଭୁ ଆଦ୍ୟ ମୂଳ"

ବିଶ୍ୱ କବି ରବୀନ୍ଦ୍ରନାଥଙ୍କର "ମହାଭାରତର ସାଗରତୀରେ" କବିତାର ଅନୁରଣନରେ ଅନୁପ୍ରାଣିତ ହୋଇ ଗୋପବନ୍ଧୁ ଶିଶୁଙ୍କର ପ୍ରାଣରେ ଗୁମ୍ଫିତ କରିଛନ୍ତି ।

ବ୍ରାହ୍ମଣ ଶାସନ ଶବର ପଲ୍ଲୀ
କୃଷକ କୁଟୀର ନୃପ ଅଟ୍ଟାଳି,
ଜାତୀୟତା ସ୍ରୋତେ ହେଉ ପ୍ଳାବିତ,
ଉଠୁ କୋଟି କଣ୍ଠୁ ଜାତୀୟ ଗୀତ
ତେଜି ସ୍ୱାର୍ଥ ଅଭିମାନ,
ଜନନୀ କଲ୍ୟାଣେ ସାଧୁ ଅନୁଷ୍ଠାନେ
ରହୁ ସଦା ମନ ଧ୍ୟାନ ।

ଆର୍ଯ୍ୟ ଋଷିମାନେ ଯେତେବେଳେ ସରସ୍ୱତୀ ନଦୀର କୂଳରେ ଯଜ୍ଞରେ ଆହୁତି ଦେଇ ଉଦାତ୍ତ ସଙ୍ଗୀତ ଗାନ କରିଥିଲେ ସେଇ ସମୟରେ ବାଣୀଙ୍କର ପ୍ରକାଶ ବୋଲି ଗୋପବନ୍ଧୁ ଗ୍ରହଣ କରି ନେଇଛନ୍ତି ତେଣୁ ସେ ଭାରତର କଥା ତାଙ୍କ ନିକଟରେ ଉପସ୍ଥାପିତ କରିଛନ୍ତି ।

"ପଙ୍କଜବାସିନୀ ଦେବୀ ନିତ୍ୟ ବୀଣାପାଣି,
ବାଅ ସେ ଅମର ବୀଣା କୃପା କରି ଥରେ,
ଛୁଟେଉ ସେ ଦିବ୍ୟ ନାଦ ମୃତ ସଞ୍ଜୀବନୀ
ମୃତ ପ୍ରାୟ ଭାରତର ହୃଦୟ କନ୍ଦରେ ।'

ଭାରତବର୍ଷ ବିଦେଶୀ ଶାସନରେ ପରାଧୀନ—ତେଣୁ ମୃତପ୍ରାୟ । ବାଣୀଙ୍କର ଦିବ୍ୟନାଦ ତାକୁ ପୁନର୍ଜାଗ୍ରତ କରିବା ପାଇଁ ନିବେଦନ । ମାତ୍ର ତା ସାଥିରେ ସେ ଆମ ଉତ୍କଳକୁ ଭୁଲିପାରିନାହାନ୍ତି—

"ଭାରତେ ଉତ୍କଳ ପୁଣି ଅତି ଅଭାଗିନୀ
ଧନେ, ଧର୍ମେ, ମାନେ, ଜ୍ଞାନେ, ବିକ୍ରମ ସାହସେ,
ଆଦେଶେ ମା ଫୁଟି ତବ ଆବାସ-ନଳିନୀ
ଗୌରବ-ତପନେ ବରୁ ଉତ୍କଳ-ନଭସେ ।"

ଉତ୍କଳର ଅତୀତ ଯୁଗର କବି ମନୀଷୀ ବୀର ରାଜାମାନଙ୍କର ବନ୍ଦନା ଗାନ କରିନ୍ତନ୍ତି । ମୁଖ୍ୟତଃ ସେମାନେ ଶମ୍ଭୁକର ବାଜପେୟୀ, ଜଗନ୍ନାଥ ଦାସ, ବଳରାମ ଦାସ, ସାରଳା ଦାସ, ଅନଙ୍ଗଭୀମ ଦେବ, ପୁରୁଷୋତ୍ତମ ଦେବ, ଉପେନ୍ଦ୍ର ଭଞ୍ଜ, ସାମନ୍ତ ଶ୍ରୀ ଚନ୍ଦ୍ରଶେଖର ।

ଶମ୍ଭୁକର ବାଜପେୟୀଙ୍କର ଉତ୍କଳ ରାଜାଙ୍କ ସହିତ ମନୋମାଳିନ୍ୟ ହେଲା । ସେ ଦେଶରେ ନ ରହି ଚାଲିଗଲେ କାଶୀ, ସେଇଠି ତିରିଶ ବର୍ଷ ରହି ଗ୍ରନ୍ଥ ରଚନା କରି ପୁତ୍ର ବିଦ୍ୟାକରଙ୍କୁ ସ୍ୱଦେଶକୁ ପଠାଇଥିଲେ । ସ୍ୱଦେଶ ପାଇଁ ତାହାଙ୍କ ତାଙ୍କର ଗଭୀର ମମତା । ତେଣୁ କବି ତାଙ୍କ ପାଖରୁ ଆଶୀର୍ବାଦ ମାଗିନ୍ତନ୍ତି—

"ହେ ଉତ୍କଳ ଆଦି ଋଷି ବ୍ରହ୍ମବାଦୀ
କର ଏହି ଆଶୀର୍ବାଦ ।
ପରକାଶୁ ତବ ପ୍ରଚ୍ଛନ୍ନ ପ୍ରଭବ
ଘୁଞ୍ଚୁ ଜାତି ଅବସାଦ ।"

ଭକ୍ତ କବି ଜଗନ୍ନାଥ ଦାସ ଓ ବଳରାମ ଦାସଙ୍କ ପ୍ରତି ଗୋପବନ୍ଧୁଙ୍କର ଆବେଦନ—ଉତ୍କଳଦେଶ ଯେତେବେଳେ ଘୋର ସଙ୍କଟାପନ୍ନ ସେତେବେଳେ ଏ ଦେଶର ଠାକୁର ଜଗନ୍ନାଥ ଓ ବଳରାମ କଳା ଘୋଡ଼ା ଓ ଧଳା ଘୋଡ଼ାରେ ଚଢ଼ି ଦେଶପାଇଁ ଶତ୍ରୁ ବିରୁଦ୍ଧରେ ସମରାଭିଯାନ କରିଥିଲେ । ଦେଶର ସାଂସ୍କୃତିକ ଦୁଃସ୍ଥିତିବେଳେ ସେହି ଭାଗବତକାର ଜଗନ୍ନାଥ ଓ ଜଗମୋହନ ରାମାୟଣ ଓ ଶ୍ରୀମଦ୍ ଭଗବତ ଗୀତାର ପ୍ରବକ୍ତା କବି ଉଭୟ ଧର୍ମ କର୍ମର ଭାଷା ପ୍ରଚାର କରିଥିଲେ ।

"ଏବେ ନୀଳାଚଳେ ରହିଛ ନିଷ୍ଠୁରେ
ଦେଖି ଏ ଦଶା କିପରି ?
ଛାଡ଼ିଣ ଆସ୍ଥାନ ଆସ ଆରୋହିଣ
ଚଳାଅ ଉତ୍କଳ ତରୀ ।"

ଶୂଦ୍ରମୁନି ଶାରଳା ଦାସ ଉତ୍କଳର ଥିଲେ ଆଦି କବି ଓ ମହାନ୍ କବି । ମହାଭାରତ ଆଦି ମହାଗ୍ରନ୍ଥ ରଚନା କରି ଆମ ଦେଶରେ ଭାଷା ଓ ସାହିତ୍ୟକୁ ଋଦ୍ଧିମନ୍ତ କରିଯାଇଛନ୍ତି । ତାଙ୍କର ଉଦ୍ଦେଶ୍ୟରେ ଗୋପବନ୍ଧୁ ଜଣାଇଛନ୍ତି—

"ତୁମ୍ଭ ବୀରବାଣୀ ସଂଗ୍ରାମ କାହାଣୀ
ଶ୍ରବଣେ ଆଜି ଉତ୍କଳେ,
ଚିର ପରାଧୀନ କ୍ଷୀଣ ଜଡ଼ ପ୍ରାଣ
ଜାଗେ କ୍ଷଣେ ନବ ବଳେ ।
ତୁମ୍ଭ ଗୀତେ ସିନା ଶକ୍ତିଶାଳୀ ସେନା
ହୋଇଣ କୃଷକ ପନ୍ତି,
ଜିଣି ଶତ୍ରୁଗଣେ ଉଡ଼ାଇଲେ ରଣେ
ଉତ୍କଳର ବୈଜୟନ୍ତୀ ।

ଉଠ ଶୁଭ୍ର ମୁନ,　　କେତେ କାଳ ଭୁନ
ହୋଇ ରହିଥିବ ଆଉ,
ଭାରତ ତଇଳେ　　ନବ ଜ୍ଞାନ ଘାପ
ଜଳୁ ଥରେ ଦାଉ ଦାଉ ।
ଉଠୁ ଘରେ ଘରେ　ଅକୁଣ୍ଠିତ ସ୍ୱରେ
ସ୍ୱାଧୀନ ସଂଗୀତ ଧ୍ୱନ,
ଗାଆନ୍ତୁ ଉତ୍କଳେ　　ବୃଦ୍ଧ ଯୁବା ବାଳେ
'ଜୟ ଭାରତ ଜନନୀ ।'

ଶ୍ରୀ ଅନଙ୍ଗଭୀମ ଦେବ ଉତ୍କଳର ଯଶୋବନ୍ତ ଗଜପତି । ନୀଳାଚଳରେ ବଡ଼ଦେଉଳ ଯାହାଙ୍କର କୀର୍ତ୍ତି ଦେଦୀପ୍ୟମାନ । ଯେଉଁଠି ମହାପ୍ରସାଦରେ ବ୍ରାହ୍ମଣ ଚଣ୍ଡାଳର ଭେଦ ନାହିଁ ? ସେହି ଅନଙ୍ଗଭୀମଙ୍କର ଉତ୍କଳ ଥାଏ ଗୌଡ଼ କର୍ଣ୍ଣାଟ ଜୟ କରିଥିଲେ, ବର୍ତ୍ତମାନ ସେହି ଉତ୍କଳର ଅବସ୍ଥା ବିପର୍ଯ୍ୟସ୍ତ ତେଣୁ କବି ଉତ୍କଳ ସନ୍ତାନଙ୍କୁ ଦେଇଛନ୍ତି ଏକ ନିର୍ଭୀକ ଉଦ୍‌ବୋଧନ—

''ଉଠ ହେ ଉତ୍କଳୀ　　ଜଡ଼ତା ଶିକୁଳି
ଫିଙ୍ଗିଣ ଦୂରେ ବହନ
ଅମର ଭୁବନୁ　　ଶ୍ରୀ ଅନଙ୍ଗ ଭୀମ
କରୁଛନ୍ତି ନିମନ୍ତ୍ରଣ ।

ପୁରୁଷୋତ୍ତମ ଦେବ ମଧ୍ୟ ସେହିପରି କୀର୍ତ୍ତିତନାମା । ରଥଯାନାବେଳେ ଓଡ଼ିଶାର ଗଜପତି ଛେରାପହଁରା କରୁଥିବାର ଦେଖି କାଞ୍ଚିରାଜା ତାଙ୍କୁ ନୀଚ ଜାତିର ବୋଲି ତାଙ୍କୁ କନ୍ୟାଦାନ କରିବାକୁ ଅସମ୍ମତ ହେଲେ । ତେଣୁ ସେଇ ଅପମାନର ପ୍ରତିଶୋଧ ନେବାଲାଗି ସେ କାଞ୍ଚି ଅବରୋଧ କଲେ ମାତ୍ର କାଞ୍ଚିକେମାଙ୍କୁ ଆଣି ଚଣ୍ଡାଳ ହସ୍ତରେ ଅର୍ପଣ କରିବାକୁ ମନ୍ତ୍ରୀଙ୍କୁ ନିର୍ଦ୍ଦେଶ ଦେଲେ, ମାତ୍ର ମନ୍ତ୍ରୀ ରଥଯାତ୍ରାବେଳେ ଛେରାପହଁରାରେ ନିଯୁକ୍ତ ଚଣ୍ଡାଳ ସେବକ ପୁରୁଷୋତ୍ତମଙ୍କ ହସ୍ତରେ କାଞ୍ଚୀକେମାଙ୍କୁ ଅର୍ପଣ କରିଥିଲେ । ସତ୍ୟବାଦୀରେ ସାକ୍ଷୀଗୋପାଳ ପ୍ରତିଷ୍ଠା କରିଥିଲେ ।

"କୃଷ୍ଣା ଗୋଦାବରୀ ଉତ୍ତୁଙ୍ଗ ଲହରୀ
ଉଚ୍ଛୃତ ଥିଲା ଯେ ନାଦେ
ସେ କେଙ୍ଗ ମଣ୍ଡଳୀ ଶିଙ୍ଗା ଭେରୀ ତୁରୀ
ନୀରବ କି ଅବସାଦେ ?
ନରନାହ କେଣ୍ଡ ଚିର ଦୁଃଖ ସହ
ବିଧିର ସୃଷ୍ଟି ବିଧାନ
ବାଜୁ ଡେବେ ଢକ୍କା ତୁଟୁ ନିଦ୍ରାଁ ଦକା
ଜାଗୁ ଉତ୍କଳ-ପରାଣ ।"

ଉପେନ୍ଦ୍ର ଭଞ୍ଜ ଉତ୍କଳର ବିଶାଳ ଓ ରସାଳ କବି । ଧୁମୁସର ରାଜଲକ୍ଷ୍ମୀଙ୍କର କୋଡ଼ରେ ଜନ୍ମଲାଭ କରି ଜୀବନରେ ବରଣ କରି ନେଇ-ଥିଲେ ବୀଣାପାଣିଙ୍କର ଆଶୀର୍ବାଦ । ଓଡ଼ିଆ ସାରସ୍ୱତ କ୍ଷେତ୍ରରେ ତାଙ୍କର ଦାନ ଓ ଅବଦାନ ଅବିସ୍ମରଣୀୟ । ମାତ୍ର ତାଙ୍କର ଜନ୍ମଭୂମି ଓଡ଼ିଶାରୁ ବିଚ୍ଛିନ୍ନ ଭାବି ଗୋପବନ୍ଧୁଙ୍କର ପ୍ରାଣରେ ଜାଗିଉଠିଥି ଗଭୀର ଖେଦ ଓ କ୍ଷୋଭ । ତେଣୁ ପ୍ରାଣରୁ ଢାଳିଦେଇଛନ୍ତି ଶ୍ରଦ୍ଧାସିକ୍ତ ଅଭିନନ୍ଦନ ।

"ସୃଜିଣ ସ୍ୱହସ୍ତେ ଓଡ଼ିଆଙ୍କ ଭାଷା
ଗଢ଼ିଛ ଓଡ଼ିଆ ଜାତି
ତବ ଜନ୍ମସ୍ଥାନ ଓଡ଼ିଶାରୁ ଆନ
ଭାବିଲେ ବିଦାରେ ଛାତି ।"

ଉତ୍କଳର ବିଶିଷ୍ଟ ଭାସ୍କର "ସିଦ୍ଧାନ୍ତ ଦର୍ପଣ"ର ପ୍ରଣେତା ସାମନ୍ତ ଚନ୍ଦ୍ରଶେଖର—କବିବର ରାଧାନାଥ ତାଙ୍କର ଦରବାରରେ ଓଡ଼ିଶାର ରାଜା ମହାରାଜାମାନଙ୍କୁ ବସାଇ, ଯାହାଙ୍କୁ ପରମ ଅର୍ଘ୍ୟ ଦେଇ ଯାଇଛନ୍ତି । ଯେଉଁ ରାଜା ତାଙ୍କପ୍ରତି ସଂବେଦନଶୀଳ ବ୍ୟବହାର କରିବା ଦୂରେ ଥାଉ ଭାଇ ହେଲେ ସୁଦ୍ଧା ତାଙ୍କୁ

“ମୋତି ମୂଲ୍ୟ କାହୁଁ ଜାଣିବ ଶବର
ମୋତି ଫିଙ୍ଗି କରେ ଗୁଞ୍ଜାରେ ଆଦର ।”

ବୋଲି ନିର୍ଭୀକ ବାଣୀ ଶୁଣାଇ ଥିଲେ ଓ ଅନ୍ତରରାଗରେ ସାମନ୍ତଙ୍କୁ ଶ୍ରଦ୍ଧା ଜଣାଇଥିଲେ

ପଡ଼ା ଖଣ୍ଡ ମଧ୍ୟେ ଅଲକ୍ଷିତେ ଧନ
ଯାଚିଲ ଧରଣୀ ହିତେ,
ପଡ଼ା ଖଣ୍ଡେ ସୁଦ୍ଧା ଉପହାର ଦେବା
କେହି ନ ବଳୁରେ ଚିତ୍ତେ ।

କାଠି ଖଣ୍ଡିକର ସାହାଯ୍ୟରେ ସେ ସୌରଜଗତର ଅଜ୍ଞାତ ପ୍ରସଙ୍ଗ ପ୍ରକାଶ କରିଥିଲେ । କୋଷ୍ଠି ଗଣନା କରି ସତ୍ୟ କଥା କହିପାରୁଥିଲେ ତାଙ୍କ ପାଖରେ କବିଙ୍କର ଦସ୍ତୁନୀ—

“ସିଦ୍ଧାନ୍ତ ଦର୍ପଣେ ସ୍ୱଦେଶର କୋଷ୍ଠି
ଦେଖି କରି ଏକ ଲୟ,
କହ କହ କେବେ ଦୁର୍ଦ୍ଦଶା ଏହାର
ପାଇବ କି ସତେ କ୍ଷୟ ?

“ଭାର୍ଗବୀ” ଗୋପବନ୍ଧୁଙ୍କ ଗାଁ ପାଖର ନଦୀ—ତାର ଜଳଧାରା ଗୋପବନ୍ଧୁଙ୍କ ଶିରା-ପ୍ରଶିରାରେ ପ୍ରବାହିତ । ତେଣୁ ମାତୃସମା ଭାର୍ଗବୀ ପାଇଁ ତାଙ୍କର ପ୍ରାଣର କରୁଣ ସଙ୍ଗୀତ ବାଜିଉଠିଛି—

“ଦେଖି ନାହିଁ ମୁଁ ମାତୃବଦନ
ପାନ କରି ନାହିଁ ମାତୃସ୍ତନ,
ହୋଇଣ ସଦୟ ଦେଇ ନିଜ ପୟ
ବଞ୍ଚାଇଲୁ ମୋ ଶିଶୁ ଜୀବନ ଲୋ ତଟିନୀ ।”

ସେଇଥି ପାଇଁ କବିଙ୍କର ଏକାନ୍ତ ଅଭିଳାଷ—

"ପିଣ୍ଡ ପଡ଼ୁ ତୋ ସିକତା ବାସେ
ଯାଗେଶ୍ୱରୀ ଜନମ ସକାଶେ
ପୁନ୍ନାଗ ବକୁଳ ନାନାଜାତିଫୁଲ
ଝଡ଼ିପଡ଼ୁଥାଉ ଚଉପାଶେ ଲୋ ତଟିନୀ ।"

ରେଭେନ୍‌ସା କଲେଜରେ ପଢ଼ିଲାବେଳେ ସେ ରହୁଥିଲେ ଶସ୍ତା ସୁବିଧା ମେସ୍‌ରେ । ତାଙ୍କ ସଙ୍ଗରେ ରହୁଥିଲେ ହରିହର, ଉମାଚରଣ ଦାସ, ଲୋକନାଥ ପଟ୍ଟନାୟକ, ନିତ୍ୟାନନ୍ଦ ପୂଜାରୀ ଓ ଭରତ ଚନ୍ଦ୍ର ନାୟକ । ରନ୍ଧାଘର ଆଗରେ କାଙ୍କଣ ମଞ୍ଜି ପଡ଼ି ସେଥିରୁ ଗଛଟିଏ ହୋଇଥାଏ । ତାହା ଦେଖି ଗୋପବନ୍ଧୁ ସହପାଠୀ ନିତ୍ୟାନନ୍ଦଙ୍କୁ ଦେଖାଇ କହିଲେ, "ଦେଖ ହେ ଗୋଟିଏ କାଙ୍କଣ ଗଛ, ତୁମ ବୋଟାନିର ବିଷୟ, ତୁମର ନଜର କରିବାର କଥା !

ନିତ୍ୟାନନ୍ଦ ଉତ୍ତର ଦେଲେ, "ତୁମର କବିତାର ବିଷୟ ହେବ ନାହିଁ କାହିଁକି ?"

ଗୋପବନ୍ଧୁ ହସି ହସି ସେଥିରେ ରଞ୍ଜାଟିଏ ଖଞ୍ଜିଦେଲେ । ଦି'ଦିନ ପରେ ଗଛଟି ଝାଉଁଳି ପଡ଼ିଲା । ଗୋପବନ୍ଧୁ କବିତାଟିଏ ଲେଖି ବନ୍ଧୁଙ୍କୁ ଦେଖାଇଲେ । ସେଇଟି ଗୋଟିଏ କାଙ୍କଣ ଗଛ !

ଗୋପବନ୍ଧୁ ଏଇ ପରାଧୀନ ଦେଶରେ ମୁକ୍ତିର ସ୍ୱପ୍ନ ଦେଖିବାକୁ ଭଲ ପାଉଥିଲେ । ପରାଧୀନତାକୁ ମନେକରୁଥିଲେ ମୃତ୍ୟୁ । ରଞ୍ଜା ଖଞ୍ଜି-ଦେଲା ପରେ କାଙ୍କଣ ଗଛଟି ମରିଗଲା । କାଙ୍କଣ ଗଛ ସେପରି ତାହା ବରଦାସ୍ତ କରିପାରିଲା ନାହିଁ । ତେଣୁ କବି କାଙ୍କଣ ଗଛକୁ ତାର ମହତ୍ତ୍ୱ ପାଇଁ ମର୍ଯ୍ୟାଦା ଦେଇଛନ୍ତି—

"ସ୍ୱାଧୀନତାପ୍ରିୟେ ! ଧନ୍ୟ ଅପରଚରଣ
ଭଗ୍ୟ ଅରଜକୁ ଶ୍ରେୟ ମଣିଲୁ ମରଣ ।"

"ରେଭେନ୍‌ସା କଲେଜରୁ ବିଦାୟ" କବିତାଟିରେ ଗୋପବନ୍ଧୁ ମହାବିଦ୍ୟାଳୟରେ ଗୃହବର୍ଷର ସ୍ମୃତି ଉଦ୍‌ବୋଧନ କରି ବିଦାୟ ନେଇଛନ୍ତି । ମର୍ମେ ମର୍ମେ ବ୍ୟାକୁଳ ହୋଇ ପଚାରିଛନ୍ତି—

"କେତେ ଦିବ୍ୟ ଭାବ ରାଶି
ମୋ ହୃଦ ତରଙ୍ଗେ ଭାସି
ଯାଉଥିଲା ଥିଲି ଯେବେ ତୋର କୋଳେ ଖେଳେ
ସେ ସବୁ ରହିବ କି ଏବେ ଭବ ଖେଳେ ।"

"ଛବିଶ ବର୍ଷ ପ୍ରବେଶ"ରେ ସେ କରୁଣ ଜୀବନର ଚିତ୍ର ଦେଖି ଲେଖି ଯାଇଛନ୍ତି—

"ପଚିଶ ଛବିଶ ବର୍ଷ ହେଲା ଏବେ ଗତ
ପଛକୁ ଗୁହିଁଲେ ହୃଦ ଆହା କି ବିକଳ !
ଅଛି ତ କେବଳ ମୋର ରୁକ୍ଷ ସଇକତ,
ଦିଶେ ନାହିଁ କାହିଁ ଏକ ଶ୍ୟାମ ଦୁର୍ବାଦଳ ।"

"ବିଷାଦ ସମୟରେ ଲିଖିତ କତିପୟ ପଂକ୍ତି" କବିତାଟି ୧୯୦୭ରେ ମୁକୁର ୨ୟ ଭାଗ ୫ମ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଇଂରେଜୀ କବି **P. B. Shelley** ଙ୍କର **"Stages written in dejection"** କବିତାର ଭାବରେ ପ୍ରଭାବିତ ହେଲାପରି ମନେହୁଏ । ତଥାପି ତାଙ୍କର ମୌଳିକ ସ୍ୱର ସ୍ପଷ୍ଟ ଭାବରେ ଶୁଣାଯାଇଚି ।

"ତରୁଲତା ନବ କିଶଳୟେ
ବିରଚିଣ କୋମଳ ଆସନ,
ଶୋଇବି ମୁଁ ବିତାନ ହୃଦୟେ
ଶୁଣିବାକୁ ବାୟୁ ସନ ସନ ।"

ଖଣ୍ଡଗିରି ଶିଖରେ, କଟକର ଶିଳାସେତୁ, ବିଂଶ ଶତାବ୍ଦୀର ପ୍ରଥମ ଦିନ ବାରବାଟି ଦର୍ଶନ, ଏକ ଅସରା ବର୍ଷାର ଅବ୍ୟବହିତ ପରେ ନରାଜ ଦର୍ଶନ, ବାଲିଯାତ୍ରା ସନ୍ଧ୍ୟାରେ ମହାନଦୀ ତୀରେ, ରେଲ ଉପରେ ଚିଲିକା ଦର୍ଶନ ଓ ଗଞ୍ଜାମ ଜାତୀୟ ସମିତି ପ୍ରଭୃତି କବିତାମାନଙ୍କରେ ମଧୁର ଓ ବିଧୁର ରୂପ ଆଙ୍କି ଯାଇଛନ୍ତି । ସଂସ୍କୃତି ଓ ପରମ୍ପରାର ଏକ ମହାନ୍ ଦେଶ ପରାଧୀନତାର ଶୃଙ୍ଖଳ ପିନ୍ଧି ପଡ଼ିରହିଛି । ତେଣୁ ଗୋପବନ୍ଧୁ ଦେଶର ଯେଉଁ ଦିଗକୁ ଚାହିଁଛନ୍ତି ନଦୀହ୍ରଦ, ଶୈଳ, ପାହାଡ଼ ତାଙ୍କୁ ମୁଖର କରିଚି । ସେଥିପାଇଁ ସେ ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ଆଶାନ୍ୱିତ ହୋଇଛନ୍ତି କେଉଁଠି ଅବା ବେଦନାରେ କାତର ହୋଇଉଠିଛନ୍ତି ।

"ଧନ୍ୟ ଲଲାଟେନ୍ଦୁ ଧନ୍ୟ କେଶରୀ ପୁଙ୍ଗବ,
ଉତ୍କଳର ପୁଣ୍ୟ ଶ୍ଳୋକ ଅମର ଗୌରବ ।
ଶୌର୍ଯ୍ୟବୀର୍ଯ୍ୟ କଳାକାବ୍ୟ ଧର୍ମଜ୍ଞାନ ମାନ,
ଥିଲା ଯାଙ୍କ ସୁଶାସନ ପବିତ୍ର ବିଧାନ ।
କହ ତାଙ୍କ କଥା ତାଙ୍କ ରାଜ୍ୟ ସମାଧିର,
ନିର୍ଜୀବ ଉତ୍କଳେ ପ୍ରାଣ କର ହେ ସଞ୍ଚାର ।"

ଖଣ୍ଡଗିରି ଶିଖରେ

"ବ୍ରାହ୍ମଣ ସମିତି ଗୃହାବାସରେ ସମବେତ ଗ୍ରହମାନଙ୍କ ପ୍ରତି ।" ଗୋପବନ୍ଧୁ ଯେଉଁ ଉଦ୍‌ବୋଧନ ଦେଇ ଯାଇଛନ୍ତି, ଜାତି ଭିତ୍ତିକ ଭଳ ଦେଖାଯାଉଥିଲେ ମଧ୍ୟ ତାର ସଂପ୍ରସାରିତ ଦିଗ୍‌ବଳୟରେ ଚିହ୍ନ ହଜିଯାଏ ।

ନିଜ ସୁଖ ଲାଗି ଜାତି ନୁହେ ହିନ୍ଦୁ
ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ ।
ଦେଖାଅ ଏ ସତ୍ୟ ଆପଣା ପରାଣେ
ଦିଅ ଏହି ମନ୍ତ୍ର ସର୍ବ ମନ୍ତ୍ର କାନେ ।
ଆମ୍ଭେ ସର୍ବେ ଏକ ଈଶ୍ୱର ସନ୍ତାନ
ସାଧ ବିଶ୍ୱହିତ ତେଜି ଅଭିମାନ ।"

ଆଜ ଯେ କେତୋଟି କବିତା ରହିଛି ତାହା ଏଇ ଭାବର ଦୀପ୍ତିରେ ଉଜ୍ଜ୍ୱଳ ଓ ସୁନ୍ଦର ।

"କାରା କବିତା"ରେ ବିଭିନ୍ନ କବିତାର ସମାବେଶ ଘଟିଛି— ତେଣୁ ତହିଁରେ ସୂର୍ଯ୍ୟର ଆଲୋକ ଅଛି, ବର୍ଷାର ଆସାର ଅଛି ତେଣୁ ତହିଁରେ ଫୁଟି ଉଠିଛି ସାତ ରଙ୍ଗର ଇନ୍ଦ୍ରଧନୁ ।

## କାରା କବିତା

୧୯୨୨ ମେ ମାସ ୩୧ ତାରିଖ । ସମୁଦ୍ର ପବନରେ ବନ୍ଦେମାତରମ୍‌ର ପତାକା ବେତାଳ ହୋଇ ଉଡ଼ୁଛି । ନରେନ୍ଦ୍ର ସରୋବରରେ ସ୍ନାନକରି ଗୋପବନ୍ଧୁ ଘରକୁ ଫେରୁଛନ୍ତି, ହଠାତ୍ ତାଙ୍କର ପଥରୁଦ୍ଧ କରି ଦଳବଳ ସହ ସାମ୍ନାରେ ଠିଆହୋଇଗଲେ ପୁରୀର ପୁଲିସ୍ ଇନସ୍‌ପେକ୍ଟର । କଟକ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କର ଗିରଫଦାରି ଓ୍ୱାରେଣ୍ଟ ତାଙ୍କୁ ଦେଖାଇଲେ । ତାହା ଦେଖି ଗୋପବନ୍ଧୁଙ୍କର ମୁଖରେ କୌଣସି ଭାବାନ୍ତର ଜାତ ହେଲା ନାହିଁ । ବରଂ ସେ ହସି ହସି କହି ପକାଇଲେ, "ସରକାରଙ୍କର ଏ ନିମନ୍ତ୍ରଣ ଆସିବ ଆସିବ ବୋଲି ମୁଁ ବହୁଦିନରୁ ମନେ ମନେ ଭାବୁଥିଲି । ଯାହାହେଉ ଏତେ ଦିନକେ ପହଞ୍ଚିଗଲା ।"

ବଡ଼ଦାଣ୍ଡରେ ଯାଉଥିବା ଯାତ୍ରୀ ଓ ଲୋକ ଶହ ଶହ ସଂଖ୍ୟାରେ ସେଠି ଜମା ହୋଇଗଲେ । ଘେରିଗଲେ ଚାରିପାଖେ । ସମସ୍ତଙ୍କର ମନରେ ଉଦ୍‌ବେଗ, ଚକ୍ଷୁରେ ଅଶ୍ରୁ । ଗୋପବନ୍ଧୁ ସେଇ ସୁଯୋଗରେ ସମବେତ ଜନତାକୁ ଦେଇପାରିଲେ ତାଙ୍କର ବିଦାୟ ବାର୍ତ୍ତା—

"ଭାଇମାନେ ବର୍ତ୍ତମାନ ସରକାର ମୋତେ ଆରେଷ୍ଟ କରୁଛନ୍ତି । ଏଠାରୁ ମତେ କଟକ ନିଆ ହେବ । ଫଉଜ କାନୁନର ୧୨ ଧାରା ବଳରେ ମୁଁ ଧରା ହୋଇଛି, ସ୍ୱାର ବିଚାର ହେବ ଆସନ୍ତା ୧୨ ତାରିଖରେ ।

ମୋ ନାଆଁରେ ପୁଣି ଆଉ ଏକ ମକଦମା—ଭଦ୍ରଖରେ ମୁଁ ଆଇନ୍ ଅମାନ୍ୟ କରିଛି ବୋଲି । ମୋ ସଙ୍ଗରେ ଥିଲେ ଭଗୀରଥି ମହାପାତ୍ର ସେ ମଧ୍ୟ ଗିରଫ ହୋଇ ଯାଇବେଣି ।

ମୁଁ ଶୁଣୁଛି, କନିକା ରାଜ୍ୟର ଜଣେ ପ୍ରଜା ମୋ ନାଆଁରେ ମାନହାନି ମକଦମା କରି ସମନ୍ ବାହାର କରାଇଛନ୍ତି । କନିକା ଅତ୍ୟାଚାରର ଅନୁସନ୍ଧାନ ବେଳେ ମୋତେ ଦୂରରେ ରଖିବା କନିକାରାଜାଙ୍କ ସଙ୍ଗରେ ସରକାରଙ୍କର ଇଚ୍ଛା ।

ମୋର ଶରୀର ନିତାନ୍ତ ଅସୁସ୍ଥ ଥିଲା । ଛଅ ସାତ ଦିନ ପାଇଁ ବିଶ୍ରାମ ନେବାକୁ ପୁରୀ ଆସିଥିଲି । ସରକାର ତାହା ଚାହାନ୍ତି ନାହିଁ । ଦେଶରେ ସ୍ୱରାଜ୍ୟ ଆଣିବା ପାଇଁ ଆମମାନଙ୍କର ସଂଗ୍ରାମ । ମୋତେ ନେଇଯାଉଛନ୍ତି ଦୁଃଖ ନାହିଁ । ତୁମେମାନେ ସମସ୍ତେ ଅଛ । ଜଗନ୍ନାଥ ଅଛନ୍ତି, ତୁମେମାନେ ଅନାଥ ନୁହ । ଦେଶରେ କଂଗ୍ରେସ ଅନୁଷ୍ଠାନକୁ ରକ୍ଷାକର । ଗାନ୍ଧୀଙ୍କର ବାଣୀ ପ୍ରଚାର କର, ଅରଟ ଚଳାଅ ଖଦଡ଼ ପିନ୍ଧ । ଅନ୍ୟାୟ ବିରୁଦ୍ଧରେ ଲଢ଼ । ମୋ ପାଇଁ ଯଦି ଲୁହ ଦେଉଛ, ଦୁଃଖ କରୁଛ ତାହାହେଲେ ମୋର ଅଳି ରଖିଲେ ମୁଁ ଜେଲରେ ଆନନ୍ଦରେ ରହିବି ।”

ଏହି ସଂବାଦ ଶୁଣି ମହାତ୍ମା ଗାନ୍ଧିଜୀ ୮।୬।୧୯୨୨ ର Young India ରେ ଲେଖିଥିଲେ—

> "The Tapaswi of Orissa was arrested while trying to rest and recoup health at Puri. His words at the time of arrest are inspiring.
>
> I was trying a little rest about a week to recoup my broken health. I am glad that the Government people are anxious to give me no longer any rest.

ପ୍ରଥମେ ବାଲେଶ୍ୱରରେ ଗୋପବନ୍ଧୁ ଦାସ ଓ ଭଗୀରଥି ମହାପାତ୍ରଙ୍କର କେସ୍‌ର ବିଚାର ହେଲା—ଉଭୟଙ୍କୁ ଛ ମାସ ଲେଖାଏଁ

ଜେଲଦଣ୍ଡ । ହାତ କଡ଼ ପିନ୍ଧାଇ, ଅଣ୍ଟାରେ ଦଉଡ଼ି ବାନ୍ଧି ଉଭୟଙ୍କୁ କଟେକରେ ଜେଲ୍‌କୁ ନିଆଗଲା । ଗୋପବନ୍ଧୁଙ୍କର ବାଁ ହାତରେ ଭଗୀରଥିଙ୍କ ଡାହାଣ ହାତକୁ କଡ଼ାରେ ବନ୍ଧା ହୋଇଥିଲା । ଗୋପବନ୍ଧୁ ହସି ହସି କହୁଥାନ୍ତି— "ଭଗୀରଥି, ଇଏ ତ ଅଗ୍ନିମାରମ୍ଭ, ଅପରେ କଅଁ ଉଦେଖୁଛ ? ସ୍ୱରାଜ ପଥରେ ଇଏ ତ ଆମର ଜୟଯାତ୍ରା ।"

କଟକରେ ମୂକ ମକଦ୍ଦମାର ବିଚାର ହେଲା । ଗୋପବନ୍ଧୁ ଓ ଭଗୀରଥି ଆନ୍ଦୋଳନର ନେତା—ଉଭୟଙ୍କୁ ଦୁଇବର୍ଷ ଲେଖାଏଁ ଜେଲ-ଦଣ୍ଡ, ଗୋପବନ୍ଧୁଙ୍କ ସଙ୍ଗୀ ଭାବରେ ଡାକ୍ତର ରସୁଲଙ୍କୁ ଦେଢ଼ ବର୍ଷ ଓ ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ ଓ ଆଉ କେତେଜଣଙ୍କୁ ଏକ ବର୍ଷ ଲେଖାଏଁ ।

ଦୁଇଟି ଦଣ୍ଡ ଏକାଠି ଭୋଗ କରୁଥିବାରୁ ଅଢ଼େଇ ବର୍ଷ ପରି-ବର୍ତ୍ତରେ ଗୋପବନ୍ଧୁଙ୍କର ହେଲା ଦୁଇ ବର୍ଷ ଭଗୀରଥିଙ୍କର ମଧ୍ୟ । ଗୋପବନ୍ଧୁ କଟକ ଜେଲରେ ରହିଥାନ୍ତି । କନିକା କେସ ଚାଲିଥାଏ । ଶେଷରେ ଜାନୁଆରୀ ୧୮ ତାରିଖରେ କନିକା ରାଜ୍ୟ ପକ୍ଷରୁ ସେ ମକଦ୍ଦମା ପ୍ରତ୍ୟାହୃତ ହୋଇଗଲା । ସେଇ ମାସର ୨୦ ତାରିଖରେ ଗୋପବନ୍ଧୁଙ୍କୁ ନିଆଗଲା ହଜାରିବାଗ ଜେଲକୁ ।

କଟକ ଓ ହଜାରିବାଗ୍ ଜେଲରେ ଆମର ଜାତୀୟ କବି ଯେଉଁ କବିତା ଗୁଡ଼ିକ ରଚନା କରିଥିଲେ ସେ ଗୁଡ଼ିକ ପ୍ରକାଶିତ ହୋଇଥିଲା । କବିଙ୍କ ପରଲୋକ ହେବାର ପରେ, ସମାଜର ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା-ମାନଙ୍କରେ ପୁସ୍ତକାକାରରେ ଯେତେବେଳେ ସେଇ କବିତାବଳୀ ସଂକଳିତ ହେଲା, ତାର ନାମ ହେଲା "କାରାକବିତା" ।

ପୁରାଣ ଯୁଗରେ ଯେଉଁ କାରାଗାର ଜଗତ ଉଦ୍ଧାରକ ଶ୍ରୀକୃଷ୍ଣଙ୍କୁ ଜନ୍ମ ଦେଇପାରିଥିଲା । ସେଇ କାରାଗାର ଯୁଗ ଯୁଗ ବହୁ ବନ୍ଦୀରାଣୀ, ବିପ୍ଳବୀ, କବି, ମନୀଷୀ ଓ ସଂସ୍କାରକମାନଙ୍କର ଅମର ଶବ୍ଦର ଗ୍ରନ୍ଥମାନ ଦାନ କରି ଆସିଅଛି । ଶ୍ରୀ ବାଲଗଙ୍ଗାଧର ତିଲକ ଜେଲ୍ ଜୀବନରେ ଲେଖି ଯାଇଛନ୍ତି "ଗୀତା ରହସ୍ୟ । ମହାତ୍ମାଗାନ୍ଧୀ "My experiment

with truth." ପଣ୍ଡିତ ଜବାହରଲାଲ "My autobiography," "Discovery of India" ଓ "Glimpses of World History." ସେଇପରି ଆମ ଓଡ଼ିଶାର ଏକାନ୍ତ ଆତ୍ମୀୟ ଗୋପବନ୍ଧୁ ଜେଲ୍ ଜୀବନର ଅନ୍ଧକାର ଭିତରୁ ଓଡ଼ିଆ ସାହିତ୍ୟକୁ ଦେଇଛନ୍ତି ଅମୂଲ୍ୟ ସାରସ୍ୱତ ଦାନ ଓ ଅବଦାନ—କାରା କବିତା, ବନ୍ଦୀର ଆତ୍ମକଥା ଓ ଅନ୍ୟାନ୍ୟ କେତେକ କବିତା ।

ରାଜବନ୍ଦୀ ଭାବରେ ଗୋପବନ୍ଧୁ ବନ୍ଦୀଶାଳାରେ ଅବରୁଦ୍ଧ ହୋଇ ରହିଛନ୍ତି । ଯିଏ ଦେଶପାଇଁ, ଦଶପାଇଁ ନିରନ୍ତର ଜୀବନ ଉତ୍ସର୍ଗ କରିଛନ୍ତି ସରକାର ଚକ୍ଷୁରେ ଅପରାଧୀ ହେବାରେ ତାଙ୍କ ମନରେ ଜାଗିଉଠିଛି ପ୍ରତିକ୍ରିୟା ଓ ଅଗ୍ନେୟ ଜିଜ୍ଞାସା—

"ମୁଁ କି ଦୋଷୀ ? ପଚାରିଲେ ଅନ୍ତରେ ଅନାଇ
ଅନ୍ତରୁ ଉତ୍ତର ଆସେ, ନାହିଁ, ନାହିଁ, ନାହିଁ ।
ନୁହେ ନରହନ୍ତା ଅବା ପରଧନ ହାରୀ
ପରଶି ନାହିଁ ଏ ତନୁ କେବେ ପର ନାରୀ ।
ଜ୍ଞାତସାରେ ଦେଇନାହିଁ ପରପ୍ରାଣେ ପୀଡ଼ା
ଅପରାଧେ ଅନ୍ୟପାଶେ ହୋଇନାହିଁ ଛିଡ଼ା ।
ହରି ନାହିଁ କେବେ ଶସ୍ୟ ବଳେ ପର କ୍ଷେତ୍ରୁଁ
କାଟିନାହିଁ ସାଧାରଣ ଜଳାଶ୍ରୟ ସେତୁ ।
କରିନାହିଁ ଶାନ୍ତି ଭଙ୍ଗ କାହିଁ ଆୟୋଜନ
ଦେଇନାହିଁ ଜାତିଧର୍ମ-ବିଦ୍ୱେଷ-ଭାଷଣ ।
କରିନାହିଁ ପରନିନ୍ଦା ଈର୍ଷ୍ୟା ସହକାରେ
ଅପରାଧେ କଳୁଷିତ ତେବେ କି ପ୍ରକାରେ ?"

ପିତୃଲୋକ ତର୍ପଣ

ଯେଉଁ ନିଷ୍କଳୁଷ ପୁଣ୍ୟାତ୍ମାଙ୍କର ଆତ୍ମପ୍ରକାଶ ବହ୍ନିଶିଖା ପରି ସମୁଜ୍ଜ୍ୱଳ ସେ ଆହୁରି ବହ୍ନିମାନ ହୋଇ "ପିତୃଲୋକ"ଙ୍କୁ ପ୍ରଶ୍ନ ପଚାରିଛନ୍ତି—

"ନ୍ୟାୟର ନମିଳ ତୂଳେ ତୂଳି କହ ହେଉ
କ କାରଣ ଲଗିଛୁ ମୋ ହସ୍ତେ ଲୁହାବେଡ଼ି ?
ଯେ ବ୍ୟାପାରେ ଭୋଗେ ମୁହିଁ ଆଜ କାରାଗାର
କହ ତହିଁ ଅପରାଧ ଯଥାର୍ଥ କାହାର" ?

ମାତ୍ର ଗୋପବନ୍ଧୁ ଜୀବନରେ ମହାତ୍ମାଗାନ୍ଧୀଙ୍କର ଆଦର୍ଶ ଗ୍ରହଣ କରି ତାଙ୍କ ତ୍ୟାଗପୂତ ପଥରେ ବ୍ରତୀ ହୋଇଥିଲେ । ବନ୍ଦୀଶାଳାରେ ସେ ତାଙ୍କୁ ସ୍ମରଣ କରନ୍ତି—

"ମୁଁ କି ଏକା ? ଶତ ଶତ ଭାରତ ସନ୍ତାନ
ଭୋଗୁଛନ୍ତି ଅକାରଣେ କାରା ଅପମାନ ।
ଭୋଗନ୍ତି ଅଦ୍ୟାପି କେତେ ଦାରୁଣ ଯାତନା
ତେଜି ଜୀବନର ସୁଖ ସମ୍ଭୋଗ ବାସନା ।
ଶୋଣିତ ପିପାସୁ ଘୋର ପାଶବ ସଭ୍ୟତା
ନାଶିବାକୁ ବ୍ରତୀରେ ଯେ ଅହିଂସା ବାରତା ।
ଜଗତବାସୀଙ୍କ ନରେ ଶାନ୍ତ ସୁଧାପଥ
ଦେଖାଇବା ଜୀବନରେ ଯାର ମୁଖ୍ୟ ବ୍ରତ ।
ଶମ ଦମ ସତ୍ୟ ଶୁଦ୍ଧ ତ୍ୟାଗପୂତ ପ୍ରାଣ
ମାନବ-ଗୌରବ ଗାନ୍ଧି ଭାରତ ସନ୍ତାନ ।
ଦୀର୍ଘକାଳ ଲାଗି ଏବେ ବନ୍ଦୀ କାରାଗାରେ
କାହା ଦୋଷ ଏଥି ? କହ ଉଚିତ ବିଚାରେ" ।

ଯେଉଁ ସାଧକ ପରାଧୀନତାର ଶୃଙ୍ଖଳ ମୋଚନ କରିବା ପାଇଁ କାରା ଶୃଙ୍ଖଳ ବରଣ କରି ନେଇଛନ୍ତି ସେହି ମହାତ୍ମାଗାନ୍ଧୀ ୨୭-୧-୨୨ର Young India ରେ ଲେଖିଥିଲେ—

"The prison cell where Socrates drank the poison cup was undoubtedly the way to bliss. He lives today through the memory of that Ineffaceable scene."

ଗୋପବନ୍ଧୁ ସେଇ କଥାକୁ କାବ୍ୟାୟିତ କରିଛନ୍ତି ତାଙ୍କର "ବନ୍ଦୀର ସାନ୍ଧ୍ୟଭକ୍ତି" କବିତାଟିରେ—

"ସତ୍ୟ ସ୍ୱାଧୀନତା ଲାଗି ଯାର କାରାବାସ,
ତା ଲାଗି ଏ ପୁଣ୍ୟ ବେଳ କରେ ମୁଁ ବିଶ୍ୱାସ ।
ପଶ୍ଚିମ ଭୂଭାଗେ ଆଜ ଯବନ ମହର୍ଷି
ଶାନ୍ତ ଦାନ୍ତ ମହାଯୋଗୀ ଆଦ୍ୟ ତତ୍ତ୍ୱଦର୍ଶୀ ।
ଆତ୍ମାର ଅମର ତତ୍ତ୍ୱ ପ୍ରଚାରି ଲୋକରେ
ସତ୍ୟସନ୍ଧ ସକ୍ରେଟିସ ଯେବେ ଅକାତରେ ।
ପାଷଣ୍ଡ ଶାସନ ଦଣ୍ଡେ ଦେଖାଇଲେ ଶିର
ମୂର୍ଖେ ଯେବେ ବିଷପାତ୍ର ଲଗାଇଲେ ବୀର ।
ଏଥେନ୍ସ ଆକାଶେ ଏହି ଅସ୍ତମିତ ରବି
ଦେଖାଇଲା ହାସ୍ୟ ଭାସେ ନିରାନନ୍ଦ ଛବି ।
ବୁଡ଼ ନାହିଁ ଏବେ ସୂର୍ଯ୍ୟ, ଆସି ନାହିଁ କାଳ
ନ ପିଅ ମହର୍ଷି, ଆଉ ମୁହୂର୍ତ୍ତେ ସମ୍ଭାଳ ।
ସ-ବିନୟେ ନିବେଦନ କଲେ ଶିଷ୍ୟଦଳ
ମମତା ଉପେକ୍ଷି ମୁନି ପିଇଲେ ଗରଳ ।
ଗଲା ସେ ଅମର ଆତ୍ମା ଛାଡ଼ି ମର କାୟା
ଆଚ୍ଛାଦିଲା ଚଉଦିଗେ ବିଷାଦର ଛାୟା ।
ଜାଣି ନ ଥିଲା ଯେ ହୃଦ ଭୟ, ପଳାୟନ
ମରଣେ ଯେ ଦେଖୁଥିଲା ଅମର ଜୀବନ ।
ଗ୍ରୀକଗଲା ଗ୍ରୀକ୍ ଗ୍ରୀକ୍ ତେଜ ମର୍ତ୍ତ୍ୟବାସ
ବୀର ଗୁଣ ଗାଥା ଏବେ ଗାଏ ଇତିହାସ ।"

ସେଇ କବିତାରେ ଗୋପବନ୍ଧୁ ପୁଣି ସୂର୍ଯ୍ୟଙ୍କୁ ଜିଜ୍ଞାସା କରି ହୃଦୟର ଚଳନ୍ତି ସ୍ୱପ୍ନ ଆଙ୍କି ଯାଇଛନ୍ତି ସେ ସ୍ୱପ୍ନ ମଣିଷଜାତିର ମୁକ୍ତି ଓ ସ୍ୱାଧୀନତା ।

"ମାନବ ସଭ୍ୟତା ମୁଖେ କଳଙ୍କ କାଳିମା
ଦେଖିଛୁ ସବୁତ ତାର ନାହିଁ ପରସୀମା ।

କହ ଦେବ ହେଲ କବା ପରିଣାମ ତାର
ଜଗତରେ କାହା କାର୍ଯ୍ୟ ଲଭିଲ ପ୍ରସାର ?
ଉଡ଼ୁଅଛି ଅବଶେଷେ ସତ୍ୟର ନିଶାଣ
ବାଜୁଅଛି ସ୍ୱାଧୀନତା ବିଜୟ ବିଷାଣ ।
ହୋଇଅଛି ରାଜଶକ୍ତି ଲୀନ କାଳଗ୍ରାସେ
ପାଉଅଛି ଅପଯଶ ଭରୀ ଇତିହାସେ ।"

ସେଇ ସତ୍ୟ ଓ ସ୍ୱାଧୀନତା ପାଇଁ ଗୋପବନ୍ଧୁ କାରାବରଣ କରିଛନ୍ତି । ତାଙ୍କ ପକ୍ଷରେ ତାହା ନିଶ୍ଚିତ ଭାବରେ ବନ୍ଧନ ଓ ନିପୀଡ଼ନ, ତହିଁରେ ଦ୍ୱିଧା ନାହିଁ । ସତ୍ୟବ୍ରତ ପ୍ରାଣ ତାହାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛି "ବନ୍ଦୀର ବିରହ ବ୍ୟଥା" କବିତାରେ—

"ସମ୍ଭାଳ ଟିକିଏ ସିପାହୀ, ଶୁଣ ନ ଦିଅ ବାରେ

× × ×

ରହ ଆଉ ଦଣ୍ଡେ ସିପାହୀ, କିଂପା କର ଜଞ୍ଜାଳ?
କହେ ଅବବୋଧ ସମସ୍ତ ପର ଗୋଧୂଳି କାଳ ।
ଦେଖ ରତ ରତ ହୁଅଇ ରବି ଏବେ ଗଗନେ
ଆଉ ଟିକିଏ ମୁଁ ବୁଲିବ ଏଥି କାରା ପ୍ରାଙ୍ଗଣେ ।
ଯମଦୂତ ହୃଦେ କରୁଣା କାହୁଁ ବସିବ ଛଳେ,
ଅଧିକ ନ କହ ମର୍ଯ୍ୟାଦା ଜଗି ପଶିବି ବଳେ ।"

ପୁନଶ୍ଚ "ବନ୍ଦୀର ସନ୍ଧ୍ୟା ଭାବନା"ରେ ତାଙ୍କ ପ୍ରାଣର ଗମ୍ଭୀର ବେଦନା ଫୁଟି ଉଠିଛି—

"ଗୁମୁଟିରେ କାରାଘଣ୍ଟା ବାଜେ ଠଣ ଠଣ ଠଣ
ଯେ ଯାହା ପିଞ୍ଜରେ ବନ୍ଦ ହେଲେ ସର୍ବ ବନ୍ଦୀଗଣ ।
ତ୍ରିଶ ଖୁଆଡ଼ର ସଙ୍ଖ୍ୟା ଡାକେ ଉଚ୍ଚେ ଜଗୁଆଳୀ
ଲାଗିବ ଏ ରାତ୍ର ଯାକ ସଙ୍ଖ୍ୟା ସଙ୍କୀର୍ତ୍ତନ ପାଳି ।"

ବିଶ୍ୱ ବରେଣ୍ୟ ଗାନ୍ଧି ପୁଣି ସେଇ ୨୬-୧-୨୨ରେ Young India ର ପୃଷ୍ଠ ୫୦ରେ କହିଥିଲେ—

"Whilst the suffering lasted it was difficult to bear but it is now one of the richest treasures in life's memory. We have today converted the jails into havens of refuge for liberty loving men. They can be easily turned into the abodes for attaining Nirvana"

ମହାତ୍ମାଙ୍କର ଧାରଣା, ତ୍ୟାଗର ଓ ସାଧନାର ପ୍ଳାବନତା ଓ ବଳିଷ୍ଠତାରେ ମଣିଷ କାରାଗୃହକୁ ଆଶ୍ରମ ଭୂମି ଓ ନିର୍ବାଣ ଧାମରେ ପରିଣତ କରି ପାରିବ···ମାତ୍ର ଗୋପବନ୍ଧୁ ସେଇ ଭାବର ପ୍ରତିଧ୍ୱନି ଶୁଣାଇଛନ୍ତି ସତ୍ୟ, ଅବୃଶ୍ୟ ଯୋଗୀ ଶକ୍ତିର ପ୍ରଭାବ ଉଲ୍ଲେଖ କରିବାକୁ ଭୁଲି ନାହାନ୍ତି ।

"କାରାରେ ଜନନୀ ବନ୍ଧୁଙ୍କ ବିୟୋଗ ବାର୍ତ୍ତା ଶୁଣିବାପରେ" କବିତାରେ ତାଙ୍କର ଆପଣେ ପ୍ରକାଶ କରି ଅଛନ୍ତି—

"ସୁଖ ଦୁଃଖ ଦେଶୁ ମୋର ସମ ସହଚର
ଜନମେ ମରଣେ ନାହିଁ ହରଷ ବିଷାଦ ।
ଆହ୍ଲାଦେ ଆପଦେ ମୋର ସମାନ ଆଦର
ସବୁ ଶୁଭ ବିଧାତାଙ୍କ ଶୁଭ ଆଶୀର୍ବାଦ
ଏ ବିଶ୍ୱାସେ କାରା ମୋର ପୁଣ୍ୟ ତପୋବନ ।"

"ବନ୍ଦୀର ସନ୍ଧ୍ୟା ଭାବନା"ରେ ପୁଣି ସେଇ ଭାବର ଉଚ୍ଚାରଣ—

"ତାଙ୍କ ବଳେ ଶାର୍ଥ ମୋର ଦୁଃସହ ବିଷମ କାରା"

ବନ୍ଦୀର ଆତ୍ମକଥାର ଯେଉଁ ଅଂଶ କଟକ'କାରାବାସରେ ଲିଖିତ ସେଥିରେ ଅଛି—

"ମିଳେ ଯଦ୍ଧ କାହା ସଙ୍ଗେ କାରବାସ,
କାର ନୁହଇ ସେ ପରାଣ ତ୍ରାସ ।
ଆସି ଏଥି ଯୁଦ୍ଧା ଏବେ ମୋ ବସ୍ଥିର
ଏ କାରାୟ ମୁକ୍ତ—ସ୍ୱରଗ ଦୁଆର ।"

ସେଇ ସମ୍ପର୍କରେ ଇଂରେଜୀ କବି Richard Lovelaceଙ୍କର କେତୋଟି ପଂକ୍ତି ସ୍ମୃତିପଥରେ ଅନୁରଣିତ ହୁଏ ।

"Stone walls do not a prison make
For Iron bars a Cage
Mind Innocent and quiet take
That fot a hermitage."

'ବନ୍ଦୀର ସ୍ୱଦେଶ ଚିନ୍ତା' କବିତାରେ ପ୍ରକୃତିର ସେହି ସମ୍ପ୍ରସାରିତ ବଳୟ ଓ ମନର ସେହି ବ୍ୟାକୁଳ ଆଗ୍ରହ ଦେଖିବାକୁ ମିଳେ ତାହା ଅନୁପମ ଆକାରରେ ବର୍ଣ୍ଣିତ ହୋଇଛି ।

ପ୍ରାରମ୍ଭରେ × × ×

'ବାହାରେ ବହଇ କେଡ଼େ ସୁଶୀତଳ
ମଧୁର ମଳୟ ମନ୍ଦ ମରୁତ
ନବ ମଲ୍ଲୀ କଢ଼ି ମୁଣ୍ଡକୁ ହସଇ
ଭ୍ରମର ଦୋଳାଏ ପ୍ରେମେ ତା ବୃନ୍ତ ।
କବାଟ ଫାଙ୍କରେ ଶୃଙ୍ଖଳେ ବାଙ୍କରେ
ଥରେ ଥରେ ପଶେ ଶୀତଳ ପବନ,
ସେ କି ଗୁପ୍ତଚର ବାହାର ଖବର
ଦେଇ ଲୁଚିଯାଏ ବହନ ।।"

ବନ୍ଦୀ ଗୋପବନ୍ଧୁ କାରା ପ୍ରାଙ୍ଗଣରେ ମଳୟ ପବନର ସଞ୍ଚରଣ ଲକ୍ଷ୍ୟ କରି ମନେକରିଛନ୍ତି, ସତେ ଯେପରି ସିଏ ଏକ ଗୁପ୍ତଚର । ବାହାର ଖବର ଦେଇ ପୁଣି ଲୁଚି ଚାଲିଯାଉଛି । ତାର ସ୍ପର୍ଶ ପାଇଁ ତାଙ୍କ

ପ୍ରାଣରେ ଅଗ୍ରହ, ତା ସାଥିରେ ଆଶ୍ୱାସ ଓ ବିଶ୍ୱାସ । ତେଣୁ ସେ ତା ହାତରୁ ବାହାରର କୌଣସି ସମ୍ବାଦ ପାଇବା ପାଇଁ ଉତ୍କଣ୍ଠିତ ।

ଦୂତ କବିତା ଦୂତ କାବ୍ୟରେ ସଂଖ୍ୟା ସଂସ୍କୃତ ସାହିତ୍ୟରେ ଯଥେଷ୍ଟ ବେଶି । କାଳିଦାସଙ୍କ ମେଘଦୂତ, ଘଟକର୍ପରଙ୍କ ଯମକ କାବ୍ୟ, ଧୋୟୀଙ୍କ ପବନଦୂତ, ରୂପଗୋସ୍ୱାମୀଙ୍କ ହଂସଦୂତ, ବିମଳକୀର୍ତ୍ତିଙ୍କ ଚନ୍ଦ୍ରଦୂତ, ଚରିତ୍ରସୁନ୍ଦର ଗଣିଙ୍କ ଶୀଳଦୂତ, ବିକ୍ରମକବିଙ୍କ ନେମିଦୂତ ଇତ୍ୟାଦି ପ୍ରାୟ ସଂଖ୍ୟାରେ ୫୦ ଯାଏ ହେବ ।

ମାତ୍ର ଅଧିକାଂଶ ରଚନା ଯେପରି ଚିନ୍ତୟ ଓ ଶୃଙ୍ଗାର ରସରେ ଜର୍ଜରିତ । ମାତ୍ର ଆମ ଓଡ଼ିଆ ସାହିତ୍ୟରେ ପ୍ରଚୁର ଦୂତ କବିତା, ଚଉତିଶା ଥିଲେହେଁ ଗୋଟିକରେ ବାତ୍ସଲ୍ୟ ରସର ସମାବେଶ ଦେଖିବାକୁ ମିଳେ— ସେଇଟି କେବଳ କୋଇଲି । କୃଷ୍ଣ ମଥୁରାକୁ ଯାଇ ଆଉ ନ ଫେରିବାରୁ ଜନନୀ ଯଶୋଦା ଆତୁର ହୋଇ କୋଇଲି ହାତରେ ସମ୍ବାଦ ଦେଉଛନ୍ତି—

"କୋଇଲି ଲୋ,
କେଶବ ଯେ ମଥୁରାକୁ ଗଲା,
କାହା ବୋଲେ ପୁତ୍ର ମୋର ବାହୁଡ଼ି ନଇଲା,
ଲୋ କୋଇଲି ।"

ଇଂରେଜୀ କବି କାଉପରଙ୍କର ଗୋଟିଏ କବିତା ଏଠି ଉପସ୍ଥାପିତ କରିବାକୁ ପ୍ରାସଙ୍ଗିକ ମନେକରୁଛି—Solitude ନିର୍ଜନ ଦ୍ୱୀପରେ ନିର୍ବାସିତ ହୋଇ ଆଲେକ୍‌ଜାଣ୍ଡାର ସେଲକର୍କ ପବନକୁ ସ୍ୱଦେଶର ସମାଚାର ଆଣି-ଦେବାକୁ ଆବେଦନ କରୁଛନ୍ତି—

"Ye winds that have made me a sport
Covry to this desolate shore
Some cordial endearing report
of a land I shall see no more."

ବର୍ଜନ ଦ୍ୱୀପରେ ନିର୍ବାସିତ ଭାବରେ ସେଲକର୍କ ବାସ କରୁଥିଲେ, ସ୍ୱଦେଶକୁ ବାହୁଡ଼ିବାର କୌଣସି ଆଶା ନଥିଲା । ତେଣୁ କହୁଥିଲେ "A land I shall see no more." ମାତ୍ର ଗୋପବନ୍ଧୁଙ୍କର କାରା-ଦଣ୍ଡର ସମସ୍ତ ବର୍ଷ୍ଟି । ସେ ରହିଛନ୍ତି ସ୍ୱଦେଶରେ ଉତ୍ତର ଦିଗରେ—ହଜାରିବାଗ ଜେଲରେ । ତେଣୁ ଦକ୍ଷିଣ ଦିଗରୁ ଓଡ଼ିଶା ବାଟରେ ମଳୟ ପବନ ଆସିବାର କଥା......

"ହେ ବସନ୍ତ ବାତ ମୋ ଦ୍ୱାରେ ଆଘାତ
କର ଭଲ ଆଜ ଥରେ ସଦୟେ
ଦକ୍ଷିଣ ଦିଗର କହ ସମାଚାର
ସିଞ୍ଚ ଶାନ୍ତ ସୁଧା ଝଟେ ହୃଦୟେ ।
ମୋର ପ୍ରିୟସ୍ଥଳ କେତେ ନଉଚ୍ଛଳ
କହିଥିବେ ତବ ଆସିବା ବାଟେ,
ଦେଇଥିବେ ପତ୍ର କେତେକ ବାରତା
ଶୁଣାଅ ମନ ମୋ ଅଛି ଉଚ୍ଚାଟେ ।

ଅନ୍ୟାନ୍ୟ ଦୂତ କାବ୍ୟମାନଙ୍କରେ କାବ୍ୟନାୟକ ନାୟିକା ନିକଟକୁ କିମ୍ବା ନାୟିକା ନାୟକଙ୍କ ପାଖକୁ ସଂବାଦ ପଠାଇଛନ୍ତି, କିନ୍ତୁ ଗୋପବନ୍ଧୁ ସେଲକର୍କଙ୍କ ପରି ସ୍ୱଦେଶର, ପ୍ରିୟଜନ ମାନଙ୍କର ସମାଚାର ଜାଣିବାକୁ ବ୍ୟଗ୍ର ।

ଘଟକର୍ପରଙ୍କର ଯମକ କାବ୍ୟ ଏକ ଦୂତ କାବ୍ୟ—ତହିଁରେ ମେଘକୁ ଦୌତ୍ୟରେ ନିଯୁକ୍ତ କରାଯାଇଛି । ମାତ୍ର ସେ କବିତାର ରଚନା ରୀତିରେ ମୁଖ୍ୟ ଭାବରେ ଯମକ ବ୍ୟବହାର କରାଯାଇଛି ।

"ନିଚିତ ସମୁପେତ୍ୟ ନୀରଦୈଃ
ପ୍ରିୟହୀନ ହୃଦୟାବନୀ ରଦୈଃ ।
ସଲିଳୈର୍ନିହିତଂ ରଜଃ କ୍ଷିତୌଃ

ରବିଚନ୍ଦ୍ରାଦିଗନୋପଲକ୍ଷିତୈଃ ॥
ତେଣୁ ଗ୍ରନ୍ଥକର୍ତ୍ତାର ତାର ନାମ ରଖିଛନ୍ତି "ଯମକ କାବ୍ୟ" ।

ଗୋପବନ୍ଧୁଙ୍କର ମଳୟ ଦୂତରେ ମୁଖ୍ୟତଃ ସ୍ୱଦେଶ ଚିନ୍ତା ହିଁ ଉଲ୍ଲୀଳିତ ହୋଇଥିବାରୁ "ମଳୟ ଦୂତ" ନ କରି "ବନ୍ଦୀର ସ୍ୱଦେଶ-ଚିନ୍ତା" ନାମ ରଖିଛନ୍ତି । ତାଙ୍କର ଶରୀର ରହିଛି ବନ୍ଦୀଶାଳାରେ ମାତ୍ର ମନ ପରିଭ୍ରମା କରୁଛି ସୁଦୂର ଦକ୍ଷିଣ ଅଞ୍ଚଳରେ; ସ୍ୱଦେଶର ପଲ୍ଲୀ, ପୁର, ବଣ ପାହାଡ଼, ନଦୀର, ଦୁର୍ଗ, ମାଟି, ପାଣି ଓ ପବନରେ । ମହେନ୍ଦ୍ର ପର୍ବତଠାରୁ ସମ୍ବଲପୁର ପର୍ଯ୍ୟନ୍ତ, ସେଠୁ ହଜାରିବାଗର କାରାଗାର ପର୍ଯ୍ୟନ୍ତ ।

କାଳିଦାସ ମେଘକୁ ରାମଗିରିଠାରୁ ଉତ୍ତର ସୀମାର ଅଳକା ପର୍ଯ୍ୟନ୍ତ ପଠାଇଛନ୍ତି ମାତ୍ର ତାଙ୍କର ପ୍ରିୟତମା ନଗରୀ ଉଜ୍ଜୟିନୀ ତାର ଗନ୍ତବ୍ୟ ପଥରେ ପଡୁ ନ ଥିବାରୁ ବକ୍ରଗତିରେ ଯାଇ ତାର ସୌନ୍ଦର୍ଯ୍ୟଶ୍ରୀ ଦେଖି ଯିବାକୁ ଅନୁରୋଧ କରିଛନ୍ତି । ସେଇପରି ମଳୟ ପଥରେ ଭାର୍ଗବୀ ନଦୀର ତୀର ପଡୁନାହିଁ ତେଣୁ ଗୋପବନ୍ଧୁ ମଳୟ ଦୂତକୁ ପଠାଇବା ପୂର୍ବରୁ ତାଙ୍କର ପ୍ରିୟତମ ଭାର୍ଗବୀ ତଟର ସ୍ମୃତି ଉଦ୍‌ବୋଧନ କରିଛନ୍ତି । ସ୍ୱୀୟ ପଲ୍ଲୀଗ୍ରାମର ନାନା ଚିତ୍ର ସ୍ମରଣ କରିବାରେ ଆନନ୍ଦ ପାଇଛନ୍ତି—

"ମନେ ଏବେ ଆସେ ତରୁଣ ବୟସେ
ବୁଲୁଥିଲି ଯେବେ ଭାର୍ଗବୀ ତୀରେ,
ପୁନାଙ୍ଗ ବକୁଳ ସୌରଭ ସଂକୁଳ
ସୁବାସ ଶୀତଳ ସଞ୍ଜ ସମୀରେ ।
କ୍ଷୀଣତୋୟା ନୀରେ ଖେଳେ ଧୀରେ ଧୀରେ
ସୁମଞ୍ଜୁଳ ଲଘୁ ଲହରୀ ମାଳା
ଦକ୍ଷିଣ ଦିଗକୁ କୁଞ୍ଚିତ କୁନ୍ତଳ
ମେଲାଇ ଦେଇଛି କି ପଲ୍ଲୀବାଳା !

ତାପରେ ଉତ୍ପ୍ରେକ୍ଷାରୁ ବାସ୍ତବତାର ମୂର୍ତ୍ତି—ପଲ୍ଲୀବାଳା ପାଣି ଚହଲାଇ ଦେଇ କଳସୀରେ ପାଣି ଭରିବାବେଳେ ଲହଡ଼ି ଖଣ୍ଡେ ଦୂର ଖେଳିଯାଏ ।

ସଞ୍ଜ ଦେଖି ଗାଈଆଳ ପିଲା ବଂଶୀ ବଜାଇ ଗୋଠରୁ ଗାଈ ବାହୁଡ଼ାଇ ଆଣୁଛି । ହାଟୁଆ ହାଟକାମ ସାରି ହୃଷ୍ଟଚିତ୍ତପଦ ଗାଇ ଘରକୁ ଫେରୁଛି । ଯୋଗଣ୍ଡିଙ୍କ ଚାଖରେ କୁଆଁରୀ ଝିଅମାନେ ଧାପଦେଇ କଳ କୌତୁକରେ ମାତି ଉଠନ୍ତି ।

ସେହି ଚିତ୍ର ଭିତରେ ଗୋଟିଏ ଚିତ୍ର ସ୍ପଷ୍ଟ ବାରି ହୋଇଯାଏ···

ଯାଉଁଳି କାନ୍ଦରେ କେବେ ବା ବଣରେ
ଭଉଣୀ ଆଗରେ ଗୁଳୁଳି ଖାଇ,
ଶାଶୁଘରେ ନଏ ସନ୍ଧ୍ୟା ଦେଖି କନେ
ଗୁଡୁଣ୍ଡି ଗୋଡ଼ କାଢ଼ି ଖେଳିବା ପାଇଁ,
ନବ ଯଉବନା କାଳେ ପିଲ ଘେନ
ଖେଳ ନ ପାରଇ ଜଘନ ଭରେ
ତା ଗୁହାଁ ଚପଳ ଯୁବା ସଙ୍ଗୀ ଦଳ
ପରିହାସେ ଏକ ଆନକୁ ଠାରେ ।

ବୋଧହୁଏ ଏ ଚିତ୍ର ଗୋପବନ୍ଧୁ କେବେ ସ୍ୱୟଂ ଲକ୍ଷ୍ୟ କରିଛନ୍ତି । ତେଣୁ ସେଇ ସତ୍ୟ ଚିତ୍ରଟି ତାଙ୍କର ପଲ୍ଲୀସ୍ମୃତି ଭିତରେ ରହି ଚପଳଯୁବା ସଙ୍ଗୀମାନଙ୍କର ସିଆଡ଼କ ପରିହାସ । ଆଖି ଠାରିଠାରିକୁ କଟାକ୍ଷ କରିବାକୁ ଛାଡ଼ ନାହାନ୍ତି ।

କେତେ ଆଡ଼ୁ ବାଦୁଡ଼ି ଉଡ଼ିଆସି ପୁନାଙ୍ଗର ଫଳଭରା ଡାଳରେ ଝୁଲନ୍ତି, କେଉଁଠି ଅବା ଗାଁ ଟୋକାମାନେ ହୁକା ଜାଳି, କାନ୍ଥରେ ମାନ୍ତ ଧରିବାର ବ୍ୟବସ୍ଥା କରୁଛନ୍ତି । ନଣ୍ଡବାଳରେ କେତେ ପିଲା ଖେଳରେ ମାତିଛନ୍ତି । ହଳିଆ ମୁଣ୍ଡରେ ଘାସ ଗୋଛା, ହାତରେ ପାଞ୍ଚଣ ଧରି ଗୀତ ଗାଇ ବଳଦ ଅଡ଼ାଉଛି । ପ୍ରବାସୀ ଭିକାରୀ ଆଶ୍ରା ପାଇଁ ଗାଆଁରେ ପଶି ଭାଗବତ ଘର ପିଣ୍ଡାରେ ବସୁଛି !

ଯେତିକିବେଳେ ଗୋପବନ୍ଧୁଙ୍କର ମନରେ କ'ଣ ଆସେ ତାହା ବନ୍ଦୀଶାଳାରେ ଅସମ୍ଭବ ମଣି ବ୍ୟଥିତ ହୋଇଛନ୍ତି ।

ପଡ଼ଯାଏ ହେମ ଘରକଥା ମନେ
ଅତିଥି ଆଦର, ଦେବ ଅର୍ଚ୍ଚନା,
କାରାଗାର କକ୍ଷେ କପାଇଁ ଏ କକ୍ଷେ
ଆଣିବ ଆଜ ସେ ବୃଥା ଭାବନା ।

ସେଲକର୍କ ମଧ୍ୟ ସ୍ୱଦେଶର ସ୍ମୃତି ଉଦ୍‌ବୋଧନ କରି ଶେଷରେ ତାହା ଅକାରଣ ଭାଳେଣି ବୋଲି ମନେ କରିଛନ୍ତି । କବି ମଧୁସୂଦନ ରାଓଙ୍କର ଅନୁବାଦରେ ତାହା ସ୍ପଷ୍ଟ ।

"ବୃଥା ଭାବନା ଆଜ କରିବ ନାହିଁ,
ଭାବନାରେ ଆନନ୍ଦ ମିଳଇ କାହିଁ ।"

ମଳୟ ପବନ ପ୍ରଥମେ ବାହାରିଥିବ ମଞ୍ଜୁଷାରୁ—ମଞ୍ଜୁଷା ମୁକୁଟ ମହେନ୍ଦ୍ର ଶୈଳପୁଷ୍ପ ଭେଟି ଦେଇଥିବ—ସେଠାରୁ ଆସିଥିବ ଗଞ୍ଜାମର "ଉଦ୍ୟାନଖଣ୍ଡ"କୁ ଯେଉଁଠି 'ଆମ୍ବ, କଦଳୀ, ଲେମ୍ବୁ, ନାରିକେଳ, ପଣସ, ସପୁରି, ଖଜୁରି, ତାଳ' ଉମହାର ପାଇ ବଧିରକ୍ଷା ପାଇଁ ଛୁଇଁଦେଇ ଚାଲି ଆସିଥିବ ।

ତା'ପରେ ଋଷିକୁଲ୍ୟା—

କୃଶୋଦରୀ ଋଷିକୁଲ୍ୟାକୁ ସ୍ପର୍ଶ କରି ପବନ ତାର ତୀରବାସୀ ଲୋକଙ୍କର ଚମ୍ପୁଗୀତ ଶୁଣିଥିବ ।

ସେଠାରୁ ଚିଲିକା—

ଚିଲିକାରୁ ଶ୍ରୀକ୍ଷେତ୍ର—ମହୋଦଧି ଜଳରେ ସ୍ନାନ କରି ଆରାମ ହୋଇଥିବ । ବାଲିକୁଦ ତାଳ ଲଙ୍କାଆମ୍ବ ଗୁମ୍ଫାପନ୍ତାରେ ବିହାର କରି ଶ୍ରୀମନ୍ଦିରର ଦକ୍ଷିଣଦ୍ୱାରରେ ନୀଳାଦ୍ରିନାଥଙ୍କ ପୟୁରରେ ପ୍ରଣତି ବାଢ଼ିଥିବ । ଶ୍ରୀପଦ ତୁଳସୀ ଶିରରେ ସ୍ପର୍ଶ କରି ସେଠାରୁ ବିଦାୟ ନେବା ସମୟରେ ନୀଳଚକ୍ରର ନେତ ଉଡ଼ାଇ ଦେଇଥିବ । ତାଙ୍କରି ସଂସ୍ପର୍ଶରେ ଆସିଥିବାରୁ ପବନ ତାଙ୍କ କଥା କହିବାକୁ ସମର୍ଥ ହେବ ଭାବି କବିଙ୍କର ଆତୁର ପ୍ରଶ୍ନ ଫୁଟି ଉଠିଛି—

"ପୁଣ୍ୟ ଗନ୍ଧବହ କର ଅନୁଗ୍ରହ
କହ ପ୍ରିୟ ପୁରୀ ସୁସମାଚାର,
କନ୍ଦର ନିବାସୀ, ଦ୍ରୁଞ୍ଚି ବ୍ରହ୍ମରାଶି
କରୁଛନ୍ତି ଏବେ କେଉଁ 'ବିଚାର'
ଗମ୍ଭୀରାରୁ କିବା ଶ୍ରୀମୁଖ ଆଦେଶ
ପଠାଇ ଅଛନ୍ତି ଦେବ ମୋ ପାଇଁ
କହ ନବେଗ ବାୟୁ, କ୍ଷୀଣ ହୁଏ ଆୟୁ
ରହିଥିବି କେତେ କାଳ ଅନାଇ ।"

ଜଗନ୍ନାଥଙ୍କ ଶ୍ରୀମୁଖ ଆଦେଶ ପାଇଁ ଆତୁରତା ପ୍ରକାଶ କରିବା ପରେ ଗୋପବନ୍ଧୁ ପୁରୀବାସୀମାନଙ୍କ ସମ୍ବାଦ ପୃଚ୍ଛିଛନ୍ତି—କଅଣ କରୁଛନ୍ତି, ପୁରୀରୁ ବିଦାୟ ନେବା ସମୟରେ ସେମାନଙ୍କୁ ସ୍ୱରାଜ୍ୟ କଥା କହି ଆସିଥିଲେ—ସେମାନେ କଥା ରଖିଛନ୍ତି କି ?

"ନୀଳାଚଳବାସୀ ମୋତେ କି ଆଶ୍ୱାସି
କହନ୍ତି କିଛି ଶୁଭ ବାରତା ?
ସାଧାରଣ ସନ୍ତ ସେବକ ମହନ୍ତ
ପକାନ୍ତି କି କେବେ ସ୍ୱରାଜ୍ୟ କଥା ?"

ଦର୍ଶନ ସାରି ଶ୍ରୀକ୍ଷେତ୍ର ପ୍ରଦକ୍ଷିଣ କରି ପବନ ଉତ୍ତରାୟଣରେ ଆସିଥିବ । ପଥରେ ସତ୍ୟବାଦୀ ତରୁଲତାମାନେ ଟିକିଏ ଅଟକାଇଥିବେ । କୋକିଳମାନେ ସ୍ୱାଗତ ସ୍ୱର ତୋଳିଥିବେ । ସତ୍ୟବାଦୀ ତ ଗୋପବନ୍ଧୁଙ୍କର ସାଧନାର କ୍ଷେତ୍ର । ସେଇଠି ସମାଜର ପ୍ରତିଷ୍ଠାନ, ସାପ୍ତାହିକ ସମାଜ, ମାସିକ-ସତ୍ୟବାଦୀର ଜନ୍ମ । ସେଠି ତାଙ୍କର ବନ ବିଦ୍ୟାଳୟ । ସାକ୍ଷୀ ଗୋପାଳଙ୍କର ଉପାସକ ସେ । ତେଣୁ ସତ୍ୟବାଦୀର ସମ୍ବାଦ ପାଇବାକୁ ସେ ବ୍ୟାକୁଳ । କାଳିଦାସ ଶିବଭକ୍ତ—ତାଙ୍କର ମେଘଦୂତ ମହାକାଳ ଶିବ ମନ୍ଦିରରେ ପହଞ୍ଚି ମନ୍ଦ୍ରନାଦ ଛଳରେ କପର୍ଦ୍ଦ ପଟହଧ୍ୱନି କରିଥିଲା ତାହା ଅତ୍ୟନ୍ତ ବୈଶିଷ୍ଟ୍ୟପୂର୍ଣ୍ଣ—

ଅପ୍ୟନସ୍ମିନ୍ ଜଳଧର ମହାକାଳ ମାସାଦ୍ୟକାଳେ
ସ୍ଥାତବ୍ୟଂ ନୟନ ବିଷୟଂ ଯାବଦତ୍ୟେତିଭାନୁଃ ।
କୁର୍ବନ୍ ସନ୍ଧ୍ୟାବଲି ପଟହତାଂ ଶୂଳିନଃ ଶ୍ଳାଘ୍ୟମାସ୍ଥା—
ମାମନ୍ଦ୍ରାଣାଂ ଫଳମବିକଳଂ ଲପ୍ସ୍ୟସେ ଗର୍ଜିତାନାମ୍ ॥

ତାହାର ଅନୁବାଦ—

ମହାକାଳ ଶିବ ପୁଣ୍ୟଭୂମେ
ଅନ୍ୟ ସମୟେ ମିଳିଲେ ତୁମେ,
ଜଳଦ ଅହେ,
କହୁଛି ବୁଝାଇ,
ରହିବ ଅନାଇ
କିରଣମାଳୀର ଅସ୍ତ ଯାଏ ।
ସନ୍ଧ୍ୟାରେ ଦେଖି ଆଳତି ସମୟ
ବଜାଇବ ତୁମ ଦୂଜାର ପଟହ
ମନ୍ଦ୍ର ଘୋଷେ,
ଆଶୁତୋଷ ତେବେ
ଆଶୁଫଳ ଦେବେ,
ପରମ ତୋଷେ ।"

ଗୋପବନ୍ଧୁଙ୍କର ମନୟୂ ଦୂତ ସାକ୍ଷୀଗୋପାଳଙ୍କର ଉପରେ ସରାଗ ସେବା କରିଥିବ, ସେବାର ଫଳ ସାଙ୍ଗେ ସାଙ୍ଗେ ପାଇବାର ସଂକେତ ସ୍ୱରୂପ ହିଅଁଙ୍କ ଶ୍ରୀଅଙ୍ଗ ଫୁଲ ଖସିପଡ଼ି ଥିବ । ସେଇ କମନୀୟ ଭାବ ଉପରେ କାବ୍ୟିକ ଶୈଳୀରେ ରୂପାୟିତ, ଲକ୍ଷ୍ୟ କରିବାର କଥା ।

"ଦେଉଳ ପ୍ରବେଶି ଗୋପିନାଥ ବଂଶୀ
ରନ୍ଧ୍ରେ ରଚିଥିବ ଅସ୍ଫୁଟ ସ୍ୱନ,
ରାଧିକା ଅଞ୍ଚଳ ଉଡ଼ାଇ ଚଞ୍ଚଳ
କରିଥିବ ଜାଣି ବେନିଙ୍କ ମନ !

ହସି ଉଠିଥିବେ ଯୁଗଳ ମୂରତି
ଖସିପଡ଼ିଥିବ ଶ୍ରୀଅଙ୍ଗୁ ଫୁଲ
ନବଘନ ଶରେ ଆହା କି ରୁଚିରେ
ହଲୁଥିବ ବାଙ୍କ ମୟୂର ଚୂଳ ।”

ସତ୍ୟବାଦୀ ଗୋପିନାଥଙ୍କର ଗୁପ୍ତବିହାର ସ୍ଥଳ—ସେ ସ୍ଥାନର ପଟାନ୍ତର ନାହିଁ । କବିଙ୍କର ପ୍ରିୟ ଆଶ୍ରମ—ତେଣୁ ସେ ପଚାରିଛନ୍ତି ।

“ମୋ ସଖା ସୋଦର ପ୍ରିୟ ଦେଶକର
ଅନ୍ତେବାସୀ ବନ୍ଧୁ ଚେଲାଶୀ ଗଣ
ଥିବ ଟି କୁଶଳେ ବିରହ ବିକଳେ
ବିବଶ କରନ୍ତୁ ନାହିଁ ବଦନ ?
ସତ୍ୟବାଦୀ କୁଞ୍ଜ କୁସୁମ ପୁଞ୍ଜ
ଜାଣିଥିଲେ ଏଥି ତବ ସଞ୍ଚାର
ଅବଶ୍ୟ ମୋ ପାଇଁ ଥିବେ ପଠିଆଇ
ମୃଦୁ ମଧୁମୟ ଗନ୍ଧ ସମ୍ଭାର ॥”

ସେଠାରୁ ମଳୟ ପହଞ୍ଚି ଆସିଥିବ ଭୁବନେଶ୍ୱରକୁ । ସେଠି ଲକ୍ଷ୍ୟ କରିଥିବ ଓଡ଼ିଶାର ଶିଳ୍ପକଳା କିପରି କାଳମୁଖରେ ଗ୍ରସ୍ତ । କେତେ ଚମତ୍କାର ମନ୍ଦିର ମାଟିରେ ମିଶିଯାଇଛି, ଖଣ୍ଡ ଖଣ୍ଡ ପଥର ଖସି ପଡ଼ି ପଥରଗଦା ହୋଇଛି—କେଉଁ ପାଷାଣ ପ୍ରତିମାର ମୁଖ ଭାଙ୍ଗି ଯାଇଛି । ହାତ ତୁଟି ପଡ଼ିଛି, ବାଟରେ ବଣ ପାଟରେ ପଡ଼ି ଗୋଡ଼ପଥର ହୋଇଛି । କେଉଁଠି ବଳମୂଳରେ ଅପୂର୍ବ ମୂର୍ତ୍ତି ମାଟିତଳେ ବାହାରୁଛି—ରାଜ ନଅର ଭାଙ୍ଗି ପଡ଼ୁଛି, ପାଚେରିର ଭଗ୍ନାବଶେଷ ଦେଖାଯାଉଛି, କେଉଁଠି ତଡ଼ାଗ, କେଉଁଠି କୂପ ଲତାଗୁଳ୍ମରେ ଆଚ୍ଛନ୍ନ । କେଉଁଠି କେତେ ଶିବଲିଙ୍ଗ ପଡ଼ିଛି—କେବଳ ସେହି ଧ୍ୱଂସର ଅବଶେଷ ଭିତରେ ଉଭାହୋଇଛି ଲିଙ୍ଗରାଜ ମନ୍ଦିର, ଦେଖୁ ଦେଖୁ କେବଳ ପ୍ରକୃତି ଚାହିଁଥିବ ।

ସେଠି ବେଶି ସମୟ ରହିପାରି ନଥିବ । କବି ମଧ୍ୟ ତାହାହିଁ ଭାବି ପବନକୁ କହିଛନ୍ତି—

"କେବଣି ବେଳ ତନ୍ଦ୍ରେ ନଥିବ ତ ରନ୍ଧ୍ର
କଏସେ ରନ୍ଧ୍ରବ ହୃଦୟ ବନ୍ଧ ?
ଯେ ବିଷାଦମୟ ଭଗ୍ନ ଦୃଶ୍ୟଚୟ
ଦେଖି କାହା ଛାତି ପାରିବ ସହି ?"

ଦିପହଣ୍ଡ ଯାଇଥିବ ନଥିବ ତା'ପରେ ଖଣ୍ଡଗିରି—ଯାର ଅଙ୍କରେ କଳିଙ୍ଗର ଗୌରବ ଲେଖା ଅଙ୍କିତ ହୋଇଛି । ନୀରବରେ ଓଡ଼ିଶାର ଇତିହାସ ବ୍ୟାଖ୍ୟାନ କରୁଛି । ପ୍ରଥମ ଯୌବନରେ ଗୋପବନ୍ଧୁ ଖଣ୍ଡଗିରି ଦେଖି ମୁଗ୍ଧ ହୋଇଥିଲେ ଏବଂ "ଖଣ୍ଡଗିରି ଶିଖରେ" କବିତା ଲେଖି ଦେଶରେ ଆଶାର ବାଣୀ ଶୁଣାଇଥିଲେ । ସେତେବେଳେ ଅହିଂସା ପରମଧର୍ମୀ ଅଶୋକଙ୍କର ବୋଲ ଲେଖୁଥିଲେ—

"ବୌଦ୍ଧ ମନ୍ତ୍ରାବଳି ଆଜି ଅମର ଅକ୍ଷରେ
ଅଶୋକ ଆଦେଶେ ରାଜେ ଯା ଶିଳାବକ୍ଷରେ ।"

ବର୍ତ୍ତମାନ ଚେବନକୁ କହୁଛନ୍ତି—"ବୀର ଖାରବେଳ ଖାରବେଳ ।" ସେହି ଖଣ୍ଡଗିରିର ଦେହରେ ମୂଳରୁ ଚୂଳ ଯାଏ ପ୍ରାସାଦ, ପ୍ରାଙ୍ଗଣ, ଗୁମ୍ଫା ଦେଉଳ ପୂରି ରହିଛି । ମାତ୍ର ସେତେବେଳେ ଯେପରି ଶ୍ରମଣ, ସନ୍ନ୍ୟାସୀ ସେଠି ଗୁମ୍ଫାରେ ବାସ କରୁଥିଲେ, ଧର୍ମବାଣୀ ଶୁଣାଉ ଥିଲେ ଆଜି ତାହା ସ୍ୱପ୍ନ; କେବଳ ସେହି ଗୌରବର ସ୍ମୃତି ଅମ୍ଳାନ ହୋଇ ରହିଛି ।"

ପବନ ସେଠି ପହଞ୍ଚି ଖଣ୍ଡଗିରିକୁ ବନ୍ଦନା ଜଣାଇଥିବେ । ଖଣ୍ଡଗିରିର ବନ, ଉପତ୍ୟକା, ଗୁମ୍ଫା ଗର୍ଭରେ ସ୍ୱଚ୍ଛନ୍ଦରେ ସଞ୍ଚାର କରିଥିବେ—ତାର ସ୍ପର୍ଶରେ ସନସନ ସ୍ୱନ ତୋଳି ଗିରି, ଗୁମ୍ଫା, କନ୍ଦର ତାଙ୍କ ସ୍ୱରରେ ସ୍ୱର ମିଳାଇ ଗୌରବ କାହାଣୀ କହୁଥିବେ । ତେଣୁ କବି ଅନୁରୋଧ କରିଛନ୍ତି ।

"ଏ ମୋ କାରା ଦ୍ୱାରେ ଲାଗିଯାଅ ବାରେ
ଯେ ଦୂର ସଂଗୀତ ଶୁଭୁ ମୋ କାନେ

କର୍ଣ୍ଣି ଉଠୁ ମୋର ହୃଦବୀଣା ତାର
　　　　ମୋ ଅନ୍ତର ଧ୍ୱନି ମିଶୁ ତୋର ତାନେ ।
କି ଦେଖିଲ ଆଜ ହେ ବସନ୍ତ ବାୟୁ
　　　　କହ ବେଗେ କର ନାହିଁ ଛଳନା,
ତୁମ୍ଭେ କି ନ ଜାଣ ନିର୍ବାସିତ ପ୍ରାଣ
　　　　ସ୍ୱଦେଶ ସନ୍ଦେଶେ ପାଏ ସାନ୍ତ୍ୱନା ।

ସେଠାରୁ ଆସିବା . ବାଟରେ ପଡ଼ିବ କଟକ, ମହାନଦୀ ଓ ଐତିହାସିକ ବାରବାଟି । ବାରବାଟିର ପୂର୍ବ ଗୌରବ ଆଉ ନାହିଁ । ଉତ୍କଳୀୟ ବୀରମାନଙ୍କର ବିହାର ପ୍ରାଙ୍ଗଣ ବର୍ତ୍ତମାନ ଶୌର୍ଯ୍ୟ-ସମାଧିରେ ପରିଣତ ହୋଇଛି । ନବତଳ ପ୍ରାସାଦ ମାଟିର ସ୍ତୂପ ଭଜଛି । ଅତୀତରେ ସେଇ ନବତଳ ହର୍ମ୍ୟରୁ ରାଜା ଯେତେବେଳେ ଯୁଦ୍ଧଯାତ୍ରା କରୁଥିଲେ ରାଣୀ ବାଷ୍ପାକୁଳିତ ନେତ୍ରରେ ବିଦାୟ ଦେଉଥିଲେ, ପୁଣି ଯେତେବେଳେ ବିଜୟୀ ହୋଇ ଫେରି ଆସୁଥିଲେ ଅର୍ଘ୍ୟଥାଳି ନେଇ ବନ୍ଦାପନା କରୁଥିଲେ । ବିଦାୟ କାଳରେ ରାଣୀଙ୍କର ଚିତ୍ର ଅତ୍ୟନ୍ତ ବୈଶିଷ୍ଟ୍ୟପୂର୍ଣ୍ଣ ।

ଭାରବିଙ୍କର କିରାତାର୍ଜୁନୀୟ ମହାକାବ୍ୟରେ ଅର୍ଜୁନ ମେଲାଣି ନେଲାବେଳେ ଦ୍ରୌପଦୀଙ୍କର ଅଭିଳାଷ ପ୍ରକାଶିତ ହେଲେ ମଙ୍ଗଳବିଧାନ ଉପରେ ଲୋଚନକୁ ମୀଳିତ କଲେ ନାହିଁ ।

"ତୁଷାର ଲେଖାଃକୁଳିତୋଃପଳାଭେଃ
ପର୍ଯ୍ୟଶ୍ରୁଣୀ ମଙ୍ଗଳ ଭଙ୍ଗ ଭୀରୁଃ ।
ଅଗୂଢ଼ ଭାବାଃପି ବିଲୋକନେ ସା
ନ ଲୋଚନେ ମୀଳୟିତୁ ବିଷେହେ ।"

ଯୁଦ୍ଧଯାତ୍ରୀ ବୀରଙ୍କର ବିଦାୟବେଳେ ଅଶ୍ରୁ ପକାଇବା ଅଶୁଭ ଲକ୍ଷଣ, ତେଣୁ ଯେତେବେଳେ ରାଣୀଙ୍କର ସ୍ନେହ-ସୁଧାବିନ୍ଦୁ ନେତ୍ର-ଯୁଗ୍ମରେ ପ୍ରସନ୍ନ ମୁଖ-ଇନ୍ଦୁକୁ ମଣ୍ଡିତ କଲା ପବନ ଶୀତଳ ସ୍ପର୍ଶରେ ବଞ୍ଚ ମୁକ୍ତାଫଳ ଅର୍ଥାତ୍ ଅଶ୍ରୁବିନ୍ଦୁକୁ ତଳେ ପକାଇଲ ନାହିଁ ।

"ଥିଲା ଧନ ଯେବେ ନବଗଳ ହର୍ମ୍ୟ
ଯୁଦ୍ଧଯାତ୍ରୀ ରାଜା ମେଲଣି କାଳେ,
ଆଣି ନବୀ ନୀର ସିଞ୍ଚିଲ ସମୀର
ସ୍ୱେଦ ବନ୍ଦୁ ସିକ୍ତ ମହାବୀ ଭାଳେ ।
ସ୍ନେହ ସୁଧା ବନ୍ଦୁ ଯୋଦ୍ଧ ମୁଖ ଇନ୍ଦୁ
ମଣ୍ଡିଲ ପ୍ରସନ୍ନ ନେତ୍ର ଯୁଗଳେ,
ବାନ୍ଧି ସୁଶୀତଳେ ଧରଲ କୌଶଳେ
ନ ପକାଇ ମୁକ୍ତା ଫଳକୁ ତଳେ ।"

ଗୋପବନ୍ଧୁ ଭାରତୀଙ୍କ ଭାବରେ ପ୍ରଭାବିତ ହୋଇଥିଲେ ସୁଦ୍ଧା ସ୍ୱଜାତ୍ୟତାରେ ତାଙ୍କୁ ମନୋଜ୍ଞତର କରିପାରନ୍ତି ।

ସେଇ ବାରବାଟି ଆଜ ଲଗ୍ନ । ନବଗଳ ପ୍ରାସାଦ ନାହିଁ— ଉଚ୍ଚ ମାଟିଗଦା ରୁକ୍ଷରକ୍ତପଦା ହୋଇଛି ପ୍ରାଚୀନ ଜାତିର ଶକ୍ତି ଶ୍ମଶାନ । ସେ ସମସ୍ତ ଦେଖି ପବନ ସମ୍ମାନ ଦେଖାଇ ଥିବ । ମୃତ୍ତିକା ସ୍ତୂପ ଓ ଶ୍ୟାମ ଶସ୍ୟକୁ ଅଶ୍ରୁପୂର୍ଣ୍ଣ ନୟନରେ ଚୁମ୍ବନ କରିଥିବ । କବି ପବନର ମହତ୍ତ୍ୱ ବୁଝି ଲେଖିଛନ୍ତି—

"ମହତ ନୟନେ ସେ ମହତ ସ୍ଥାନେ
ପଡ଼ିଥିଲେ କ୍ଷୁଦ୍ର ଧୂଳି କଣିକା,
ଭକତି ଆଦର କରେ ଯେ ତାହାର
ସେ ହିଁଏ ମହତ ହୃଦୟ-ଶିକ୍ଷା ।"

ବାରବାଟିରୁ ଗଡ଼ଜାତ ଅଞ୍ଚଳ ପ୍ରାକୃତିକ ଓଡ଼ିଶାରୁ ବାହାର, ଅନ୍ଧାରମୂଳକ ନିଘଞ୍ଚ ଅରଣ୍ୟରେ ଶାଳ ଦେବଦାରୁ ବନସ୍ପତି ଭରି ମାଳତୀ ମାଧବୀ ଲତା ତା ଦେହରେ ନିବିଡ଼ ଭାବରେ ମାଡ଼ିଛି ।

"ପ୍ରସରେ ସ୍ୱଚ୍ଛନ୍ଦେ ଯହିଁ ଗିରିପରେ
ନିରନ୍ତର ସ୍ୱଚ୍ଛ ନିର୍ଝର ଧାର

ଶୁଭ୍ର ଜ୍ୟୋତ୍ସ୍ନା ନଦୀ ବହେ ନିରବଧି
ବନକଣ୍ଠେ ଯଥା ହୀରକ ହାର ।"

କାଳିଦାସଙ୍କ ଉପମା କବି ତାର କାବ୍ୟରେ ବହୁ ବ୍ୟବହୃତ ହୋଇଛି—

"ମନ୍ଦାକିନୀ ଭାତି ନଗୋପକଣ୍ଠେ
ମୁକ୍ତାବଳୀ କଣ୍ଠଗତେବ ଭୂମେଃ ।।"
—୧୩ଶ ସର୍ଗ ରଘୁବଂଶ

ଶାଖାରେ ଶାଖାରେ ଅସଂଖ୍ୟ ଫୁଲ୍, । ପିକ, ଶୁକ, ସାରି ସ୍ୱର ତାଳୁଛନ୍ତି ଜଳରେ ଚକ୍ରବାକ, ହଂସ, କାରଣ୍ଡକ ମଧ୍ୟ କରି ଖେଳୁଛନ୍ତି, ପଦ୍ମ ଫୁଟିଛି—ଭ୍ରମର ଗୁଞ୍ଜନ ତୋଳି ଘୂରୁଛନ୍ତି । ମୃଗ, ହରିଣ ଖୀର ବନରେ ବିହାର କରୁଛନ୍ତି । ଘଞ୍ଚ ଅରଣ୍ୟ ହେଲେ ଚଡ଼ଜାତ ଅଞ୍ଚଳ ଅନ୍ଧାର ମୂଳକ ନୁହେ ।

ସେ ଅଞ୍ଚଳରେ ପ୍ରଜାଙ୍କର ଜୀବନ ଯାହା ସେ ରାଜ୍ୟକୁ କେବେ ଅନ୍ଧାର ମୂଳକ କୁହାଯାଇଛି ।

"ସେ ରାଇଜେ ପ୍ରଜା ନିତ ବଳି ଭୋଜା
ଦେଇ ଅତି ଭୟେ କାଟନ୍ତି ଦିନ,
କଥା କହିବାର ନାହିଁ ଅଧିକାର
ଯହିଁ ରାଜ ବଂଶେ କ୍ଷୀଣ ପୁଣ୍ୟ ବଂଶ
ଦ୍ୱିଜନ ନାହିଁ କାହିଁ ଭାଗ୍ୟ ଲକ୍ଷଣ
ତଥାପି-ପ୍ରପଞ୍ଚ ମଦେ ମତ୍ତ ସର୍ବେ
ନ ଦେଖନ୍ତି ଥରେ ନିଜର ରକ୍ଷଣ ।"

ଅନ୍ଧାରମୂଳକର ଶାସନ ଲକ୍ଷ୍ୟ କରି କବି ଯଥାର୍ଥରେ କହିଛନ୍ତି

"ନଦୀନଦ ଶଇଲେ ଦାବାନଳ ଜଳେ
ପ୍ରଜାପୁରେ ଜଳେ ବରଷସାରା

ଛାଡ଼ ପଶୁ ବନ ଯାଏ ଆନ ସ୍ଥାନ
ପ୍ରଜା ବାପୁଡ଼ାର କାହିଁ ସେ ଗତି ?"

ଗୋପବନ୍ଧୁ ସମୀକ୍ଷା କରି ବିଚାର କରିଛନ୍ତି—

ଶସ୍ୟ ଆଭରଣେ ଯହିଁ ଅନୁକ୍ଷଣେ
ହସେ ସଦା ମଞ୍ଜୁ ସ୍ନିଗ୍ଧ ଶ୍ୟାମଳା
ମାନବ ମାଧୁରୀ ସରଳ ଚାତୁରୀ
ପ୍ରକୃତି ସହଜ ଛାଞ୍ଚରେ ଢାଳା,
ଶୁଭ ଶୋଭାମୟ କମଳା ଆଳୟ
ପ୍ରକୃତି ପ୍ରକାଶ ଅତି ବିଚିତ୍ର,
ଶାସକ ସ୍ୱଭାବ ଛନା ଯହିଁ ସର୍ବ
ସ୍ୱରଗ ସୁନ୍ଦର ଭାବେ ପବିତ୍ର ।

ରାଜାମାନଙ୍କର ମନମୁଖୀ ଶାସନରେ ପ୍ରଜାମାନେ ଅତ୍ୟାଚାରିତ ଓ ଉତ୍ପୀଡ଼ିତ । ଗୋପବନ୍ଧୁ ତହିଁରେ ବ୍ୟଥିତ ହୋଇ ଅତ୍ୟାଚାରର ସମ୍ବାଦମାନ ତାଙ୍କ ସମାଜରେ ପ୍ରକାଶ କରୁଥିଲେ ଓ ଗଡ଼ଜାତ ରାଜାମାନଙ୍କର ଗୁପ୍ତଗତ ପଦାରେ ପକାଉଥିଲେ । ତେଣୁ କବି ପବନକୁ ପଚାରୁଛନ୍ତି—

"ଅନ୍ଧାର ମୂଲକ ପ୍ରଜା ସୁଖ ଦୁଃଖ
କି ଦେଖି ଆସିଛ କହ ପବନ,
ସହି ନାନା ଦଣ୍ଡ ଦିଅନ୍ତି କି ଚଣ୍ଡ
ଆସିଅଛୁ କିବା ନବ ଚେତନ ?
ସହି ଖରା ବର୍ଷା ଦୁଃଖେ ପଡ଼ି ଚଷା
ଆପଣା କ୍ଷେତ୍ରରେ କରେ କି ଚାଷ ?
ନୋହି ଉପସ୍ଥିତ ଯେନ ଦାବି ସୂତ
ଖାଏ କି ସ୍ୱଚ୍ଛନ୍ଦେ ଅନ୍ନ ଗରାସ ?"

ନିଜ କାର୍ଯ୍ୟରେ କାହାକୁ ନିଯୁକ୍ତ କଲେ ତାର ସୁଖ ସୁବିଧା ଦେଖିବାକୁ ହୁଏ । କାଳିଦାସଙ୍କ ଯକ୍ଷ ମେଘକୁ ଦୂତ କରି ପଠାଇଥିଲା,

ପଥରେ ଯାଉଁଯାଉଁ କ୍ଷୀଣଜଳ ହୋଇଗଲେ ନଦୀରୁ ଜଳ ଆହରଣ କରିବାକୁ ଅନୁରୋଧ କରିଥିଲ ।

"ତସ୍ୟା ସ୍ତିକ୍ତୈର୍ବନ ଗଜମଦୈର୍ବାସିତବାନ୍ତ ବୃଷ୍ଟି—
ର୍ଜମ୍ବୁକୁଞ୍ଜ ପ୍ରତିହତରୟଂ ତୋୟମାଦାୟ ଗଚ୍ଛେଃ ।"

ତାହାର ଅନୁବାଦ—

"ବନଗଜ କେଳି ମଦ ଗନ୍ଧିତ
ତା' ପରବାହ
ଜଂବୁ କୁଞ୍ଜେ ରହିତ ଥିର,
ବରଷଣେ ତୁମେ କ୍ଷୀଣ ହୋଇଥିବ
ଦେହ-ବାରିବାହ
ପିଇବ ତାହାର ମଧୁର ନୀର ।"

ସେହିପରି ମଳୟବାୟୁ ତାର ଗନ୍ତପଥରେ ଦାବାଗ୍ନି ସ୍ପର୍ଶରେ ଉତ୍ତପ୍ତ ହୋଇ ଉଠିଲେ ମହାନଦୀର ଜଳରେ ଜ୍ୱାଳା ଦୂରକରି ସୁଶୀତଳ ହେବାକୁ ବନ୍ଦୀ କବି ଅନୁରୋଧ ଜଣାଇଛନ୍ତି—

"ଭ୍ରମି ବହୁ ଦୂର        ବିଷମ ବନ୍ଧୁର
ଫୁଟି ଉଠିଥିବ ପଥ ଶରମେ,
ଦାବାନଳ ତାପ        ଅସହ୍ୟ ଅମାପ
ଭେଦିଥିବ ଯେବେ ପୁଣି ମରମେ ।
ଆତୁର ଅଧୀରେ        ମହାନଦୀ ନୀରେ
ପଶିଯିବ ଯାଇ ସନ୍ତାପ ନାଶେ,
ଗିରି-ନନ୍ଦିନୀ        ତରଙ୍ଗ ହାସିନୀ
ଅଙ୍ଗ ଫୁଲିଥିବ ନବ ଉଲ୍ଲାସେ ।"

ସେଠାରୁ ପଶ୍ଚିମ ମୁଖରେ ଆସି ହୀରାଖଣ୍ଡରେ ପହଞ୍ଚିବ । ମହାନଦୀ ବକ୍ଷରେ ରମଣୀୟ ଦ୍ୱୀପ—ତାହାର ହୀର ହେମ ରାଜ୍ୟର ବିପଣୀ

ମଣ୍ଡନ କରୁଥିଲା, ଆଜି ଆଉ ତାହା ନାହିଁ, ଧୀବର କୁମାରୀ ସେଠି ବସି ଲହଡ଼ି ଗଣୁଛି । ସମ୍ବଲପୁରରେ ଭୟଙ୍କର ଗରମ ହୁଏ । ମଳୟ ପବନର ସ୍ପର୍ଶ ପାଇଲାକ୍ଷଣି ସମ୍ବଲପୁର ନରନାରୀ ଆଶ୍ୱସ୍ତ ହୋଇଥିବେ । ସେଇ ସମ୍ବଲପୁର ଗୋପବନ୍ଧୁଙ୍କର ଅତ୍ୟନ୍ତ ପ୍ରିୟ । ସେଠାରେ ସଗ୍ରାମୀମାନେ ଯେପରି ଭାବରେ ଓଡ଼ିଆ ଭାଷା ରକ୍ଷା କରିଥିଲେ, ତାହା ନିଶ୍ଚିତ ଭାବରେ ଐତିହାସିକ । ସେଠାର ନାରୀମାନେ ସ୍ୱଦେଶୀ ବେଶଭୂଷାରେ ମଣ୍ଡିତା ହୋଇ ବିଶେଷ ଭାବରେ ରମଣୀୟା । ସେଠାରେ ପୁରୁଷ ପାର୍ବତ୍ୟ ସମୀର, ମହାନଦୀ ନୀର ସେବାକରି ହୃଷ୍ଟପୁଷ୍ଟ । ସେମାନେ ସ୍ୱାଧୀନତା ସମରରେ ପ୍ରକୃତ ଯୋଦ୍ଧା ହୋଇପାରିବେ ବୋଲି ଗୋପବନ୍ଧୁଙ୍କର ବିଶ୍ୱାସ । ତେଣୁ ବ୍ୟଗ୍ରହୋଇ ପୁଚ୍ଛନ୍ତି—

"ସମ୍ବଲପୁରର ଶୁଭ ସମାଚାର
ଶୁଣାଅ ସଦୟେ ସମୀର ବାରେ,
ଉତ୍କଳ ଜାହ୍ନବୀ ନୀରୁ ମହାନଦୀ
ପୁଣ୍ୟ ଅମ୍ବୁକଣା ଆଣ ମୋ ଦ୍ୱାରେ ।
ତାପିତ ମୋ ହୃଦ ଦିଅ ଶାନ୍ତ ମୁଦ
ଆତ୍ମୀୟ ସ୍ୱଜନ ବାରତା କହ ।
ପରଶ୍ୱାସେ ବହ ପୁଣ୍ୟ ଗନ୍ଧ ବହ,
ତେଣୁ ପଥ ଚାହିଁ ଅଛୁ ମୁଁ ରହ ।"

ଏହି ବସନ୍ତ ପବନ ସାରା ଉତ୍କଳ ଦେଶରେ ପରିଭ୍ରମଣ କରି ବାହାରେ ବୃକ୍ଷ ପତ୍ରମାନ ହିଲ୍ଲୋଳିତ କରୁଛି, କିନ୍ତୁ ତାଙ୍କ ପ୍ରକୋଷ୍ଠକୁ ଆସି ସ୍ପର୍ଶ ମାଧୁରୀ ଦେଉନାହିଁ । ଏ ଭେଦାଭେଦ ସିନା ମଣିଷ ସମାଜରେ, ପ୍ରକୃତି ରାଜ୍ୟରେ ତ ନାହିଁ ।

"ନରପତି ନର କରେ ଅବିଚାର
ପ୍ରକୃତି ସକଳେ ଦେଖେ ସମାନ,
ହେ ମଳୟାନିଳ ସୁଗନ୍ଧ ଶୀତଳ
ପ୍ରବାହେ ପରଶ ମୋ ଦଗ୍ଧ ପ୍ରାଣ ।

କରୁଛନ୍ତି କୀର୍ତ୍ତନ ସଦା ତବ ଗୁଣ
ନିଖିଳ ଜଗତ ଜୀବ ଜୀବନ,
ଅବହେଳେ ବେଳେ ଏଥି କାରଣେ
ଛୁଇଁଯାଅ ମତେ ମୁକ୍ତ ପବନ ।
ଆସିଅଛୁ ଭ୍ରମି କେତେ ପୁଣ୍ୟଧାମେ
ଲଗାଇ ଦିଅ ମୋ ଶିରେ ପ୍ରସାଦ,
ସେ ପୁଣ୍ୟ ପରଶେ ଘୁଞ୍ଚୁ ଅବସାଦ
ଅପସରୁ ହୃଦୁ ମୋହ ପ୍ରମାଦ ।"

ବିରହିଣୀ ପ୍ରିୟା ପାଇଁ କଳ୍ପିତ ଯକ୍ଷ ମେଘକୁ ଦୂତ କରି ପଠାଇ-ଥିଲା, ତାହାର ହୃଦୟରେ ଯେଉଁ ମିଳନର ସ୍ମୃତି ଓ ବିରହର ବେଦନା ଜାଗିଉଠିଥିଲା ତାର ସମାଧାନ ସ୍ୱୟଂ ସେ ପରିବେଷଣ କରିଥିଲା; ମାତ୍ର ଗୋପବନ୍ଧୁଙ୍କର ଭାବର ଧାରା ତା'ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସ୍ୱଦେଶ ବିଦେଶୀ ଶାସନରେ ଆକ୍ରାନ୍ତ, ସ୍ୱଦେଶର ଭାଇଭଉଣୀ ଅତ୍ୟାଚାରରେ ନିଷ୍ପେଷିତ ହୋଇ ଆତ୍ମସମ୍ମାନ ରକ୍ଷା କରି ପାରୁନାହାନ୍ତି । ତେଣୁ ବିଦେଶୀ ଶାସନ ବିରୁଦ୍ଧରେ ଲଢ଼େଇ କରି ଦେଶକୁ ସ୍ୱାଧୀନ ଓ ଦେଶର ନରନାରୀଙ୍କୁ ସ୍ୱାଧୀନ କରିବା ପାଇଁ ତାଙ୍କର ଅହିଂସ ଆନ୍ଦୋଳନ, ଯେଉଁଥି ପାଇଁ ସେ ବିଦେଶୀ ଶାସନର ମନମୁଖୀ ବିଚାରରେ କାରାଜୀବନ ବରଣକରି ନେଇଛନ୍ତି; ତାଙ୍କର ଅଭିମୁଖ୍ୟ ସମ୍ପୂର୍ଣ୍ଣ ପୃଥକ ତଥାପି କବି ଗୋପବନ୍ଧୁ "ବନ୍ଦୀର ସ୍ୱଦେଶ ଚିନ୍ତା"ର ସ୍ଥାନେ ସ୍ଥାନେ କାଳିଦାସଙ୍କ ଭାବସବୁ ଏଡ଼ିଦେଇ ପାରିନାହାନ୍ତି ।

ମେଘ ପ୍ରେୟସୀ, ନଦୀ ପ୍ରଣୟିନୀ । ତେଣୁ ଯକ୍ଷ ଗମ୍ଭୀରା ନଦୀକୁ ମେଘର ନାୟିକା ରୂପେ ଚିତ୍ରଣ କରିଛନ୍ତି—

ଗମ୍ଭୀରାୟାଃ ପୟସି ସରିତଶ୍ଚେତସୀବ ପ୍ରସନ୍ନେ
ଛାୟାତ୍ମାପି ପ୍ରକୃତିସୁଭଗୋ ଲପ୍ସ୍ୟତେ ତେ ପ୍ରବେଶମ୍ ।
ତସ୍ମାଦସ୍ୟାଃ କୁମୁଦବିଶଦାନ୍ୟର୍ହସି ତ୍ୱଂ ଧୈର୍ଯ୍ୟାତ୍
ମୋଘୀକର୍ତ୍ତୁଂ ଚଟୁଲ ଶଫରୋଦ୍ୱର୍ତ୍ତନ ପ୍ରେକ୍ଷିତାନି ॥

ତାହାର ଅନୁବାଦ—

ଗମ୍ଭୀର ନଈ ସ୍ୱଚ୍ଛ ସଲିଳେ
ହୃଦୟର ତଳେ,
କମ୍ର ତୁମର ଛାୟା ମୂରତି
ଧରିବ ଖରେ ।
କୁମୁଦ ଧବଳ ଚଞ୍ଚଳ ଶଫରୀ
ଲମ୍ଫ ଛଳେ,
ତର ତର ତର ଚାହାଣୀ ମୃଦୁଳ
କମ୍ପ ଭରେ ।
ତୁମେ ସେତେବେଳେ ଧୈର୍ଯ୍ୟ ବାନ୍ଧି
ପାରିବ ସାର
ଚାହାଣୀ ତାର
ବ୍ୟର୍ଥ ବିଫଳ କରିବ ନାହିଁ ।

ତସ୍ୟାଃ କିଞ୍ଚିତ୍ କରଧୃତମିବ ପ୍ରାପ୍ତବାନୀରଶାଖଂ
ହୃତ୍ୱା ନୀଳଂ ସଲିଳବସନଂ ମୁକ୍ତରୋଧୋ ନିତମ୍ବମ୍ ।
ପ୍ରସ୍ଥାନଂ ତେ କଥମପି ସଖେ ଲମ୍ବମାନସ୍ୟ ଭାବି
ଜ୍ଞାତାସ୍ୱାଦୋ ବିବୃତଜଘନାଂ କୋ ବିହାତୁଂ ସମର୍ଥଃ ।

ଅନୁବାଦ—

ତଟିନୀର ନୀଳ ନୀର ବସନ
ଛାଡ଼ି ଏକାବେଳେ ତୀର ଜଘନ
ଲାଗିଥିବ ନତ-ବେତସ କରେ,
ହରଣ ଆଶାରେ
ଗଗନ ପଥରୁ
ଝସିବ ଖରେ ।
ଲମ୍ବି ପଡ଼ିଲେ ବକ୍ଷେ ତାହାର
ସହଜେ କି ଆଉ ହେବ ବାହାର ?

ନଗନ ଜଘନା ଅଙ୍ଗନାରେ
ନୟନେ ଦେଖି,
ରସର ସୁଆଦ ପାଇଛି ଯିଏ
ଛାଡ଼ ପାରେକି ?

କବି ତାଙ୍କର ପବନ ପଦସ୍ପର୍ଶବାରେ ଚିଲିକାର ଚିତ୍ର ଦେଇଛନ୍ତି । ଗମ୍ଭୀରୀ ଯେପରି ବସ୍ତ୍ର-ଜଘନା ହୋଇ ବସିଛି, ଚିଲିକା ମଧ୍ୟ କେଶ ମୁକୁଳାଇ 'ଶିର ଶିଖି ସ୍ଫୀତ ବକ୍ଷ' ମେଲାଇ ପ୍ରତୀକ୍ଷା କରିଛି । ମେଘ ଯେପରି ଗମ୍ଭୀରୀର ନଗ୍ନ ତନୁ ଉପରେ 'ଲମ୍ବମାନ' ହୋଇଛି, ପବନ ଚିଲିକାର ସ୍ବଚ୍ଛଗଣ୍ଡସ୍ଥଳରେ ଚୁମ୍ବନ ଦେଇଛି । ଗମ୍ଭୀରୀ ଶଫରୀ ନୟନରେ ଗୁହାଁଳି ପରି ଚିଲିକା ମୀନନେତ୍ର ଫେଡ଼ ପବନକୁ ଅନାଇଛି ।

ଗୋପବନ୍ଧୁ କବିତାର ଉଦ୍ଧୃତିରେ ସବୁଟି ଟିକଏ ପୁଷ୍କଳ ହେବ ନିଶ୍ଚୟ—

ଆଲିଙ୍ଗନ ଆଶେ          ତବ ପଥ ପାଶେ
ଚିଲିକା ଆବେଗେ ଥିବ ଅନାଇ
ମୁକ୍ତ ନୀଳ-କେଶୀ          ଶ୍ୟାମ ଶୋଭାରାଶି
ଶିରଶିଖି ସ୍ଫୀତ ବକ୍ଷ ମେଲାଇ ।
ଚଞ୍ଚଳ ହିଲ୍ଲୋଳେ          ସ୍ବଚ୍ଛ ଗଣ୍ଡସ୍ଥଳେ
ଚୁମ୍ବି ଥିବ ଯେବେ ଗାଢ଼େ ସମୀର
ସୁନ୍ଦରୀ ସର୍ବାଙ୍ଗେ          ଉଠିଥିବ ରଙ୍ଗେ
ଅପୂର୍ବ ଉଲ୍ଲାସ କମ୍ପାଇ ନୀର ।
ପୁଲିନ କାନନେ          ସ୍ନିଗ୍ଧ ସନସନେ
ଖେଳଯାଇ ଥିବ ପ୍ରେମଲହରୀ ।

× × ×

ଫେଡ଼ ମୀନନେତ୍ର          ଉଲଟାଇ ଗାତ୍ର
ଗୁହାଁଳି ବେଳକୁ ଚିଲିକା ପୁଣ
ଶୈଳ ପ୍ରାନ୍ତଘାତେ          ଶରମେ ଭୁଲିତେ
ସ୍ଖଳିବ ବଢ଼ାଇ ଗତି ଦ୍ବିଗୁଣ ।

ଚିଲିକା ମୀନ-ନେତ୍ର ଫେଡ଼ି ଗାତ୍ର ଓଲଟାଇ ଗୃହିଁଲବେଳକୁ ପବନ ଶୈଳ ପଦାଘାତରେ ଦ୍ୱିଗୁଣ ଗତିରେ ଛୁଟିଥିବ; ମନରେ ତାର ଅତୃପ୍ତି ।

ପବନ ପୁଣି ଖଣ୍ଡଗିରି ଉପରେ ଆସିଲାବେଳକୁ ତାଲୁ ଅଟକାଇଲା କଏ,କଟକ । ନୀଳନୀର ବସନା ମହାନଦୀ, ଗୋପବନ୍ଧୁଙ୍କର ଏ ଭାଷା ଠିକ୍ ଗମ୍ଭୀର ନୀଳଂ ସଲିଳ ବସନଂ ପରି ।

"ଫୁଲି ଉଠିଥିବ    ମହାନଦୀ ବକ୍ଷ
କର୍ମି ଉଠୁଥିବ ଲହରୀ ହାର,
ପଠା ଖଣ୍ଡପନ୍ତ    ଥିବେ ମଥା ପୋତି
ମୃଦୁହାସେ ଦେଖି ଅଙ୍ଗୀକାର,,

"ପ୍ରସ୍ଥାନଂ ତେ କଥମପି ସଖେ" ବିରହୀ ଯକ୍ଷ ପଚାରିଲା ପରି ଗୋପବନ୍ଧୁ ପବନକୁ କହୁଛନ୍ତି—

"ଉଦ୍‌ବେଗ ବାହାନା    କରିଥିବ ସିନା
ଉପେକ୍ଷି ନଥିବ ତା' ସମାଦର,
ଯେ ଯେତେ କମଠ    କରେ କ୍ଷଣେ ମଠ
ପ୍ରେମ ପାଶୁଁ ହେବାବେଳେ ଅନ୍ତର ।"

'ବନ୍ଦୀର ସ୍ୱଦେଶ ଚିନ୍ତା' ପରି 'ବନ୍ଦୀର ସାନ୍ଧ୍ୟ ଭାବନା' କବିତାରେ ଗୋପବନ୍ଧୁଙ୍କର ଗଭୀର ସ୍ୱଦେଶପ୍ରୀତି ବିଦ୍ୟମାନ । କାରା-ଗାରରେ ବନ୍ଦୀ ଲକ୍ଷ୍ୟ କରିଛନ୍ତି ଯେ ଗୋଧୂଳି ଆକାଶରେ କାବ୍ୟତାର ହୃଦୟରୁ ଉଇଁଆସି ମିଟି ମିଟି ଅନାଉଛି; ସତେ ଯେପରି ଲୁଚି ଲୁଚି ଉଙ୍କିମାରୁଛି । ତାଙ୍କ ମନରେ କେତେ ଦୃଶ୍ୟ ଜାଗିଉଠୁଛି । ସମୁଦ୍ର—ତାର ବକ୍ଷରେ ଖେଳୁଛି ଢେଉ—ତୀରଦେଶରେ ଶ୍ୟାମଳ ତରୁପନ୍ତି—ନୋଳିଆ ପଡ଼ଉପରେ ମାଛ ଘେନ୍ ଫେରୁଛି, କୂଳରେ ପିଲାଏ ଗୃହିଁ ହସି ହସି ଗୀତ ଗାଉଛନ୍ତି ପୁଣି ପାଣିକି ଡେଇଁପଡ଼ୁଛନ୍ତି ଯେଉଁ ବାପ ହାତ-ଧରି କୂଳରୁ ପାଚ୍ଛୋଟି ଆଣିବେ । କେତେ ପକ୍ଷୀ ନାନା ରବ କରି ଉଡ଼ି-ଯାଉଛନ୍ତି, ଗୋଟିଏ ଦଳ ଛାଡ଼ିଦେଇ ଏକାଏକା ଉଡ଼ିଯାଉଛି—ବସା

ଖୋଜ ଖୋଜ । ବୋଧହୁଏ କନକ ଘାହାଡ଼ରେ ତାର ବସା—ସେଇଠି ତାର ଛୁଆପିଲ ସାଥିରେ ଖତ ପୁରାଇବ । ଗୁପ୍ତ ବୃନ୍ଦାବନ ଗ୍ରହ ଚଢ଼େଇ ଉଡ଼ିଯିବେଣି—ଆଉ ସେଠି କୋଳାହଳ ନ ଥିବ—ବାରୁଣୀ ଜଙ୍ଗଲରେ ଦାବାଗ୍ନି ଜଳଉଠିବଣି—ଶୁଖିଲ ବାଉଁଶ ଗଣ୍ଡି ଠୋ' ଠୋ ଫୁଟିବଣି—ନିଆଁ ସିନ୍ଦୂର ଶିଖା ଡୋଳ ପବନରେ ଖେଳିଯାଉଥିବ—ଧାସରେ ଶୁଖିଲ ପତର, ଘାସ ଜଳିଯାଉଥିବ । ମୃଗ, ଶଶ ଉପରେ ପଳାଇ ଯାଉଥିବେ—ସମୀରଣସ୍ପର୍ଶରେ ଠିଆ ହୋଇ ଦମ୍ ମାରୁଥିବେ—ସେଠୁ ପାପ ଲିଭିଯାଇ ଥିବ—ଅନ୍ଧାର ପୂର ରହିଥିବ—ବନ୍ଦୀ କବି ଗବୁଛନ୍ତି କାରା ଅନ୍ଧାରରେ ସେ କାହିଁକି ସେ ଅନ୍ଧାର କଥା ମନରେ ଆଣୁଛନ୍ତି,—

ଜଯୀରାଜଗୁରୁ, ଯିଏ ସ୍ୱଦ୍ରୋହୀ ବୋଲି ବିଦେଶୀ ସରକାରଙ୍କ ଅବଗ୍ରହରେ ଫାଶି ପାଇଥିଲେ; ତାଙ୍କର ଆତ୍ମା ବୋଧହୁଏ ସେଇଠି ପୋଖରୀ ତୀର ପାଖରେ ଘୂରୁଥିବ,

କବିଙ୍କ ମନରେ ଶ୍ରୀକ୍ଷେତ୍ରର ସାନ୍ଧ୍ୟ ଦୃଶ୍ୟ ଖେଳଉଠିଛି ।

"ବାଜିବଣି ନୀଳାଚଳେ କେତେ ଘଣ୍ଟା ଭେରୀତୂରୀ,
ଏ ସନ୍ଧ୍ୟା ଆରତିବେଳେ ବେଢ଼ା ଉଠୁଥିବ ପୂରି ।
କେହି କରୁଥିବେ ଜପ ପଢୁଥିବେ କେହି ସ୍ତୁତି,
କାହିଁ ନାମ ସଂକୀର୍ତ୍ତନ ଲଗିଥିବ ଦିବ୍ୟ ସ୍ଫୁର୍ତ୍ତି ।
ଉତ୍କଳର ପଲ୍ଲୀଗ୍ରାମେ ଏବେ ଭାଗବତ ଘରେ,
ଭାଗବତ ପଦପୁଆ ଉଠିବଣି ଉଚ୍ଚସ୍ୱରେ ।
ଏ ବିଜନ ବନ୍ଦୀ କିଆଁ କରୁଛି ମୁଁ ଏ ଭାବନା ।"

ମେଲକଙ୍କ ପଂକ୍ତି ସ୍ମୃତିପଥରେ ଜାଗିଉଠେ ।

When I think of my native Land
In a moment I seem to be there;
But Alas! recollection at hand,
Soon hurries me back despair

ସେଥିନିମନ୍ତେ ଗୋପବନ୍ଧୁ ମନରେ ଆଣିଛନ୍ତି—

"ଏକାନ୍ତେ ମୁହୂର୍ତ୍ତେ ବସି କରେ ହେଲେ ଉପାସନା ।
ପୂର୍ଣ୍ଣ ରହିଛନ୍ତି ପ୍ରଭୁ ସର୍ବଭୂତେ ସର୍ବସ୍ଥାନେ,
ପାଇବ ପରାଣେ ଶାନ୍ତି ତାଙ୍କ ପାଦପଦ୍ମ ଧ୍ୟାନେ ।
ବଜାଇବ ହୃଦେ ଘଣ୍ଟା ଅନ୍ତରେ ପ୍ରଦୀପ ଜାଳି,
ଆରତି ରଚିବ ଏଠି ପଦେ ପ୍ରେମ ପୁଷ୍ପ ଢାଳି ।
ଜୀବନ ନିବିଡ଼ ତମେ ସେହି ମୋର ଧ୍ରୁବ ତାରା,
ତାଙ୍କ ବଳେ ତୀର୍ଥ ମୋର ବିଷମ ଦୁଃସହ କାରା ।"

ସେଲକର୍କ ସେଇ ନିର୍ଜନ ଦ୍ୱୀପ ମଧ୍ୟରେ ଭାବିଥିଲେ—

"There's mercy in every place
Mercy encouraging thought
Gives even affliction a grace
And reconciles man to his lot."

ଗୋପବନ୍ଧୁ ସେଲକର୍କଙ୍କଠାରୁ ଆହୁରି ଗଭୀରତର କରି ଉପଲବ୍ଧି କରିଛନ୍ତି ପରମେଶ୍ୱରଙ୍କ ମହତ୍ତ୍ୱ ଓ କରୁଣା ।

କବିଙ୍କର ଦେଶାତ୍ମବୋଧ ସଙ୍ଗରେ ଆଧ୍ୟାତ୍ମିକତା ବିଜଡ଼ିତ ହୋଇ ରହିଛି । ତେଣୁ "ନିତ୍ୟଧାମ ନୀଳାଚଳ" କବିତାରେ ନିଜକୁ ପ୍ରଶ୍ନ କରିଛନ୍ତି—"ନୀଳାଚଳ ତଳେ କେ କରିବ ବାସ ?"

"ସେହି, ନାହିଁ ଯାର ନିଜ ପରକାଳ
ପାଏ ନୀତ ଯାର ସ୍ନେହ ସନମାନ,
ବିଶ୍ୱହିତେ ଯାର
ଆହାର ବିହାର
କରେ ବିଶ୍ୱହିତେ ଯେ, ଜୀବନ ଦାନ ।"

ପୁଣି—  "ଭିତର ବାହାର
ଯାର ସତ୍ୟସାର
ସୁଖ ଦୁଃଖେ ସଦା ସତ୍ୟ ଯା ଶରଣ ।"

ଗୋପବନ୍ଧୁଙ୍କ ଚିତ୍ତଚେତନାରେ ନୀଳାଚଳଶ୍ରୀ ଜାଗରୂକ । ନୀଳାଚଳନାଥ ଶ୍ରୀଜଗନ୍ନାଥ ତାଙ୍କର ଚକ୍ଷୁରେ ଉତ୍କଳର ନେତା, ତେଣୁ ତାଙ୍କର ବସ୍ତୁରେ ନୀଳାଚଳ ନିତ୍ୟଧାମ ।

"ପରାଣ ଦେବତା" କେଉଁଠାରେ ରହିଛନ୍ତି ସେଥିପାଇଁ ତାଙ୍କର ବ୍ୟାକୁଳତା ଓ ସନ୍ଧାନ । ଅନ୍ତର ଓ ବାହାରେ କେଉଁଠି ସେ ସୁଲଭ ନୁହନ୍ତି ତେଣୁ ତାଙ୍କର ପ୍ରାର୍ଥନା ତାଙ୍କର ଜ୍ୟୋତିରେଖା କପର ଅମା ଅନ୍ଧକାର ଭିତରେ ଉଦ୍ଭାସିତ ହେଉ ।

"ଆହା ଚାଲିଗଲେ !" କବିତାଟିରେ ପରାଣଦେବତା ସ୍ୱୟଂ ଆସିଥିଲେ—ସେତେବେଳେ ସେ ମୋହ ନିଦ୍ରାରେ ଅଭିଭୂତ ।

"କି ମୋହ ନିଦ୍ରା ମୋତେ ଘୋଟିଥିଲା,
କାହିଁ ଏ ପାପ ଆଖି ନ ଫିଟିଲା
ପାଖରେ ମୋର ବସି
ଗାଉଁ ମୋହନ ବଂଶୀ
ବଜାଇ କି ବେଗେ ସେ ଚାଲିଗଲା ।"

କବୀନ୍ଦ୍ର ରବୀନ୍ଦ୍ରନାଥଙ୍କର ଗୋଟିଏ ଗୀତରେ ଅବିକଳ ଭାବ ଓତପ୍ରୋତଃ । "ବୀଣାଖାନି" ସ୍ଥାନରେ ଗୋପବନ୍ଧୁଙ୍କର "ମୋହନ ବଂଶୀ" ।

"ସେ ଯେ ପାଶେ ଏସେ ବସେଛିଲ
ତବୁ ଜାଗିନି,
କି ଘୁମ୍ ତୋରେ ପେୟେଛିଲ
ହତଭାଗିନୀ ।

ଏସେ ଛିଲ ନୀରବ ରାତେ
ବୀଣାଖାନି ଛିଲ ହାତେ ।
ସପନ ମାଝେ ବାଜାୟେ ଗେଲ
ଗଭୀର ରାଗିଣୀ ।

ପରେ ରବୀନ୍ଦ୍ରନାଥଙ୍କର "ହତଭାଗିନୀ" ଜାଗିଉଠି ଦେଖିଲ—

"ଯବେ ଦେଖି ଦଖିନ୍ ହାଓୟା
ପାଗଲ କରୟା
ଗନ୍ଧ ତାହାର ଭେସେ ବେଡ଼ାୟ
ଆଁଧାର ଭରୟା
କେନ ଆମାର ରଜନୀ ଯାୟ
କାଛେ ପେୟେ କାଛେ ନାୟ,
କେନ ଗୋ ତାର ମାଲାର ପରଶ
ବୁକେ ଲାଗେନା ।

ମାତ୍ର ଗୋପବନ୍ଧୁଙ୍କ "ଭାଗ୍ୟହୀନ" ସେ ବଂଶୀ ସ୍ୱରରେ ଜାଗି ନାହାନ୍ତି, ତେଣୁ ହରାଇବାର ବେଦନାରେ କାତର ହୋଇଉଠିଛନ୍ତି ।

ଡାକିଲି କେତେଥର
ହେବାକୁ ଉଜାଗର
ପଦେ ହେଲେ ଉତ୍ତର ନ ଆସିଲା ।
ମୋ କଷ୍ଟ ଅନ୍ଧକୂପ
ସେ ପ୍ରଭାମୟ ରୂପ,
ଆଲୋକ କାହିଁ କ୍ଷଣେ ଲିଭିଗଲା ।
ନ ମେଲିଲି ନୟନ
ପଥେ ପଡ଼ିବା ଧନ
ଏ ଭାଗ୍ୟହୀନ ନେତ୍ର ନ ଦେଖିଲା ।"

ପରମ ଦେବତାଙ୍କର ଦର୍ଶନ ଲାଭ କରିବାରେ କବିଙ୍କର ସୌଭାଗ୍ୟ ହୋଇପାରିଲା ନାହିଁ । ତେଣୁ ସେ ତାଙ୍କର ଦେଖାପାଇବା ପାଇଁ ବ୍ୟାକୁଳ

ହୋଇଉଠିଛନ୍ତି ତାଙ୍କର "ଦେଖାଦେଅ ବାରେ" ଗୀତଟିରେ । "ଆହା ବୃକ୍ଷତଳେ" ଗୀତରେ ଯେଉଁ ମୋହନବଂଶୀ ବାଜିଉଠିଥିଲା ତାହାର ମୂର୍ଚ୍ଛନା ଶୁଣିବା ପାଇଁ ବ୍ୟାକୁଳ ହୋଇଛନ୍ତି—

"ମଧୁର ମୁରଲୀ ସମ୍ମୋହନ ତାନ
ଶୁଣାଅ, ପୁଲକ ଉଠିବ ପରାଣ ।"

ସେ ତାନରେ କଅଣ ଅଛି, ଦୁଃଖ ନା ସୁଖ ସେଥିପାଇଁ କ୍ଷୋଭ ନାହିଁ, ଶୋଚନା ନାହିଁ । ବରଂ ମୁଗ୍ଧ ଓ ଲୁବ୍ଧ ହୋଇ ସେ ଗାଇ-ଉଠିଛନ୍ତି ।

"ଉଠୁ ପଚ୍ଛେ ତାନେ ଦୁଃଖମୟ ଗୀତ
ଦୁଃଖ ଗଢ଼ା ପ୍ରାଣ ପାଉ ଦୁଃଖେ ପ୍ରୀତି ।"
ରବୀନ୍ଦ୍ରନାଥଙ୍କର ସେଇ ପଂକ୍ତିଟି ମନେ ପଡ଼େ ।
"ଦୁଃଖେ ଯାହେର ଜୀବନ ଗଡ଼ା ।"

କର୍ମ କରିବାର ପ୍ରାରମ୍ଭରେ ମଣିଷ ମନରେ ନାନା ଆଶଙ୍କା । ସ୍ୱତଃ ଆସିଥାଏ ଦୁଃଖ, କ୍ଷତି ବା ପରାଜୟ; ତେଣୁ ସେ ପ୍ରକୃତ କାର୍ଯ୍ୟ ଯଥାବିଧି କରିପାରେ ନାହିଁ । କୁରୁକ୍ଷେତ୍ର ଯୁଦ୍ଧରେ ଅର୍ଜୁନଙ୍କର ମନର ଅବସ୍ଥା ପ୍ରାୟ ଏହିପରି ଥିଲା । ଆତ୍ମୀୟ ଓ ଗୁରୁଜନମାନଙ୍କୁ ମାରି ପାପଗ୍ରସ୍ତ ହେବାକୁ ଚାହୁଁ ନ ଥିଲେ । ତେଣୁ ଶ୍ରୀକୃଷ୍ଣ ତାଙ୍କର ଉଦ୍‌ବୋଧନ ପାଇଁ ତାଙ୍କ ଆଗରେ ପ୍ରକାଶ କରିଥିଲେ—

ସୁଖ ଦୁଃଖେ ସମେ କୃତ୍ୱା, ଲାଭାଲାଭୌ ଜୟାଜୟୌ ।
ତତୋ ଯୁଦ୍ଧାୟ ଯୁଜ୍ୟସ୍ୱ, ନୈବଂ ପାପମବାପ୍ସ୍ୟସି ॥
ଶ୍ରୀମଦ୍‌ଭଗବଦ୍‌ ଗୀତା
ଅଧ୍ୟାୟ ୨, ଶ୍ଳୋକ ୩୮

ରବୀନ୍ଦ୍ରନାଥଙ୍କ ବାଣୀରେ ମଧ୍ୟ ବାଜି ଉଠିଛି, ସୁଖ ଦୁଃଖରେ ସମାନ ଶ୍ରଦ୍ଧା ରଖିଲେ ମାନବ ସୃଷ୍ଟି କମନୀୟ ହୋଇଉଠେ—

"ଭଲେ ମନ୍ଦ, ଦୁଃଖ ସୁଖ, ଅନ୍ଧକାର ଆଲୋ,
ମନେ ନସ୍ୱ ସବ୍ ନସ୍ୱେ ଏ ଧରଣୀ ଭଲେ ।"

ଗୋପବନ୍ଧୁ ସେଇପରି ସୁଖ ବା ଦୁଃଖରେ ସମାନ ଆଦର କରି ପାରିଛନ୍ତି—

"ସୁଖେ ଦୁଃଖେ ମୋର ସମାନ ଆଦର
ବାଅ ବେଳ ଯାଏ ବଢ଼ି ।"

ତାପରେ କବି ଦୃଷ୍ଟିର ଆଲୋକରେ ଦେଖିଛନ୍ତି "ବିଶ୍ୱର ମିଳନ ଚିତ୍ର" ସୂର୍ଯ୍ୟ ସହିତ ଚନ୍ଦ୍ରର, ଚନ୍ଦ୍ର ସହିତ ସିନ୍ଧୁର, ପବନ ସହିତ ଗିରିକନ୍ଦରର, ମେଘ ସହିତ ବିଦ୍ୟୁତ୍‌ର, ତରୁ ସହିତ ଲତାର, ଶୈଳ ସହିତ ଝରଣାର, ସମୁଦ୍ର ସହିତ ନଦୀର, ବେଳା ଭୂମିର ସହିତ ସମୁଦ୍ରର । ମାତ୍ର ନିଜ ଭିତରକୁ ଅନାଇ କବି ଲକ୍ଷ୍ୟ କରିଛନ୍ତି—

ଶୂନ୍ୟ ସଂସାର ମୋର ଶୂନ୍ୟ ସଦନ
ଚୁମ୍ବନ, ଆଲିଙ୍ଗନ ମତେ ସ୍ୱପନ ।
କିଏ ବା ଦେବ ନେବ ପ୍ରେମ ପୀୟୂଷ ?
ମରିବ ହାହାକାରେ ଯିବ ଆୟୁଷ ।
ମିଳିବ ନାହିଁ କି ସେ ପୀରତି ସୁଧା
ମୋ ଲାଗି ଶୁଷ୍କ କି ଏ ବିଶ୍ୱବସୁଧା ?
ଆଦର, ଆଲିଙ୍ଗନ ଗୁରୁ ଚୁମ୍ବନ
ଦେବ କି ନାହିଁ ପ୍ରାଣେ ପୂର୍ଣ୍ଣ ପ୍ରେରଣ ?

ଇଂରେଜ କବି **P. B. Shelley** ବିଶ୍ୱର ମିଳନ ଉତ୍ସବ ଲକ୍ଷ୍ୟ କରି ତାଙ୍କର **Phylosophy of Love** କବିତାରେ କହିଥିଲେ···

ମାତ୍ର ଗୋପବନ୍ଧୁ କୌଣସି ପାର୍ଥିବମିଳନର ପ୍ରତ୍ୟାଶା କରି ନାହାନ୍ତି । ସେଇ ପରମ ଦେବତା, ସେଇ ପରମ-ପଦ ହିଁ ତାଙ୍କର କାମ୍ୟ ।

ଜାଣେ ଅଛନ୍ତି ମୋର ପରାଣପତି,
ସୁନ୍ଦର ସତ୍ୟ ଶିବ ଅଗତିଗତି ।
ରହିଛନ୍ତି ନିତି ତାଙ୍କ ବାଟ ଅନାଇ,
ହୃଦ ପଲଙ୍କେ ଫୁଲ ଶେଯ ସଜାଇ ।
ଦେଖିବି ଥରେ ଯେବେ ପରାଣ ନାହା,
ଛାଡ଼ିବି ନାହିଁ ଭିଡ଼ି ଧରିବି ବାହା ।
ବହିବି ମନ ଭରି ଚୁମ୍ବ ଆଶ୍ଳେଷ,
ପୂରିବ ପ୍ରାଣ ପ୍ରାସ ହରିବ କ୍ଲେଶ ।

ମହାସାଗରରେ ନଈର ପରି, ତରୁ ଦେହରେ ଲତା ପରି, ମେଘରେ ଚପଳା ପରି, ଶୈଳ ଦେହରେ ଝରଣା ପରି, ଶଶୀ ସ୍ପର୍ଶରେ ଲହରୀ ପରି, ସୂର୍ଯ୍ୟ କିରଣରେ ଚନ୍ଦ୍ର ପରି କବି ପରାଣପତିଙ୍କ ସହିତ ପ୍ରାଣ ମିଶାଇ ଦେବାକୁ ବ୍ୟଗ୍ର—

ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ,
ନାଚିବି ବିଶ୍ୱପ୍ରେମ-ପରମାନନ୍ଦେ ।

"କାବ୍ୟ କବିତା"ର ସଙ୍କଳନରେ ଦେଖିବାକୁମିଳେ ତିନୋଟି ବିଭାବ, ତିନୋଟି ପର୍ଯ୍ୟାୟ, ତିନୋଟି ଧାରା—ସ୍ୱଦେଶ ପ୍ରୀତି, ଭକ୍ତି ପ୍ରୀତି ଓ ବନ୍ଧୁ ପ୍ରୀତି । ପ୍ରଥମ ଦୁଇଟି ଧାରାର କବିତାମାନଙ୍କର ସଂକ୍ଷିପ୍ତ ଆଲୋଚନା ମୁଁ ଉପସ୍ଥାପିତ କରିଛି ।

ବର୍ତ୍ତମାନ ବନ୍ଧୁ ପ୍ରୀତିର ପର୍ଯ୍ୟାୟ—ସେଇ ଭୂମିକାରେ ତିନୋଟି କବିତା, ପ୍ରଥମ ଦୁଇଟି କବିତାରେ ଜଣେ ବନ୍ଧୁ ଗୋପବନ୍ଧୁଙ୍କ କର୍ମ ପଥରୁ ଅପସରି ଯାଇଛନ୍ତି, ଆଉଜଣେ ଚିରଦିନ ପାଇଁ ଅପସରି ଯାଇଛନ୍ତି ଆର ପୁରକୁ ।

ପ୍ରଥମଟି—ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ !
ଦ୍ୱିତୀୟଟି—ପ୍ରେମର ଏ କି ପରିଣାମ ?

ସେଇ ଦୁଇଟି କବିତା ସମ ପର୍ଯ୍ୟାୟର ।

ବୃତ୍ତିପ୍ରବୃତ୍ତି କାବ୍ୟରେ ଜଣେ କେନ୍ଦ୍ରର ଅନୁରାଗବାର୍ତ୍ତା ଶୁଣିବାପରେ ।

ଜଣେ ଆଜୀବନ ସହକର୍ମୀଙ୍କର ପ୍ରତାରଣାରେ ଗୋପବନ୍ଧୁ ଅତ୍ୟନ୍ତ ମର୍ମାହତ ହୋଇଛନ୍ତି । ସେଥିପାଇଁ ଅଶ୍ରୁମୋଚନ କରିଛନ୍ତି । ସେଇ ସଜଳ ବେଦନାର ମୂର୍ଚ୍ଛନା ପ୍ରଥମ କବିତାଟିରେ ଓତପ୍ରୋତ ଓ ଦ୍ୱିତୀୟଟି ସେହି ପ୍ରୀତିର ଏକ ଦାର୍ଶନିକ ବିଶ୍ଳେଷଣ ।

ପ୍ରେମର ଅନ୍ତରାତ୍ମା ଓ ସ୍ୱରୂପ ଉପଲବ୍ଧି କରି କବି ଯଥାର୍ଥ ଭାବରେ କହନ୍ତି—

"ପ୍ରେମ ପରି ସଦେ, ସଦା ସୁଖ ପାଏ
ପ୍ରେମିକ ନ ଜାଣେ କେବେ ଶୋଚନା'
ପ୍ରିୟଜନେ ଯଦେ, ପ୍ରେମିକ ବିମୁଖ
ହେଲେ ହୋଇ ଯେତେ ଗୁରୁ ଗଞ୍ଜନା ।
ମୋ ପ୍ରେମ କି ସତେ କେବଳ ଛଳନା
ନେଲିକି ଅଲକ୍ଷିତେ ଆପଣା ସୁଖ ?
କରୁଛି କି ମୁହିଁ ଆତ୍ମ-ପ୍ରବଞ୍ଚନା
ତେଣୁ ମୋ ମନେ ଏ ଦାରୁଣ ଦୁଃଖ ।"

ଇଂରେଜୀ କବି ଗୋଲଡ୍‌ସ୍ମିଥ୍‌ଙ୍କର Edevin and Engelina କବିତାରେ ଯେଉଁ ବନ୍ଧୁତାର ସ୍ୱରୂପ ଦିଆଯାଇଛି ତାହା ଏକ ଛଳ ବନ୍ଧୁତା ।

"What is friendship but a nawe
A charm that lulls to sleep.
A shade that follws weath or fame
And leaves the wretch to weep"

ଗୋପବନ୍ଧୁ ସେଇ ଛଳ ବନ୍ଧୁତାର ଶରବ୍ୟ ହୋଇ ବ୍ୟଥାରେ ଲେଖିଥିଲେ ତାଲିକ୍ତା—ମାତ୍ର ତହିଁରେ ତାଙ୍କର ଅନ୍ତନଳିଭ—

"ଫୁଲ ପରି ପ୍ରେମ                ଝାଉଁଲେ କି ବନେ
ପ୍ରେମ ଯେ ଅନନ୍ତ ଅକ୍ଷୟ ଧାର
ଦୂର କଲେ ମତେ                ହେବ କି ଅନ୍ତର
ତୁମେ ଯେ ମୋ ପ୍ରାଣ ପ୍ରଣୟ କାନ୍ତ ।
ଏ ଜୀବନ ଶେଷେ                ନୂତନ ଅବଧାନ
ଅନ୍ୟ ସ୍ଥାନେ ପୁଣି ହେବ ତ ଦେଖା
ଶୁଦ୍ଧ ନେତ୍ରେ ତହିଁ                ଦେଖିବ ମୋ ହୃଦେ
ପ୍ରେମ ରସାଣିତ ଅମୃତ ଲେଖା ।"

"ପ୍ରେମର ଏକ ପରିଣାମ"ରେ ଗୋପବନ୍ଧୁ ନିଜକୁ ପଚାରିଛନ୍ତି—

ନଶ୍ୱର ଭବେ କି ଏହି ଜୀବନର ଗତି
କ୍ଷଣ ଭଙ୍ଗୁର କି ନର ପ୍ରଣୟ ପୀରତି ?

ନିଜ ଭିତରୁ ସେ ଉତ୍ତର ପାଇଛନ୍ତି—ପ୍ରେମ ଅପାର୍ଥିବ ।

"କଣ୍ଟକ ସଂକୁଳ ପଥେ କୁସୁମ ବିତାନ,
ମରୁଭୂମେ ପ୍ରେମ ସ୍ନିଗ୍ଧ ସଲିଳ ସମାନ ।
ମର୍ତ୍ତ୍ୟପିଣ୍ଡେ ପ୍ରେମ ଏକ ଅମର ସଞ୍ଚାର,
ପାର୍ଥିବ ଜଗତେ ପ୍ରେମ ସ୍ୱର୍ଗ ସୁଧାଧାର ।"

"ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ"ରେ ଯେଉଁ ଉଚ୍ଛ୍ୱାସ ଆତ୍ମପ୍ରକାଶ କରିଛି ତାହା ପୁଣି "ପ୍ରେମର ଏକ ପରିଣାମରେ ଉଚ୍ଚାରିତ ହୋଇଛି ।

"ତୁ ଛାଡ଼ିଲେ ମୁଁ ତ ତତେ ନ ଛାଡ଼ିବି କ୍ଷଣେ
କହିବ କି ଏକ ଥାନେ ଇଙ୍ଗିତ ଈକ୍ଷଣେ ।
ନୀରବ ଆଳାପେ କହି ମରମ ଘଷଣ
କରିବ ନାହିଁକି ଏକ ଥାନେ ଆଲିଙ୍ଗନ ?

ବିକସିବ ପ୍ରେମ ତେବେ ଅଭିନବ ରାଗେ
ଯୁଗଳ କମଳ କଳି ଫୁଟିବ ସରାଗେ ।
ବିଚ୍ଛେଦ ବିକାଶେ ପ୍ରେମ ଅତି ମଧୁମୟ ।
ଶୀତ ଅନ୍ତେ ଶୋଭେ ଯିମା'ନବ କିଶଳୟ ।"

ଗୋପବନ୍ଧୁ ବିଚ୍ଛେଦର ବେଦନାରେ ମ୍ରିୟମାଣ ହୋଇନାହାନ୍ତି ସେ ଥିଲେ ଶୁଭବାଦୀ (Optimust) ଥିଲେ, ତେଣୁ ସେ ଅନ୍ଧକାର ଭିତରେ ଦେଖି ପାରିଛନ୍ତି ଆଶାର ଓ ମଙ୍ଗଳର ମୟୂଖ ।

ପୁରୀ ସ୍କୁଲରେ ଗୋପବନ୍ଧୁଙ୍କର ଜଣେ ଶିକ୍ଷାଗୁରୁ ଥିଲେ—ହରିହର ମିଶ୍ର । ସେତେବେଳେ ସ୍କୁଲର 'ଶିକ୍ଷକମଣ୍ଡଳରେ ସେ ଥିଲେ ଏକମାତ୍ର ବି. ଏ. ଉପାଧିଧାରୀ । ଖାଲି ଶିକ୍ଷା ନୁହେଁ ମାନବିକତାରେ ମଧ୍ୟ ସେ ସୁନାମର ଅଧିକାରୀ ହୋଇଥିଲେ । ହଜାରିବାଗ ଜେଲରେ ଥିଲାବେଳେ ଗୋପବନ୍ଧୁ ତାଙ୍କର ବିୟୋଗ ବାର୍ତ୍ତା ପାଇଲେ—ତାଙ୍କର ଶୋକ କରୁଣ ଶ୍ଳୋକରେ ଢାଳିଯାଇଛନ୍ତି ଗୋଟିଏ କବିତାରେ······

"ତରୁଣ ବୟସେ ଯେବେ ବସି ତବ ପାଶେ
ଲଭିଥିଲି ଜ୍ଞାନାଲୋକ ପ୍ରଥମ ସଞ୍ଚାର
ସେ ଦିନୁ ଏ ଯାଏ ସବୁ ସ୍ମୃତି ମନେ ଆସେ
ଶୁଣି ଆଜ ତବ ମୃତ୍ୟୁ ଶୋକ-ସମାଚାର ।"

ଗୋପବନ୍ଧୁ ଯେଉଁଦିନ କାରାଦଣ୍ଡ ଭୋଗ କଲେ ସେଦିନ ତାଙ୍କର ବିଦ୍ୟାଗୁରୁ ସଜଳନୟନରେ ଦରବାର ଦ୍ୱାରରେ ଛିଡ଼ା ହୋଇଥିଲେ, ଛାତ୍ରଙ୍କର ନମସ୍କାର ଗ୍ରହଣ କରି ଆଶୀର୍ବାଦ କରିଥିଲେ; ମାତ୍ର ଜେଲ୍‌ରୁ ଫେରି ଆଉ ତାଙ୍କୁ ଭେଟିପାରିବେ ନାହିଁ ବୋଲି କବି ଦାରୁଣ ଶୋକ ଅନୁଭବ କରିଛନ୍ତି । କେତୋଟି ପଂକ୍ତିରେ ପ୍ରାଣର ସକଳ ପ୍ରକାଶ କରିପାରିନାହାନ୍ତି—

"ମୋ କାର୍ଯ୍ୟେ ମମତା ସଦା ଥିଲା ତବ ପ୍ରାଣେ
ମୋ ବିପଦେ ଭୋଗୁଥିଲ ସ୍ୱଜନ ବେଦନା,
ନ ଗଲି ଶ୍ମଶାନ ଯାଏ ଅନ୍ତିମ ପ୍ରୟାଣେ
ଶରଦିନ ରହିଲା ଏ ଗଭୀର ବେଦନା ।"

ପ୍ରଣୟ ଓ ବେଦନାର ଶତ କବି ଏହି ସ୍ତବକଟିରେ ଦେଇ ପାରିଛନ୍ତି—ତା ସାଥିରେ ଟିକିଏ ଜୀବନ ଦର୍ଶନ ଦେବାକୁ ଭୁଲି ଯାଇ ନାହାନ୍ତି ।

ତୃଣ ବେନି ଯଥା ମହାସାଗର ତରଙ୍ଗେ
ଭାସି ଆସି କ୍ଷଣେ ମିଳି ହୁଏ ଅନ୍ତରିତ,
ପିତା-ପୁତ୍ର ପତି-ପତ୍ନୀ ମିଳି ଏକ ସଙ୍ଗେ
କାଳସ୍ରୋତେ କାହିଁ ପୁଣି ଚଳନ୍ତି ତ୍ୱରିତ ।

ମହାକବି ବାଲ୍ମୀକିଙ୍କର ରାମାୟଣରେ ଏହି ଭାବଟି ଅବିକଳ ରହିଅଛି । ଭରତ ଯେତେବେଳେ ବଣକୁ ଯାଇ ରାଜ୍ୟ ଗ୍ରହଣ କରିବାକୁ ରାମଚନ୍ଦ୍ରଙ୍କୁ ଅନୁରୋଧ କରିଥିଲେ ସେତେବେଳେ ଅଗ୍ରଜ ତାହା ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ବୁଝାଇ କହିଥିଲେ—

ଯଥା କାଷ୍ଠଂ ଚ କାଷ୍ଠଂ ଚଃ
ସମେୟାତାଂ ମହାର୍ଣ୍ଣବେ ।
ସମେତ୍ୟ ତୁ ବ୍ୟପେୟାତାଂ
କାଲମାସାଦ୍ୟ କଞ୍ଚନ ॥ ୨୬ ॥

ଏବଂ ଭାର୍ଯ୍ୟାଶ୍ଚ ପୁତ୍ରାଶ୍ଚ
ଜ୍ଞାତୟଶ୍ଚ ବସୁନି ଚ ।
ସମେତ୍ୟ ବ୍ୟବଧାବନ୍ତି
ଧ୍ରୁବୋ ହ୍ୟେଷାଂ ବିନାଭବ ॥ ୨୭ ॥
ଅଯୋଧ୍ୟାକାଣ୍ଡ, ପଞ୍ଚାଧିକଶତତମ ସର୍ଗ ।

କବି ପୁଣି କହନ୍ତି—

ଦେହ ତ୍ୟାଗ କରି ଯେବେ ରହିବି ପରପାରେ
ଅନନ୍ତ ଭ୍ରମଣ ପଥେ କରନ୍ତି ଗମନ,
କେ ଜାଣେ ନ ହେବ ବୋଲି ଭେଟ ଆତ୍ମୀୟରେ,
ତୁଟେ ନାହିଁ କେଁ। ସ୍ନେହ ମମତା ବନ୍ଧନ ?

ସ୍ନେହ ପ୍ରୀତି ବନ୍ଧନ ଚିତାନଳରେ ଦଗ୍ଧ ହୋଇଯାଏ, ନାହିଁ ତେଣୁ କବିଙ୍କର ଏକ ବଳିଷ୍ଠ ବକ୍ତବ୍ୟ—

ଚିତାନଳେ ଭସ୍ମ ନୁହେ ସେନେହ ବନ୍ଧନ,
ଶ୍ମଶାନେ ନୁହେ ଏ ଜୀବ ଶେଷ ପରସୀମା ।

ଇଂରେଜୀ କବି ତାଙ୍କର Psalm of Life ( ଜୀବନ ସଙ୍ଗୀତରେ ) ଗାଇ ଯାଇଛନ୍ତି—

Life is real, life is earnest
And grave is not its goal.

ତେଣୁ ସେଇଭାବରେ ପ୍ରଣୋଦିତ ହୋଇ କବି ସ୍ୱର ତୋଳିଛନ୍ତି,

"କେବେ କାହିଁ ହେବ ନାଁ ଶୁଭସମ୍ମିଳନ,
ପ୍ରକାଶିବ ପ୍ରାଣେ ପୂର୍ଣ୍ଣ ପୁଣ୍ୟ ମଧୁରିମା ।"

ଗୁରୁଙ୍କ ସହିତ ପୁନର୍ମିଳନ ହେବ ବୋଲି ଗୋପବନ୍ଧୁ ଆଶା ରଖିଛନ୍ତି । ଆଶାବାଦର ତାହା ଏକ ସ୍ୱଚ୍ଛ ଓ ସ୍ୱଚ୍ଛନ୍ଦ ସ୍ୱପ୍ନ ।

# ବନ୍ଦୀର ଆତ୍ମକଥା

ବନ୍ଦୀର ଆତ୍ମକଥା—କଥା ନୁହେ । ଗୋପବନ୍ଧୁଙ୍କର ଜୀବନର ଲୋହିତ କାବ୍ୟପ୍ରାଣର ସ୍ୱତଃସ୍ଫୂର୍ତ୍ତ ବାଣୀ । ପାରସ୍ୟ କବି ଓମାର ଖୟାମଙ୍କର ଗୋଟିଏ ରୁବାଇରେ ଅଛି—ଏ ଗୋଲାପ ଫୁଲ ଅତିଶୟ ଲାଲ କାହିଁକି ? ବୋଧହୁଏ ସେଇ ଗୋଲାପ ମୂଳରେ ବୀରଶ୍ରେଷ୍ଠ ସିଜରଙ୍କୁ ସମାଧି ଦିଆଯାଇଥିଲା, ସେଇ ରକ୍ତ ଖାଇ ଗୋଲାପ ଫୁଲ ତେଣୁ ଏତିକି ଲାଲ ହୋଇପାରିଛି—

"I Sometimes think that never blows so red,
The Rose as where some buaried Caesar bled,"

ମନରେ ସେଇ ପ୍ରଶ୍ନ ହୋଇପାରେ "ବନ୍ଦୀର ଆତ୍ମକଥା" ଏତେ ଲୋହିତ କାହିଁକି ? ତାର ଉତ୍ତର—ଗୋପବନ୍ଧୁଙ୍କର ପ୍ରାଣର ଲହୁରେ ତାହା ଲୋହିତ ।

ପରାଧୀନ ଭାରତରେ ସ୍ୱରାଜ୍ୟ ପାଇଁ ସଂଗ୍ରାମ କରି ଗୋପବନ୍ଧୁ କାରାବରଣ କରିଥିଲେ । ୩୧ ମେ ୨୨ ତାରିଖ ଠାରୁ ୨୪ ଜାନୁଆରି ୨୩ ପର୍ଯ୍ୟନ୍ତ ତାଙ୍କୁ କଟକ ଜେଲ୍‌ରେ ରଖା ହୋଇଥିଲା ମାତ୍ର ୨୪ ଜୁନ ୧୯୨୨ରେ ତାଙ୍କର ବିଚାର ହେଲା, ସେଇ ଦିନ ଠାରୁ କାରାଦଣ୍ଡ ହେଲା । ୨୪ ଜାନୁଆରି ୨୩ ରେ ସେ ହଜାରିବାଗ ଜେଲକୁ ସ୍ଥାନାନ୍ତରିତ ହେଲେ । ତେଣୁ କଟକରେ କାରାଦଣ୍ଡ ଭୋଗ କଲେ ଛଅମାସ ।

"ମାରବେ ଭୋଗୁଛୁ ବସି କାରବାସ
ଗୃହୁଁ ଗୃହୁଁ ଏବେ ଗଲା ଛଅମାସ ।"

ଗୋପବନ୍ଧୁଙ୍କର ଉପର ଲିଖିତ ଦୁଇପଦରୁ ଜଣାପଡ଼ୁଛି ଯେ ସେ ବନ୍ଦୀର ଆତ୍ମକଥା ଆରମ୍ଭ କରି ୪ର୍ଥ ଅନୁଚ୍ଛେଦ ଶେଷ ସୁଦ୍ଧା ରଚନା କରିଥିଲେ କଟକ ଜେଲ୍‌ରେ—ଅବଶିଷ୍ଟ ହଜାରିବାଗ ଜେଲ୍‌ରେ ।

ପୁରାଣ କାଳରେ ତମସାନଦୀ ତଟରେ କୌଣସି ବୃକ୍ଷ ଶାଖାରେ ଗୋଟିଏ କ୍ରୌଞ୍ଚ ତାର କ୍ରୌଞ୍ଚୀ ସାଥିରେ ଲୀଳା ବିଳାସରେ ମୁଗ୍ଧ ହେଉ

ଥିଲା । ଏକ ନିଷ୍ଠୁର ବ୍ୟାଧ ତାଙ୍କୁ ହତ୍ୟା କରିଦେଲା । ସେତେବେଳେ ବାଲ୍ମୀକି ମୁନି କ୍ରୌଞ୍ଚର ରକ୍ତାକ୍ତ ମୃତଦେହ ଦେଖି ଓ କ୍ରୌଞ୍ଚୀର କାତର ବିଳାପ ଶୁଣି ସେ ଉଭୟଙ୍କ ପାଇଁ ଶୋକରେ ଅଭିଭୂତ ହୋଇଗଲେ । ଶୋକରେ ତାଙ୍କ କଣ୍ଠରୁ ଶ୍ଲୋକ ପ୍ରସ୍ଫୁରିତ ହେଲା—

"ମା ନିଷାଦ ତ୍ୱମଗମ ଶାଶ୍ୱତୀ ସମା ।
ଯତ୍ କ୍ରୌଞ୍ଚମିଥୁନାଦେକମବଧୀ କାମ ମୋହିତମ୍ ॥"

ସେଇ ଶ୍ଲୋକରେ କେବଳ ଶୋକର ଉତ୍ସ ନଥିଲା । ତହିଁରେ ଥିଲା ବିପ୍ଳବ ବା ପ୍ରତିହିଂସାର ଉଚ୍ଚାରଣ । କବିକଣ୍ଠରୁ ଫୁଟିଉଠିଥିଲା ଅଭିଶାପ—

"ରେ ନିଷାଦ, ତୁ ଅନନ୍ତକାଳ ପାଇଁ ଯଶ ଲାଭ କରି ପାରିବୁ ନାହିଁ ।"

ସେଇପରି ଆମ ଦେଶରେ ବେଦନା ଓ ବିପ୍ଳବର ଭୂମିକା ସୃଷ୍ଟି ହୋଇଛି । ବିଦେଶୀ ଶାସନର ଅତ୍ୟାଚାର ଓ ଉତ୍ପୀଡ଼ନରେ ଦେଶବାସୀ ବ୍ୟାକୁଳ ହୋଇ ଉଠିଛନ୍ତି । ତାହାରି ବିରୁଦ୍ଧରେ ବିପ୍ଳବ କରି ଗୋପବନ୍ଧୁ କାରାଦଣ୍ଡ ଭୋଗ କରିଛନ୍ତି । ବନ୍ଦୀଶାଳାରେ ବନ୍ଦୀ କବିଙ୍କ କଣ୍ଠରୁ ଯେଉଁ ବନ୍ଦୀର ଆତ୍ମକଥା ଉଚ୍ଚାରିତ ହୋଇଛି । ତାହା ବେଦନାର କାବ୍ୟ ଓ ବିପ୍ଳବର ଅଗ୍ନିବାଣୀ ।

ଯେଉଁ ଦେଶବାସୀଙ୍କର କଲ୍ୟାଣ ପାଇଁ, ମଙ୍ଗଳ ପାଇଁ, ଦୁଃଖ ନିର୍ଯ୍ୟାତନାର ନିରାକରଣ ପାଇଁ ରାଜଦଣ୍ଡ ବରଣ କରି ନେଇଛନ୍ତି । ଗୋପବନ୍ଧୁ ସେତିକିବେଳେ ସେଇ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଜଣାଇଛନ୍ତି ବେଦନା ଓ ସାଧନାର ବାଣୀ—

"ଦେଶବାସୀ ବନ୍ଧୁ ଆତ୍ମୀୟ ସୋଦର,
କାରାଦଣ୍ଡେ ମୋର ହେଲକି କାତର ?
ଥିଲା ଏହା ଆଗୁଁ ଜଣାଶୁଣା କଥା,
ସେଥିପାଇଁ ତେବେ କାହିଁ ମନ ବ୍ୟଥା ?"

ଦେଶରେ ଯେଉଁଠି ନଦୀରେ ବନ୍ୟା ପ୍ରବଳ ହୋଇଛି, ଗାଁ ଘରଦ୍ୱାର ଛାରଖାର ହୋଇଛି ତ ଗୋପବନ୍ଧୁ ସେଇଠି । ଯେଉଁଠି ଦୁର୍ଭିକ୍ଷ ଘରେ ଘରେ ମୃତ୍ୟୁର ବିଭୀଷିକା ଦେଖାଇ ଦେଇଛି ତ ଗୋପବନ୍ଧୁ ସେଇଠି । ଯେଉଁଠି ଅନ୍ଧାର ମୂଳକରେ ବିଦ୍ୟା ନାହିଁ, ଶିକ୍ଷା ନାହିଁ, ବାହାର ଆଲୁଅର ପ୍ରବେଶ ନିଷେଧ ଗୋପବନ୍ଧୁ ସେଇଠି । ଗୋପବନ୍ଧୁ ଜନଜୀବନର ସେବାକରି ସମସ୍ତଙ୍କ ହୃଦୟରେ ଆଣି ପାରିଥିଲେ ଆଶ୍ୱାସ ଓ ବିଶ୍ୱାସ । ତେଣୁ ତାଙ୍କର କାରାଦଣ୍ଡରେ ବ୍ୟଥିତ ହେବା ସେମାନଙ୍କ ପକ୍ଷରେ ଅତ୍ୟନ୍ତ ସ୍ୱାଭାବିକ । ଗୋପବନ୍ଧୁ ତାହା ଉପଲବ୍ଧି କରି ପାରିଥିଲେ—ହୃଦୟ ହୃଦୟକୁ ବୁଝେ । ତହିଁରେ ବ୍ୟାକୁଳ ବା କାତର ନ ହେବାକୁ ବୁଝାଇ ଦେଇଛନ୍ତି । ବଜ୍ରକଣ୍ଠରେ ଉଦ୍‌ବୋଧନ ଦେଇଛନ୍ତି—

"କାତରତା ସିନା କାପୁରୁଷ ପଣ
ବୀର ମାରେ ଅବା ମରେ କରି ପଣ ।
ପଛଘୁଞ୍ଚା ନାହିଁ ବୀରର ଜାତକେ
ନ ମରେ କେବେ ସେ ପରାଣ ଆତଙ୍କେ ।"

ଗୋପବନ୍ଧୁ କାତରତାକୁ କାପୁରୁଷତା ବୋଲି କହିଛନ୍ତି ମାତ୍ର ମହାତ୍ମା ଗାନ୍ଧୀ ତାକୁ ଦ୍ୱିଗୁଣିତର ହିଂସା ବୋଲି ମନେ କରିଛନ୍ତି—

"Anything is better than Cowardice
Cowardice is violence double distlled"

ଯେଉଁ ରଣରେ ପଛଘୁଞ୍ଚା ନାହିଁ, ଯେଉଁ ରଣ ହିଂସାର ରକ୍ତାକ୍ତ ରଣର ପରିପନ୍ଥୀ, ସେଇ ରଣର ସ୍ୱରୂପ ଗୋପବନ୍ଧୁ ଦେଶ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି—

"ଜାଣିଛୁ, ଲଗିଛୁ ଏ ଶାନ୍ତ ସମର,
ନାହିଁ ଏଥି ତୋପ, ହାତ ହତିଆର ।
ବଳ ବା ବଉଭ ନାହିଁ ଏଥି ଲୋଡ଼ା,
ନାହିଁ ଲୋଡ଼ା ଯାନ, ରଥ, ହାତୀ, ଘୋଡ଼ା ।

ଆଧ୍ୟାତ୍ମିକ ବଳେ ଲଭିଛୁ ଜୟ ଗୋ,
ଭାଙ୍ଗିବାକୁ ପଶୁ ବଳର ବଡ଼ାଇ ।
ଛାଡ଼ି ଧନ ଆଶା, ଘରଦ୍ୱାର ମାୟା,
ଅହିଂସା ଶସ୍ତ୍ର ଯେ ସାଜ ଅଛୁ କାୟା ।
ଅହିଂସା ବଳରେ ଯେହୁ ବଳୀୟାନ,
ଏ ରଣ ପ୍ରାଙ୍ଗଣେ ତାର ଏକା ସ୍ଥାନ ।''

ସେଇ ଅହିଂସା ଉପରେ ଯୋଗଦେଲେ ତାର ପରିଣାମ ଅତ୍ୟନ୍ତ କଷ୍ଟକର ଓ ଭୟଙ୍କର । କାରାଦଣ୍ଡ ତ ସୁନିଶ୍ଚିତ, ଶରୀର ବି ଖଣ୍ଡ ଖଣ୍ଡ ହୋଇଯାଇପାରେ, ତାହା ଉତ୍ତମ ରୂପେ ହୃଦୟଙ୍ଗମ କରି ଗୋପବନ୍ଧୁ ତହିଁରେ ଯୋଗ ଦେଇଥିଲେ, ତାଙ୍କର ପ୍ରାଣରୁ ଯେଉଁ ଆଗ୍ନେୟ କବିତା ଫୁଟି ଉଠିଥିଲା ତାହା ପୃଥିବୀର ଯେ କୌଣସି ବିପ୍ଲବୀ କବିଙ୍କ ପକ୍ଷରେ ସୁଦୁର୍ଲଭ କହିଲେ ଅତ୍ୟୁକ୍ତି ହେବନାହିଁ ।

ଆମର ଏହି ଉତ୍କଳ ଜଗନ୍ନାଥ ସଂସ୍କୃତିର ଦେଶ—ଏହାର ପ୍ରକୃତି ଓ ପ୍ରବୃତ୍ତି ଅନ୍ୟ ଦେଶଠାରୁ ଭିନ୍ନ ।

ଯେଉଁ ରାଜା ପୁରୀରେ ଶ୍ରୀଜଗନ୍ନାଥଙ୍କର ମହାମନ୍ଦିର ନିର୍ମାଣ କରିଥିଲେ ତାଙ୍କୁ ମହାପ୍ରଭୁ ବର ମାଗିଥିଲେ । ସେ ନିବେଦନ କରିଥିଲେ, ''ମହାପ୍ରଭୁ, ମୋତେ ଏଇ ବର ଦିଅ, ମୋତେ ନିର୍ବଂଶ କରିଦିଅ, ମୋ କୁଳରେ ଯେମିତି କେହି ରହିବେ ନାହିଁ ।

ମହାପ୍ରଭୁ ପଚାରିଲେ, ''ଇଏ କଅଣ ?''

''ମୋ କୁଳରେ କେହି ରହିବେ ନାହିଁ, ସେମାନେ କାଳେ ଦାବି କରିବେ ମୋର ପିତୃପିତାମହ ଏଇ ମହାମନ୍ଦିରର ନିର୍ମାତା, ମୋତେ ନିର୍ବଂଶ କରିଦିଅ ।''

ଏଇ ମାଟିର ଜଣେ କବି କବି ତାଙ୍କ ରଚନାରେ ଦୁର୍ଲଭ ବାଣୀ ଶୁଣାଇ ଯାଇଛନ୍ତି—ଜଗତର ମଙ୍ଗଳ ପାଇଁ ନିଜେ ନରକଗାମୀ ହେବାକୁ କୁଣ୍ଠିତ ହୋଇନାହାନ୍ତି—

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କିବା ସହୁ,
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ପାଉ ।
ଏକ ଖଣ୍ଡ ହାଡ଼ ବୁନ୍ଦାଏ ରୁଧିର
ଫୁଟେ ମାଉଁସ ଜାଣଇଁ,
ତେଣୁ କର ଯିନା ପ୍ରାଣିଙ୍କ ବିକଳ
ସହି ନ ପାରଇ ମୁହିଁ !"

—ସ୍ୱ୍ଗତ ଚନ୍ଦ୍ରାମଣି

ରୁଷ୍‌ରକବି Myacovsky କହିଥିଲେ—

Whereever pain is there am I on every single tear
That is Shed I myself am Crucified.

ଆମର ମାଟିରେ ଗୋପବନ୍ଧୁ ଆହୁରି ଅଗ୍ରଗାମୀ—ତାଙ୍କ ସୈନିକ ମନର ଅଭିବ୍ୟକ୍ତି ପ୍ରାଣୋଚ୍ଛ୍ୱାସରେ ଉଚ୍ଛ୍ୱସିତ—

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।"

ବନ୍ଦୀ କବିଙ୍କର ଉପର୍ଯ୍ୟୁକ୍ତ ଚାରୋଟି ପଂକ୍ତି ଓଡ଼ିଆ ସାହିତ୍ୟରେ ଏକ ଅମ୍ଳାନ ଅଭିଲେଖ । ତାହା ଯେପରି କହିଦେଉଛି ସାଧକର ସାଧନା ଓ କବିର ରଚନା । ନୋହିଲେ ଏତେ ପ୍ରାଣପ୍ରାଚୁର୍ଯ୍ୟ ଆଦୌ ସମ୍ଭବପର ହୁଅନ୍ତା ନାହିଁ ।

ତେଣୁ ଗୋପବନ୍ଧୁଙ୍କର ଭରସା ରୂପାୟିତ ହୋଇଛି ଦୁଇଟି ପଂକ୍ତିରେ—

"ସ୍ୱାଧୀନତା ପଥେ ଢଳେ ହେଲେ ନର,
ମୋ ଜୀବନ ଦାନେ ହେଉ ଅଗ୍ରସର ।"

ଉତ୍କଳବାସୀ ଭାଇ-ଭଉଣୀମାନଙ୍କୁ ଲକ୍ଷ୍ୟକରି ଗୋପବନ୍ଧୁ ପୁଣି କହିଛନ୍ତି—ତାଙ୍କର କାରାଦଣ୍ଡ ସମ୍ବାଦ ଶୁଣି ସେମାନେ ନିଶ୍ଚିତଭାବରେ ଶୋଚନା କରୁଥିବେ; ମାତ୍ର ତାହା ନାଦରଣୀୟ ତଥା ନାଚରଣୀୟ। ସେବାକାର୍ଯ୍ୟ କଲାବେଳେ ସେ ଗ୍ରାମେ ଗ୍ରାମେ ବୁଲି ମଧ୍ୟ ଜଣାଇଥିଲେ ସେପରି କାର୍ଯ୍ୟରେ ପ୍ରବୃତ୍ତ ହେଲେ ପରିଣାମରେ କାରାଦଣ୍ଡ ସୁନିଶ୍ଚିତ । ଦେଶ ପାଇଁ, ଦଶ ପାଇଁ କାରାବରଣ କରିପାରିଲେ ତାହା କାରାନୁହେ ସ୍ୱର୍ଗଦ୍ୱାର । ସେମାନଙ୍କ ଠାରୁ ସେ ଆଶୀର୍ବାଦ ଭିକ୍ଷା କରୁଛନ୍ତି, ଯେପରି ତାଙ୍କର ଦଣ୍ଡର ସମୟ ସହଜରେ ଶେଷ ହୋଇଯିବ, ସେ ପୁଣି ଫେରି-ଯାଇ ନିଜକୁ ନିୟୋଜିତ କରିପାରିବେ ସେମାନଙ୍କ ସେବାରେ ।

ଜାତୀୟ ଜୀବନକୁ ମଙ୍ଗଳମୟଙ୍କର ଇଚ୍ଛା ବୋଲି ଯିଏ ସସ୍ମିତ ବଦନରେ ବରଣ କରି ନେଇଛନ୍ତି ତାଙ୍କ ପକ୍ଷରେ ଜନ୍ମଭୂମି—ସେବା ପରମ କାମ୍ୟ, ତେଣୁ ତାଙ୍କ ପ୍ରାଣରୁ ଉଚ୍ଚାରିତ ହୋଇଛି—

"ପୂର୍ବ ପୁରୁଷର ପବିତ୍ର ଶ୍ମଶାନ,
ଦେଶର, ଜାତିର ଗଉରବ ଗାନ ।
ପୂଜ୍ୟ ଜନ୍ମ ମାଟି ପୂଜ୍ୟ ଦେବାଳୟ,
ଉଦ୍ଧରିବା ପାଇଁ କଲେ ତନୁ କ୍ଷୟ ।
ମାନବ ଜୀବନ ହୁଅଇ ସଫଳ ।"

ପ୍ରଶ୍ନ ଉଠିଛି—

"ଏ ମହାପରୀକ୍ଷା କି ବୁଝିବ ଉତ୍କଳ ?"

ତେଣୁ ଜାତୀୟ-ଜୀବନ ଓ ବିଶ୍ୱଜନପ୍ରୀତି ଉତ୍କଳବାସୀଙ୍କର ଧେୟ ହେଉ ବୋଲି ଗୋପବନ୍ଧୁ ଭିକ୍ଷା କରୁଛନ୍ତି ସ୍ରଷ୍ଟାଙ୍କ ନିକଟରେ ।

ମହାମାନ୍ୟ ବାଳ ଗଙ୍ଗାଧର ତିଲକ ଥିଲେ ଭାରତୀୟ କଂଗ୍ରେସର ନେତା, କର୍ଣ୍ଣଧାର । ତାଙ୍କର ବାଣୀ ଥିଲା ।—"ସ୍ୱାଧୀନତା ମଣିଷର ଜନ୍ମଗତ ଅଧିକାର" । ସମଗ୍ର ଭାରତର ପଥେ ପଥେ ତାହା ପ୍ରତିଧ୍ୱନିତ

ହେଉଥିଲା । ଗୋପବନ୍ଧୁ ତାହା ସ୍ମରଣ କରି ଦେଶବାସୀଙ୍କ ଆଗରେ ପରିବେଷଣ କରୁଛନ୍ତି—

"ସ୍ୱରାଜ୍ୟ ମାନବ ଜନ୍ମ ଅଧିକାର
ଏହା ବିନା ଦେଶ ହୁଏ ଛାରଖାର ।"

ଏହା ବିନା ଦେଶ କିପରି ଛାରଖାର ହୁଏ ତାର ଦୃଷ୍ଟାନ୍ତ—ଅନ୍ନ ବସ୍ତ୍ର ଅତ୍ୟନ୍ତ ଦୁର୍ମୂଲ୍ୟ ହେଲାଣି, ବନ୍ଦୋବସ୍ତ ପରେ ବନ୍ଦୋବସ୍ତ ହେଉଛି, ରାଜସ୍ୱ ଛଡ଼ା କେତେ ପ୍ରକାର କର ବସୁଛି । ଖାଇବା ବାସନ ନିଲାମ ହୋଇଯାଉଛି । ନାନା ଦୁଃଖ ଯନ୍ତ୍ରଣା ସହି ସହି ଦେହରୁ ରକ୍ତ ଶୁଖି ଗଲାଣି । ହୀନ ରାଜନୀତିରେ ସମସ୍ତେ ଭୟଭୀତ ।

ମାତ୍ର ଗୋପବନ୍ଧୁ ଏଠି କେବଳ କବି ନୁହନ୍ତି, ଭବିଷ୍ୟତ ବକ୍ତା । କେବଳ Poet ନୁହନ୍ତି Seer, ତେଣୁ ସେ ଦିବ୍ୟଦୃଷ୍ଟିରେ ଦେଖି ପାରିଛନ୍ତି—

"ରହିବ ନାହିଁ ଏ ନୀତି କାଳେ କାଳେ,
ନାଶଯିବ ସତ୍ୟ ନ୍ୟାୟ କରିବାଲେ ।"

ଯେହେତୁ;

"ପ୍ରଜା ଲାଗି କଲେ ପ୍ରଜାପତି ସୃଷ୍ଟି,
ପ୍ରଜା ଲାଗି ଇନ୍ଦ୍ର କରେ ଜଳ ବୃଷ୍ଟି ।
ପ୍ରଜା ଲାଗି ଉଦେ ରବି ଶଶୀ ତାରା,
ପ୍ରଜା ଲାଗି ବହେ ଶତନଦୀ ଧାରା ।"

ରାଜ୍ୟରେ ଥିଲେ ପ୍ରଜା ଓ ରାଜା—ଉଭୟଙ୍କ ମଧ୍ୟରେ ଥିଲା କମନୀୟ ସମ୍ପର୍କ, ପ୍ରଜାମାନଙ୍କ ପ୍ରତି ରାଜାଙ୍କର କର୍ତ୍ତବ୍ୟ କଅଣ ? ପୁରାଣ ଗ୍ରନ୍ଥମାନଙ୍କରେ ତାର ଉଲ୍ଲେଖ ରହିଛି—

"ପ୍ରଜାନାଂ ବିନୟାଧାନାତ୍ ରକ୍ଷଣାଦ୍ ଭରଣାଦପି ।
ସ ପିତା ପିତରସ୍ତେଷାଂ କେବଳଂ ଜନ୍ମହେତବ ।"

—ରଘୁବଂଶ

ମହାକବି କାଳିଦାସଙ୍କର ଏ ଭାବକୁ ଗୋପବନ୍ଧୁ ଆହୁରି ସୁନ୍ଦର କରି ପ୍ରକାଶ କରିଛନ୍ତି—

"ଭାରତର ରାଜଧର୍ମ ସନାତନ,
ପରଜା ରକ୍ଷଣ, ପାଳନ, ରଞ୍ଜନ ।"

ମାତ୍ର ରାଜଧର୍ମ ଆଜି ଭ୍ରଷ୍ଟ । ସହଜେ ଆମର ରାଜା ବୈଦେଶିକ, ତେଣୁ ପ୍ରଜାପ୍ରତି ତାର ମାୟା ମମତା ନାହିଁ । ରାଜା ପ୍ରଜା ମଧ୍ୟରେ ସମ୍ପର୍କ ଅତ୍ୟନ୍ତ ଭୟଙ୍କର । ତେଣୁ ଆମ ଦେଶରେ ସ୍ୱରାଜ୍ୟ ପାଇଁ ପ୍ରଜାମାନଙ୍କର ଆନ୍ଦୋଳନ—

ସେଇ ଯେ ସ୍ୱରାଜ୍ୟ ତହିଁରେ ଏହି ମାନ୍ତି ପ୍ରତିଷ୍ଠିତ ହେବ—ଦୁଃଖୀ ଦୁରନ୍ତର ରହିବ ନାହିଁ, ଅନାହାରରେ କେହି କଷ୍ଟ ପାଇବେ ନାହିଁ, କେହି ଦୁଃଖୀ ଧନୀକର ପ୍ରହାରରେ ମରିବ ନାହିଁ । ଉପରେଇ ଶାସନ କରିବା ଭାଙ୍ଗିଯିବ, ପ୍ରଜାଙ୍କ ମତରେ ଶାସନ ଚଳିବ । ଏଇ ଯୁଗ ଆଣିବା ପାଇଁ ମହାତ୍ମା ଗାନ୍ଧି ବର୍ତ୍ତମାନ କାରାଗୃହରେ ବନ୍ଦୀ ହୋଇଛନ୍ତି । ଭାରତର ଆଜି କେତେ କେତେ ବ୍ୟକ୍ତି ସେଇପରି ବନ୍ଦୀଶାଳାରେ ।

ଗୋପବନ୍ଧୁ ଥିଲେ ବିନୟର ଅବତାର ତେଣୁ ତାଙ୍କର ଚାଲିଚଳନରେ ବିନୟ; କଥାରେ ବିନୟ—

"ମୁଁ ଅତି ସାମାନ୍ୟ ତାଙ୍କ ଅନୁଚର,
ତୁମ ଅକିଞ୍ଚନ ଆତ୍ମୀୟ ସୋଦର ।
ଉତ୍କଳ-ମାତାର ଆଜି କେତେ ସୁତ—
ସଙ୍ଗେ କାରାଗାରେ କଲି ପିଣ୍ଡ ପୁତ ।
ବସି ଏଥି ସଦା ରହିଛି ଅନାଇ,
କାରାଦ୍ୱାର ଛିଦ୍ରେ ତୁମ ଆଡ଼େ ଭାଇ ।"

ଗୋପବନ୍ଧୁ ପୁଣି କହିଛନ୍ତି—

"ଉତ୍କଳ ଅସଙ୍ଗ ପ୍ରବାହେ ଭାସିତ,
ବାହୁନ୍ତନ୍ତି ସେତ୍ତୁ ସ୍ୱରାଜ୍ୟ ବୋଇତ;
ସେ ଦଳରେ ମୁହିଁ ଅକିଞ୍ଚନ ଜଣେ
ମୋଡ଼ୁ ଥିଲି ନାବ-ମଙ୍ଗ ପ୍ରାଣପଣେ,
ସ୍ୱରାଜ୍ୟ-ବାଉଶ୍ରି—ଦଳ ହାତେ ପଡ଼ି
ମୋ ହାତେ ଲଗିଛି ଏବେ ଲୁହାକଡ଼ି ।"

ମାତ୍ର ଗୋପବନ୍ଧୁ ପ୍ରକୃତରେ ଓଡ଼ିଶାର ନେତା । ଏପରିକି ୧୯୨୦ ରେ ଓଡ଼ିଶାରେ ଯେତେବେଳେ ଦୁର୍ଭିକ୍ଷର କରାଳ ଛାଇ ଦେଖାଦେଲା ଗୋପବନ୍ଧୁ ସେଇ ସମ୍ବାଦ ଜଣାଇଲେ ମହାତ୍ମା ଗାନ୍ଧି, ଅମୃତଲାଲ ଠକ୍କରଙ୍କୁ ଏଠାକୁ ପଠାଇଥିଲେ । ଯେଉଁ Peoples' Famine Relief Committee ଗଢ଼ା ହେଲା, ତହିଁରେ ଗୋପବନ୍ଧୁଙ୍କୁ କରାହେଲା ସଭାପତି, ଠକ୍କରଜୀ ହେଲେ ସମ୍ପାଦକ । ସମସ୍ତଙ୍କ ସଫଳ କାର୍ଯ୍ୟ କଳାପରେ ଗାନ୍ଧିଜୀ ଆଶ୍ୱାସିତ ହୋଇଥିଲେ, ତେଣୁ ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱକୁ ପ୍ରତିପାଦିତ କରିଥିଲେ—

In this god-forsaken region the one real leader Gopabandhu Das who gave all help to Sri Amrut Lal Takkar at the time of famine. He became a lawyer and practised for a few years but finally gave up practice. and dedicated his all to the service of the Country."

ଏତେବଡ଼ ସ୍ୱୀକୃତି ପାଇଥିଲେ ସୁଦ୍ଧା ସେ ନିଜକୁ ଗୋପବନ୍ଧୁ ନେତା ବୋଲି ମନେ କରୁ ନଥିଲେ । 'ନେତା ନଥିଲେ ଧର୍ମଭଙ୍ଗ ଚଳେ' ବୋଲି ତାଙ୍କର ବଳିଷ୍ଠ ଆତ୍ମ-ପ୍ରତ୍ୟୟ । ଯାହା ତାଙ୍କର କବିତାରେ ଆତ୍ମ ପ୍ରକାଶ କରିଛି—

"ନ ଅଟନ୍ତି କର୍ମ ନେତାର ଅଭାବେ,
ଧର୍ମ-ନାବ ଚଳେ ଧର୍ମର ପ୍ରଭାବେ ।
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ,
ଉତ୍କଳର ନେତା ନିଜେ ନାରାୟଣ ।"

ଶ୍ରୀଜଗନ୍ନାଥ ସ୍ୱୟଂ କିପରି ଉତ୍କଳର ନେତା ତାର ଦୃଷ୍ଟାନ୍ତ ସେ ବାଡ଼ିଚନ୍ଦ୍ର କାଞ୍ଚୀଯୁଦ୍ଧ ସମୟରେ ଜଗନ୍ନାଥ ଓ ବଳଭଦ୍ର କଳା ଧଳା ଘୋଡ଼ାରେ ଚଢ଼ି ଅଭିଯାନ କରିଥିଲେ ଓ ଆମ ଦେଶ ପାଇଁ ବିଜୟଶ୍ରୀ ଆଣି ଦେଇଥିଲେ, ତେଣୁ ସେହି ପ୍ରଭୁ ଥାଉଁ ଥାଉଁ ଓଡ଼ିଶାର ଭୟ ନାହିଁ ।

୧୯୨୩ ଜାନୁଆରି ୨୮ ତାରିଖ । ସେଦିନ ଗୋପବନ୍ଧୁଙ୍କୁ ମା ଓଡ଼ିଶା କୋଳରୁ ବିଚ୍ଛିନ୍ନ କରି ନିଆ ହେଲା କଟକ ଜେଲ୍‌ରୁ ବିହାରର ହଜାରିବାଗ ଜେଲକୁ । ସେତେବେଳେ ଘୋର ନିଶୀଥ ସମୟ । ଜେଲ୍ ଭିତରୁ ଯେତେବେଳେ ତାଙ୍କୁ କଟକ ଷ୍ଟେସନକୁ ନେବା ପାଇଁ ବାହାରକୁ ଗାଡ଼ିରେ ଅଣାହେଲା ସେତେବେଳକୁ ଜେଲ ସମ୍ମୁଖରେ ବିରାଟ ଜନତା । କେବଳ ଦର୍ଶନ ଆଶାରେ । ଗୋପବନ୍ଧୁ ନମସ୍କାର ଜଣାଇ ବାଷ୍ପ ଗଦ୍‌ଗଦ କଣ୍ଠରେ ହୃଦୟର ବେଦନା ଢାଳିଦେଇଥିଲେ—"ମୋତେ ଓଡ଼ିଶାରୁ ଛଡ଼ାଇ ନିଆ ଯାଉଚି ।" ତାହାହିଁ ତାଙ୍କର କବିତାରେ ପରିସ୍ଫୁଟ ହୋଇଚି—

"ଶାସନ-ରକ୍ଷକ କଟୁଆଳ ଦଳ,
ନେଉଛନ୍ତି ମତେ ଛଡ଼ାଇ ଉତ୍କଳ ।
ରଖି ଆସିବେ ସେ ଆନ କାରାଗାରେ,
କାହିଁ ବହୁଦୂରେ ଉତ୍କଳ ବାହାରେ ।
ନ ଦେଖିବେ ବୋଲି କେହି ଦେଶବାସୀ
ଗଭୀର ନିଶୀଥେ ନିଅନ୍ତି ଲୁଚାଇ ।
ନିଅନ୍ତୁ ଯେପରି ରଖନ୍ତୁ ଯେ ବଳେ,
ସେଥି ଲାଗି ମୋର ଦୁଃଖ ନାହିଁ ତିଳେ ।"

ମାତ୍ର ଗୋପବନ୍ଧୁଙ୍କର ଦୁଃଖ ଦେଶର ଭାଇମାନଙ୍କ ପାଇଁ । ତାଙ୍କର କାରାଦଣ୍ଡ ସମ୍ବାଦ ଗ୍ରାମରୁ ଗ୍ରାମାନ୍ତରକୁ ଖେଳିଗଲେ କାଳେ କିଏ ଅସହଯୋଗ ଆନ୍ଦୋଳନ ଛାଡ଼ିଦେବେ ତାହାହିଁ ତାଙ୍କର ଚିନ୍ତା, ତାହାହିଁ ତାଙ୍କର ଦୁଃଖ ।

ଉତ୍କଳର ଗ୍ରାମମାନଙ୍କରେ ଦେଶପ୍ରାଣ ଯେଉଁ କରୁଣ ଓ ଦାରୁଣ ଦୃଶ୍ୟମାନ ଦେଖିଥିଲେ ସେସବୁ ତାଙ୍କର ସ୍ମୃତିର ସଖାଳି ହୋଇରହିଛି । କେତେ ଚାଷୀ ଭଲ ଭଲ ଲୋକ ଦି'ବେଳା ଖାଇବାକୁ ପାଉନାହାନ୍ତି, ଯେଉଁ ଉତ୍କଳର ସେନା ସୈନିକ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ତାଙ୍କର ବିଜୟ ପତାକା ଉଡ଼ାଇଥିଲେ ତାଙ୍କର ଦାୟାଦ ଆଜି କଙ୍କାଳସାର, ଅନାହାରରେ ଉତ୍ଥାନ-ଶକ୍ତି ରହିତ । ଗ୍ରାମର ଲୋକ ଯାହା କଷ୍ଟେମଷ୍ଟେ ଅର୍ଜନ କରୁଛନ୍ତି ତାହା ଲୁଣ୍ଠିତ ହେଉଛି ଦୁଷ୍ଟ ମହାଜନ, କାବୁଲିଆଳଙ୍କ ଦ୍ୱାରା । ଜମିଦାରଙ୍କ ଦାଉ ଅତ୍ୟନ୍ତ ଭୟଙ୍କର—ମାଉମାନେ ସର୍ବସ୍ୱ ନେବା-ରେ ତତ୍ପର । ତରୁଣୀ କନ୍ୟା ଖାଇବାକୁ ପାଉନାହିଁ, ଜୀର୍ଣ୍ଣବସନରେ ଲଜ୍ଜା ଢାଙ୍କିପାରୁନାହିଁ । ଚିକିତ୍ସା ଅଭାବରେ ଲୋକ ମରଣ ଗ୍ରାସରେ ପଡ଼ୁଛି । କେତେଲୋକ ଉଦରଜ୍ୱାଳାରେ ଘରଦ୍ୱାର ଛାଡ଼ି ଚାଲିଯାଉଛନ୍ତି—ଉଦ ବା ଚାଲିଆ ପଡ଼ୁଛି । ଗ୍ରାମରେ ବେଦମନ୍ତ୍ର ବା ଭାଗବତ ପଦ ଶୁଣାଯାଉ ନାହିଁ—ଲୋକଙ୍କ ଭିତରେ ଐକ୍ୟ ନାହିଁ—ଦେଉଳ ଭାଙ୍ଗିପଡ଼ୁଛି । ପୋଖରୀ ପଙ୍କରେ ଭରିଉଠୁଛି । ଗୋଜାତି କ୍ରମଶଃ ଦୁର୍ବଳ, ସତ୍ୟଧର୍ମ ପ୍ରତି କାହାର ମମତା ନାହିଁ । ଖାଲି ମାଲିମକଦ୍ଦମା, କଳହ—ଯହିଁରେ ସର୍ବସ୍ୱାନ୍ତ ହେବାର ବାଟ । ତା ଉପରେ ଶାସନର କୂଟଚକ୍ର—କଂସା ହାଡ଼ା ଜମି ବିକି ଚାଲିଛି, କେତେ ଲୋକ ଜୀବିକା ଛାଡ଼ି ଦେଲେଣି, ଏହା ଉପରେ କର ପୀଡ଼ା । ଏହା ମନେପକାଇ ଗୋପବନ୍ଧୁ କିପରି ମର୍ମାହତ ହୋଇଛନ୍ତି ତାହା ତାଙ୍କର କବିତାରେ ପରିସ୍ଫୁଟ—

"ସରିଲାଣି ସାର ପଡ଼ିଅଛି ଗୀଠା"
ନାହିଁ ଗର୍ଭେ ପୂର ହସେ ପୋଲ ପିଠା ।

• ଉଭେଇଛି ଖଣ୍ଡା ଦୋହଲଇ ଖାପ,
ରହିଛି ଅଙ୍ଗାର ନାହିଁ ତେଜ ତାପ ।

ପଡ଼ିଅଛି ପିଣ୍ଡ ଯାଉଛି ପରାଣ,
ଦେଖିଲେ ଏ ଦଶା ବୁଡ଼େ ବୁଦ୍ଧି ଜ୍ଞାନ ।

ସଡ଼ି ସବୁ ଗଛେ ରହିଛି ବକଳ
ସୁନ୍ଦର ସକଳ ହୋଇଛି ବିକଳ ।

ଫେରିବ ଏ ଦଶା ସୁଖୀ ହେବ ପ୍ରଜା,
ଉଷୁନା ଧାନ କି ସତେ ହେବ ଗଜା ।"

ବନ୍ଦୀଙ୍କର ଆତ୍ମବିଶ୍ୱାସ ଯେ ଯଦି ଅସହଯୋଗ ଆନ୍ଦୋଳନ ଦେଶରେ ସଫଳ ହୁଏ ତେବେ ଏ କରୁଣ ଚିତ୍ର ନିଶ୍ଚିତ ଭାବରେ ବଦଳି ଯିବ । ସୁଖ ପରେ ଦୁଃଖ, ଦୁଃଖ ପରେ ସୁଖ ଲାଗିଛି—କବି କାଳିଦାସ ତାଙ୍କର ମେଘଦୂତରେ କହିଯାଇଛନ୍ତି—

"କସ୍ୟା ତ୍ୟନ୍ତଂ ସୁଖମୁପନତଂ
ଦୁଃଖମେକାନ୍ତତୋ ବା
ନୀଚୈର୍ଗଚ୍ଛତ୍ୟୁପରି ଚ ଦଶା
ଚକ୍ରନେମି କ୍ରମେଣ ।"

କବି ଭାସ ମଧ୍ୟ ସେଇ ମର୍ମରେ ବ୍ୟକ୍ତ କରିଛନ୍ତି—

"କାଳ କ୍ରମେଣ ଜଗତଃ ପରିବର୍ତ୍ତମାନା
ଚକ୍ରାର ପଂକ୍ତିରିବ ଗଚ୍ଛତି ଭାଗ୍ୟପଂକ୍ତିଃ ।"

ଗୋପବନ୍ଧୁ ନିଜସ୍ୱ ଭାବରେ ପ୍ରକାଶ କରିଛନ୍ତି—

"ସୁଖ ଦୁଃଖ ଚକ୍ର ଘୂରେ ନିରନ୍ତର,
ଏକ ପରେ ଆନ ଆସିବ ମୁକର ।
ଆଲୁଅ ଅନ୍ଧାର ଖେଳେ ଲୁଚକାଳି,
ଆସିବ ଆଲୁଅ ପଡ଼ିଲଣି ପାଳି ।"

ପୁଣି ସେ ଜଣାଇ ଦେଇଛନ୍ତି, ସ୍ୱରାଜ୍ୟ ସୂର୍ଯ୍ୟର ଉଦୟ ଉତ୍ସବ ଆସନ୍ନପ୍ରାୟ । ତେଣୁ ଏ ମାହେନ୍ଦ୍ର ବେଳାରେ ଜାଗ୍ରତ ହେବାକୁ ସମସ୍ତଙ୍କୁ ଆହ୍ୱାନ ଦେଇଛନ୍ତି । କାରାଗାରରେ ମହାତ୍ମାଗାନ୍ଧିଙ୍କ ଆଡ଼କୁ ଲକ୍ଷ୍ୟ ଦେବାକୁ ଅନୁରୋଧ ଜଣାଇଛନ୍ତି—

"ଥରେ ହେଲେ ଭାଇ ମନରେ ବିଚାର,
କପାଇଁ ମହାତ୍ମା ଏତେ ନାରଖାର ।

କ୍ଷୀଣ ଅଙ୍ଗେ କେତେ ସହନ୍ତି କଷଣ,
ତେଜି ଧନ, ଜନ, ଅଶନ, ବସନ ।

କାରାଗାରେ ବସି ମାରବେ ଏକାକୀ
ଧ୍ୟାନମଗ୍ନ ଏବେ ମୁଦ ନେତ୍ରଆଖି ।

ମହାତ୍ମା-ସାଧନ, ମହାତ୍ମା-କଷଣ
ନ ଯାଏ ଜଗତେ କେବେ ଅକାରଣ ।"

ପୁରୀ ଜିଲ୍ଲାର ଗୋଟାଏ ଅଞ୍ଚଳରେ ସେତେବେଳେ ଭୟଙ୍କର ଦୁର୍ଭିକ୍ଷ—ଗୋପବନ୍ଧୁ ଯାଇ ଦେଖିଲେ ଉତ୍ତର ଗ୍ରାମର ଦୁର୍ଦ୍ଦଶା, ପୁରୀ ସଦର ଗୋପ, ବାଲିଅନ୍ତା ଓ ବାଣପୁର ଅଞ୍ଚଳରେ ସେଇପରି ଦୁରବସ୍ଥା, ଲୋକମାନେ ଅସ୍ଥି-କଙ୍କାଳସାର । ଗୋପବନ୍ଧୁଙ୍କ ନିମନ୍ତ୍ରଣରେ ମହାତ୍ମା ଗାନ୍ଧି ଓଡ଼ିଶା ଆସିଥିଲେ ଏବଂ ସେଇ କରୁଣ କାତର ଦୃଶ୍ୟ ଦେଖିବାର ସୁଯୋଗ ପାଇ ହୃଦୟର ବ୍ୟାକୁଳତା ପ୍ରକାଶ କରିଥିଲେ—

"I was also taken see the victims of famine. The Skeleton of these hundreds of men and women, boys and girls, more skeletons without any flesh on them, made me very miserable."

Collected Works of Mahatma Gandhi
Vol. XIX PP.515

ଗୋପବନ୍ଧୁ ସେଇକଥା ତାଙ୍କ କବିତାରେ ଗୁନ୍ଥି ଦେଇଛନ୍ତି ଅତ୍ୟନ୍ତ ମର୍ମନ୍ତୁଦ ଭାଷାରେ—

"ମନେ ପଡ଼େ ମୋର, ଯେବେ ସିନ୍ଧୁ କୂଳେ,
ନୀଳାଚଳେ ଗାନ୍ଧି ଥିଲେ ପତ୍ନୀ ଭୂଲେ ।
ଦେଖି ଉତ୍କଳର ଦୁର୍ଭିକ୍ଷ ଆଘାତ,
ପାଇଥିଲେ ହୃଦେ ଗୁରୁତର ଘାତ ।

କେତେ ନରନାରୀ, ବୃଦ୍ଧ, ଯୁବା ବାଳ
(ଅନାହାରେ ଯେହ୍ନ କେବଳ କଙ୍କାଳ)
ଦେଖିଣ ମହାତ୍ମା କାତର ଅନ୍ତରେ
କହିଥିଲେ ମତେ ଦୁଃଖେ ଏକାନ୍ତରେ

ଦେଖି ଏ ଦାରୁଣ ଦୃଶ୍ୟ ହୁଏ ମନ
ଅନଶନେ ଆଜ ତେଜନ୍ତି ଜୀବନ,
ବଞ୍ଚିବାରୁ ବଳ ଦେଖି ଏ ଲକ୍ଷଣ
ଶତ ଗୁଣ ଶ୍ରେୟ ମନେ ମୁଁ ମରଣ ।

ମାତ୍ର ମୋ ପରାଣେ ରହିଛି ଭରସା
ଅଚିରେ ଦେଶର ଘୁଞ୍ଚିବ ଏ ଦଶା ।"

ରେଳଗାଡ଼ି ଚାଲିଛି ତାର ଗତାନୁଗତିକ ଗତିରେ । ଗୋପବନ୍ଧୁ ଦେଖୁଛନ୍ତି କଅଣ ପଛକୁ ଚାଲିଯାଉଛି, ଆଗରେ କଅଣ ଆସୁଛି । ମହାନଦୀ ଡେଇଁଗଲା—ଆଗରେ ବନାଚ୍ଛନ୍ନ ଶୈଳ, ବିଘ୍ନବିନାଶନଙ୍କ ଉଦ୍ଦେଶ୍ୟରେ ପ୍ରଣିପାତକରି ଗୋପବନ୍ଧୁ ତାଙ୍କର କୃପାଭିକ୍ଷା କରିଛନ୍ତି—

"ଆଦ୍ୟେ ତବ ପୂଜା ଶୁଭ ଅନୁଷ୍ଠାନେ,
ଯାଉଛି ଉତ୍କଳ ଛାଡ଼ି ଦୂର ସ୍ଥାନେ ।
କର କୃପା ମୋର ଶୁଭ ହେଉ ପଥ,
କାରାଗାରେ ମୋର ପୂରୁ ମନୋରଥ ।"

ତାପରେ ପଦାର୍ପଣ କେନାପୁର—ବନ୍ୟା ଦୁର୍ଭିକ୍ଷର ନୃତ୍ୟ ଲୀଳା-ଭୂମି । ଦୁଇ ବର୍ଷତଳେ କେନାପୁର ଆସିଥିବା କଥା ଗୋପବନ୍ଧୁ ପ୍ରକାଶ କରିଛନ୍ତି । ସେତେବେଳେ କେନାପୁର ଜଳରେ ବୁଡ଼ିରହିଥିଲା । କେତେ ଗ୍ରାମ, କେତେ ଘର ଏକାବେଳକେ ଛାରଖାର ହୋଇ ଯାଇଥିଲା । କେତେ ଦାଣ୍ଡରେ ପାଣିର ସୁଅ ଚାଲିଥିଲା । କେତେ ନରନାରୀ, ଗାଈ-ଗୋରୁ ଖାଇବାକୁ ନ ପାଇ ମୃତ୍ୟୁମୁଖରେ ପଡ଼ିଥିଲେ । କେବଳ କେନାପୁର କାହିଁକି ? ଚିଲିକା କୂଳରୁ ସୁବର୍ଣ୍ଣରେଖା ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳ ଗୋପବନ୍ଧୁଙ୍କ ଆଖିଆଗରେ ଭାସିଉଠେ ।

କେବଳ ବନ୍ୟା ନୁହେଁ ତା’ ପରେ ଦୁର୍ଭିକ୍ଷ । କେତେ ଗାଁ ଉଚ୍ଛନ୍ନ ପ୍ରାୟ, କେତେ ଗ୍ରାମ ଶୂନ୍ୟ, କେତେ ଘର ଶୂନ୍ୟ । ପ୍ରଜାଲୋକ ଅନ୍ନ ନ ପାଇ ଜୀବନ ହରାଉଛନ୍ତି ।

ସେଇ କେନାପୁର ସହିତ ଗୋପବନ୍ଧୁଙ୍କର ଆତ୍ମିକ ସମ୍ପର୍କ । ବେଦନାର୍ତ୍ତ ଲୋକମାନଙ୍କର ଦୁର୍ଦ୍ଦିନରେ ସେବା ଓ ସାହାଯ୍ୟ କରିବାକୁ ଯାଇ ସେମାନଙ୍କ ମଧ୍ୟରେ ନିଜକୁ ହଜାଇ ଦେଇଥିଲେ । ତେଣୁ ସେ ନିମ୍ନ କେତୋଟି ପଂକ୍ତି କବିତାରେ ନିଜର ଗଭୀର ଆନ୍ତରିକତାର ପରିଚୟ ଦେଇଛନ୍ତି—

“ଛାଡ଼ିବାକୁ ଗାଡ଼ି ଦେଲାଣି ସଂକେତ,
ବାଜେ ଶେଷ ଘଣ୍ଟା, ଉଡ଼େ ନୀଳକେତା ।
ସୁବିଧା ଥିଲେ ମୁଁ ଓହ୍ଲାନ୍ତି ଏଠାରେ
ଦେଖିଯାନ୍ତି କେନାପୁର ଏବେ ବାରେ ।
ବୁଲି ବ୍ରାହ୍ମଣୀର ତୀର ଜନପଦେ
ବିଦାୟ ନିଅନ୍ତି କହି ପଦେ ପଦେ ।
ଦେଖନ୍ତି କିପରି ଅଛନ୍ତି ମୋ ଭାଇ
ଦଇବୀ ମାନୁଷୀ ହାଉ ଧକ୍କା ଖାଇ,
ବ୍ରାହ୍ମଣୀ ବାଲିରେ ସାନ୍ଧ୍ୟ ସମ୍ମିଳନେ
କହିଯାଇଥାନ୍ତି ଥିଲା ଯାହା ମନେ ।”

ତାପରେ ବ୍ରାହ୍ମଣୀ ବକ୍ଷରେ କେନାପୁର ସେତୁ । ବ୍ରାହ୍ମଣୀ ଓ ଖରସ୍ରୋତାର ବନ୍ୟାଜଳରେ ଚଷବାସୀ କପରି ଉଚ୍ଛନ୍ନ ହୁଅନ୍ତି ତାହା ଗୋପବନ୍ଧୁ ପ୍ରାଣେ ପ୍ରାଣେ ଅନୁଭବ କରି ବ୍ରାହ୍ମଣୀକୁ କହନ୍ତି—

"ଖରସ୍ରୋତା ସଙ୍ଗେ କରି ତୁ ମନ୍ତ୍ରଣା,
ଚଷବାସୀ ଜନେ ନ ଦିଅ ଯନ୍ତ୍ରଣା ।
କେନ୍ଦ୍ରାପଡ଼ା ଯାଜପୁର ପ୍ରଜାକୁଳ
କର ନାହିଁ ବନ୍ୟା ବିପ୍ଲବେ ବ୍ୟାକୁଳ ।"

ରେଲଗାଡ଼ି ଭଦ୍ରଖରେ ପହଞ୍ଚିଲା । ଭଦ୍ରଖ ତାଙ୍କର ଅତି ପ୍ରିୟ ସ୍ଥାନ, ପ୍ରିୟ ସ୍ଥାନ କାହିଁକି ? ବନ୍ଦୀ ଜୀବନର ପ୍ରଥମ ସମ୍ମାନ ସେ ପାଇଥିଲେ ଯେଉଁଠି । ଯେଉଁଠି କୌଣସି ଦୁର୍ଦାନ୍ତ ରାୟବାହାଦୁର ଥିଲେ । ତାଙ୍କର ଦପ୍ତରେ ସେ କାରାଦଣ୍ଡ ଲାଭ କରିଥିଲେ । ତାଙ୍କରି ପରି ବହୁତ ମଧ୍ୟ ମାମୁଁ ଘର ଦେଖି ଥିଲେ । ତଥାପି ଭଦ୍ରଖରେ ଅସହଯୋଗର ଆନ୍ଦୋଳନ ଦବିଯାଇ ନଥିଲା

ଜାତୀୟ ଆନ୍ଦୋଳନର ଗୃରଣ କରି ଥିଲେ ବାଞ୍ଛାନିଧି ମହାନ୍ତି । ଭଦ୍ରଖର ସାଳନ୍ଦୀ ନଦୀ କୂଳରେ କୁଆଁଷ ଗ୍ରାମର ବିରାଟ ଆମ୍ର ଉଦ୍ୟାନ ଭିତରେ ସେ କଂଗ୍ରେସ ଆଶ୍ରମ ପ୍ରତିଷ୍ଠା କରି ସହକର୍ମୀ ବନ୍ଧୁମାନଙ୍କ ସହ ଜାତୀୟ ଯଜ୍ଞର ଆୟୋଜନ ଆରମ୍ଭ କରିଥିଲେ । ଗୋପବନ୍ଧୁ ଭଦ୍ରଖର ସାଧକ କର୍ମୀମାନଙ୍କୁ ସ୍ୱାଗତ ଜଣାଇନ୍ତି—

"ଭଦ୍ରଖ କର୍ମୀ ଧନ୍ୟ ତୁମ୍ଭ ବଳ
ଏପରି ସାଧକ ଲୋଡ଼ଇ ଉତ୍କଳ ।
ତେଜି ସବୁ ମାୟା ପରିବାର ଭୋଗ
ସାଳନ୍ଦୀ କୂଳେ ଆରମ୍ଭିଛ ଯୋଗ ।
ମନ୍ତ୍ର ସିଦ୍ଧି ଅବା ଶରୀର ପତନ
ଜାଣେ ମୁଁ କରିଛ ଏହି ମହାପଣ ।"

ପ୍ରେମିକ କମାଇଙ୍କ ସଂସ୍ପର୍ଶରେ, ମହାତ୍ମା ଗାନ୍ଧିଙ୍କର ପ୍ରଭାବରେ ଭଦ୍ରଖ ଉଦ୍‌ବୁଦ୍ଧ । ହିନ୍ଦୁ ଓ ମୁସଲମାନ ଭାଇମାନେ ଏକତାବଦ୍ଧ

ହୋଇ ଆନ୍ଦୋଳନ ଚଳାଉଛନ୍ତି—ତେଣୁ ଗୋପବନ୍ଧୁ ତାଙ୍କ ଉଦ୍ଦେଶ୍ୟରେ ସାଦର ହାର୍ଦ୍ଦିକତା ଢାଳି ଦେଇଛନ୍ତି—

"ଉଦରଖ ଭାଇ ହିନ୍ଦୁ ମୁସଲ୍‌ମାନ
ଜାଣେ ମୁଁ ଧରିଛ ହୃଦେ ବଡ଼ ଟାଣ
କେତେ ପ୍ରଲୋଭନ, କେତେ ପ୍ରତାରଣା
କେତେ ବାଧାବିଘ୍ନ କେତେ ଭତ୍ସନା,
ଏଡ଼ି ଅଛ ସବୁ ନିର୍ଭୀକ ଅନ୍ତରେ
ଚାଲିଅଛ ଦମ୍ଭେ ସ୍ୱରାଜ୍ୟ ପଥରେ ।"

କନିକା ପିବାକୁ ବାଟ ଉଦରଖ—ତେଣୁ ଗୋପବନ୍ଧୁ ଉଦରଖ ଭାଇମାନଙ୍କ ନିକଟରେ କନିକାର ଦୁଃଖ ବ୍ୟଥା ପରିବେଷଣ କରିଛନ୍ତି ଏବଂ ସେଥିପ୍ରତି ସମ୍ବେଦନଶୀଳ ହେବାକୁ ଅନୁରୋଧ କରନ୍ତି—

ଜାଣିଛ, ଶୁଣିଛ ସବୁ ବଜ୍ରପାତ
ପଟ୍ଟରାଣୀ ସେନେହେ ସହୁଛ ଆଘାତ ।
ଶାସିତ କନିକା ପ୍ରଜା ପ୍ରତି ସଦା
ରଖିଥିବ ଭାଇ ସୋଦର-ଶରଧା ।

ଗୋପବନ୍ଧୁ ଏତିକରେ ତାଙ୍କର କର୍ତ୍ତବ୍ୟ ଶେଷ କରି ଦେଇ ନାହାନ୍ତି । ଯଦି ତାଙ୍କର ବିହଙ୍ଗମ ପକ୍ଷ ଥା'ନ୍ତା ତେବେ ସେ ଉଡ଼ିଯାଇ ନିଜେ ଦେଖି ଆସିଥାନ୍ତେ ।

ଉଇଲିୟମ କାଉପରଙ୍କର ଆଲେକ୍‌ଜାଣ୍ଡର ନିର୍ବାସିତ ହୋଇ କହିଛନ୍ତି—

Soceity, friendship and love,
Devinely bestowed upon man,
Oh, had the wings of a dove
How soon would I taste you again.

ଉଇଲିୟମ ଓ୍ୱାର୍ଡ୍‌ସଓ୍ୱାର୍ଥ ମନେ କରିଛନ୍ତି ପକ୍ଷ ଥିଲେ ସେ କୋକିଳ ସାଥିରେ ଯାଇ ପୃଥିବୀ ପରିକ୍ରମା କରିପାରନ୍ତେ—

ମାତ୍ର; ଆମ ଦରିଦ୍ର ଦେଶର କବି ଗୋପବନ୍ଧୁ କ'ଣ ଦେଖିବାକୁ ପାଇଁଛନ୍ତି—

"ଉଡ଼ିଯାଇ ଦେଖି ଆସିଥାନ୍ତି ଥରେ,
କନିକା ପ୍ରଜାଙ୍କୁ ଶକ୍ତ ଭଙ୍ଗାଘରେ ।
ଆଉଁସି ପିଠିରୁ ହାତର ପରସ,
ଦେଇ ଯାଇଥାନ୍ତି ପରାଣେ ଆଶ୍ୱାସ ।

ଘରର ଦ୍ୱାରର ସର ସନ୍ନିଧାନେ,
ମଲେ ପ୍ରଜା ଦେବ ଯହିଁ ଅସ୍ଥି ଦାନେ ।
ନିଶ୍ୱାସ ନିର୍ଘୋଷ ଚର୍ବନ ଶୋଣିତ,
କରିଛି କନିକା ଭୂମି ଯହିଁ ସିକ୍ତ ।

ସେ ଶୁଦ୍ଧ ମୃତ୍ତିକା ଲଗାଇ ମୁଁ ଶିରେ
ତେଜ ନେଇମାର ସରୋବର ତୀରେ
ଲଭି ଥାନ୍ତି ଥରେ ଅନ୍ତରେ ସାନ୍ତ୍ୱନା,
ଅପୂର୍ଣ୍ଣ ରହିଲା ଆହା ଏ ବାସନା ।

ଗୋପବନ୍ଧୁ ଆଉ ଏକ ଅବଶୋଷର କଥା ଉତ୍ଥାପନ କରିଛନ୍ତି; କନିକାଭାଇମାନେ ସେଠାକୁ ଯିବାକୁ ଗୋପବନ୍ଧୁଙ୍କୁ ଜଣାଇଥିଲେ । ମାତ୍ର ସେ ଯାଇ ପାରି ନ ଥିଲେ । ଥରେ ଯାଇଥିଲେ ରାଜନିମନ୍ତ୍ରଣରେ । ମନରେ ଅବଶୋଷ ଯଥାସମୟରେ ସେ ଯାଇଥିଲେ ପ୍ରଜାମାନଙ୍କ ଉପରେ ଅମାନୁଷିକ ଅତ୍ୟାଚାର ହୋଇ ପାରି ନଥାନ୍ତା; କନିକାକୁ ସେ ଛାଡ଼ି ପାରୁ ନାହାନ୍ତି— ସତେ ଯେପରି ସେ ସେଠି ପହଞ୍ଚି ଯାଇଛନ୍ତି—

"ଏହି ସେ କନିକା ! ଆସିଛି ମୁଁ ଉଡ଼ି
କି ଦାରୁଣ ଦୃଶ୍ୟ ଯାଏ ଚେତା ବୁଡ଼ି ।
ଯମଦୂତ ପ୍ରାୟେ କ୍ରୂର ରାଜଥାଟ
ବୁଲନ୍ତି ରୌଦ୍ରେ ଗ୍ରାମବାଟ ହାଟ
ଲୁଟନ୍ତି ପରଜା-ଘର, ବାଡ଼ି ଖେତ
ମାରନ୍ତି ଗୁପୁଡ଼ା, କାହାକୁ ବା ବେତ ।

କୁଳାଙ୍ଗନା ପରେ ଘୋର ଆକ୍ରମଣ
ବିକଳେ ବିଧୁରା କରଇ କ୍ରନ୍ଦନ ।
କନକାର ରାଜଧାନୀ ଚଉପାଶେ
ପ୍ରେତ ଆତ୍ମା ଯେବେ ଉଡ଼ଇ ଆକାଶେ ।

ବନ୍ଧୁ ବନ୍ଧୁ ରକ୍ତ ପଡ଼େ ତହୁଁ ତଳେ
ସେ ରକ୍ତେ ଭୀଷଣ ଅଗ୍ନିଶିଖା ଜଳେ ।
ସିଞ୍ଚି ସିଞ୍ଚି ଶୁଖେ ଗଙ୍ଗାନଦୀ ଜଳ
ନ ଲିଭେ ପ୍ରବଳ ଜଳେ ସେ ଅନଳ ।

ଶୁଭେ ଚଉଦିଗେ କାତର ଚିତ୍କାର
ପଳାଏ ପରଜା ଛାଡ଼ି ଘରଦ୍ୱାର ।
ପଥେ ଗର୍ଭିଣୀର ଭୟେ ଗର୍ଭସ୍ରାବ,
ଉଠଇ ଗୋଗୋଷ୍ଠେ ବିକଟାଳ ରବ ।

ମହା ବିପର୍ଯ୍ୟୟ, ମହା ବିଭୀଷିକା
କମ୍ପେ ମହାତଙ୍କେ ଦୁଃଖିନୀ କନକା ।
ବହେ ଅଣଗୁଣ ଝଡ଼ ଝଞ୍ଜା ବାତ
ଏ କି ଭୟଙ୍କର ଅଦ୍ଭୁତ ଉତ୍ପାତ ।"

ଗୋପବନ୍ଧୁ କନକାଠାରୁ ଦୂରକୁ ଚାଲି ଯାଉଛନ୍ତି । କନକା ପାଖରେ ଯେଉଁମାନେ ସର୍ବଦା ରହୁଛନ୍ତି ସେମାନଙ୍କୁ ସେ ଆଉଥରେ ମାଗୁଣି କରି ଯାଇଛନ୍ତି—

"ଥାଅ ଗୋ ପାଳନ୍ଦୀ, ଥାଅ ଭଦରଖ
ଦୁଃଖିନୀ କନକାଠାରେ ସ୍ନେହ ରଖ ।

ଯିଏ ଦୁଃଖ ନିର୍ଯ୍ୟାତନା ସହି ସହି ବଞ୍ଚି ରହିଛନ୍ତି, ସେହି କନକା-ବାସୀଙ୍କୁ ଗୋପବନ୍ଧୁ ଗଭୀର ସମବ୍ୟଥା ଦେଇ କହୁଛନ୍ତି—

ହେ କନକାବାସୀ, ରଖ ଏ ବିଶ୍ୱାସ ।
ସେ ଉଷ୍ଣ ନିଶ୍ୱାସ ଅଶ୍ରୁ ବିସର୍ଜନ
ସେ ଦାରୁଣ ନାଦ ପ୍ରାଣ ପ୍ରକମ୍ପନ ।

ଲୁହେ ନିରର୍ଥକ, ନ ଯାଏ ବିଫଳ
ହୁଏ ସେ ଲୋତକେ ହିମାଚଳ ଜଳ ।
ସେ ନାଦେ କମ୍ପଇ ସ୍ୱର୍ଗ ସିଂହାସନ
ଶୀତଳ ସେ ଉଷ୍ମ ଶ୍ୱାସେ ହୁତାଶନ ।
ସେ ପ୍ରାଣ ପ୍ରକଂପେ କଂପେ ବସୁମତୀ
କାଳ ଚକ୍ରଣ୍ଠର ଏ ଖ୍ୟମ ଶକତି ।
ପ୍ରପୀଡ଼ିତ ପ୍ରଜା ହୃଦୟ ନିଃସାର
ସଞ୍ଚେ ସାବଧାନେ କାଳ ବଳୀୟାର ।

ଯିଏ ଅତ୍ୟାଚାରୀ, ସେ ଅତ୍ୟାଚାରିତର ତତଲ ନିଃଶ୍ୱାସରେ ଭସ୍ମ ହୋଇଯାଏ···ଋକ୍ ବେଦର ୮।୧୮ର ୧୩ ସୂକ୍ତରେ ଅଛି—ଯେ କେହି ମଣିଷ ନିଜର ହିଂସ୍ର ଓ କୁ-ସ୍ୱଭାବ ଦ୍ୱାରା ଆମକୁ ପୀଡ଼ିତ, ବ୍ୟଥିତ ବା ଦୁଃଖିତ କରିବାକୁ ଚାହେଁ, ସେହି ପାପୀ ନିଜର ହିଁ କୁକର୍ମ ବା ଦୁର୍ଗୁଣ ଦ୍ୱାରା ବିନଷ୍ଟ ହୁଏ ।

ଯୋ ନଃ କଶ୍ଚିଦ୍ରିରିକ୍ଷତି ରକ୍ଷସ୍ତ୍ୱେନ ମର୍ତ୍ତ୍ୟଃ ।
ସ୍ୱୈ ଷ ଏବୈ ରିରିଷୀଷ୍ଟ ଯୁର୍ଜନଃ

କବି କବୀରଙ୍କ ଗୋଟିଏ ପଦରେ ଅଛି—କମାରର ଶୁଖିଲା-ଚମଡ଼ାର ଭାତିରେ ଚାପ ଦେଲେ, ତା ଭିତରୁ ହାହା ପବନ ବାହାରେ, ଏବଂ ତାହା ଲୁହାକୁ ଭସ୍ମ କରେ, ସେଇପରି ମଣିଷ ଏକ କଞ୍ଚା ଚମଡ଼ା ତାକୁ ଚାପଦେଲେ ତହିଁରୁ ହାୟ ହାୟ ଧ୍ୱନି ବାହାରିବ—ତାହା କଅଣ ଭସ୍ମ ନ କରିବ ?

"ମତ୍ ସଁତାଓ ଗରିବକୁ
ଗରିବ ନ କରେ ହାୟ
ଶୁଖେ ଚମଡ଼େକୋ ବେସାଦ କଆ
ଲୋହା ବି ଭସ୍ମ ହୋ ଯାୟ ।"

ଉନ୍ମୁକ୍ତ ପବନରେ, ଉନ୍ମୁକ୍ତ ଆକାଶରେ ପକ୍ଷୀ ସ୍ୱାଧୀନ ଭାବରେ ବିଚରଣ କରୁଛି । ବନରେ ଜୀବଜନ୍ତୁ ସ୍ୱଚ୍ଛନ୍ଦ ବିହାର କରୁଛନ୍ତି ।

ମୀନ, ମକର, କୁମ୍ଭୀର ଜଳରେ ଲୀଳାଖେଳା କରୁଛନ୍ତି; ମାତ୍ର ଗୋପବନ୍ଧୁଙ୍କ ଦୃଷ୍ଟିରେ ଭାରତରେ ମଣିଷ ପରାଧୀନ ।

"ଭାରତେ କେବଳ ନର ଜନ୍ତୁ ହୀନ
ନୁହେ ସେ ସ୍ୱଚ୍ଛନ୍ଦ, ନୁହେ ସେ ସ୍ୱାଧୀନ ।
ନାହିଁ ଉଦରଲେ କାହିଁ ତାର ସ୍ଥାନ
ସର୍ବସ୍ୱ ତାଡ଼ନା ଘୋର ଅପମାନ ।
ନିଜ ବାସେ ତାର ନାହିଁ ହେଲେ ଶାନ୍ତି
ଭୋଗଇ ଗଞ୍ଜଣା କାହିଁ କେତେ ଭ୍ରାନ୍ତି ।
ଭାରତ ସନ୍ତାନ ଘୃଣ୍ୟ ଉପେକ୍ଷିତ,
ଭାରତ ଭାରତୀ ଶୃଙ୍ଖଳା ପିହିତ ।
ଭାରତ ବିଭବେ ଅପର ବିଳାସୀ
ଭାରତ ନିବାସୀ ଚିର ଉପବାସୀ ।"

ସେଥିପାଇଁ ଗୋପବନ୍ଧୁ ସମସ୍ତ ଦେବଦେବୀଙ୍କୁ ପଚାରୁଛନ୍ତି— ନୀଳାଚଳରେ ତ ସଭା ହେଉଥିବ; ସେଠି ଏ ଦେଶଦୁର୍ଗତିର କଥା ପଡ଼େ କି ନାହିଁ ? ଦେଶରେ ଦୁର୍ବିଷହ ପରିସ୍ଥିତିର ଆଶୁ ପ୍ରତିକାର ପାଇଁ ତାଙ୍କର ନିବେଦନ—

"କରୁଣା କଟାକ୍ଷେ ଚାହାନ୍ତୁ ସେ ବାରେ
ବାଜିବ ସ୍ୱରାଜ ଶଙ୍ଖ ସିଂହଦ୍ୱାରେ ।
ଉଡ଼ିବ ଅମ୍ବରେ ସ୍ୱରାଜ୍ୟ କେତନ
ପ୍ରତିଷ୍ଠିତ ହେବ ସ୍ୱରାଜ୍ୟ ଶାସନ ।

ପରାଧୀନ ଦେଶର ମୁକ୍ତି ପାଇଁ ଯେଉଁ ଗୋପବନ୍ଧୁ ସରକାର ବିରୁଦ୍ଧରେ ସଂଗ୍ରାମ କରୁଥିଲେ । ସେଥିପାଇଁ କଠିନ କଠୋର କାରାଦଣ୍ଡ ଭୋଗ କରୁଥିଲେ, ତାଙ୍କର ଶେଷ ସ୍ୱପ୍ନ ତେବେ କ'ଣ ? କାରାରୁ ମୁକ୍ତି ନା ଦେଶର । ମୁକ୍ତ ଦେଶର ସେଇ ମୁକ୍ତିର ଜୟଗାନ କରି ତାଙ୍କର 'ବନ୍ଦୀର ଆତ୍ମକଥା' କାବ୍ୟର ଉପସଂହାର କରିଛନ୍ତି ।

"ବନ୍ଦୀର ଆତ୍ମକଥା" ଆମର ସ୍ୱରାଜ୍ୟ ଗୀତା ଓ ଜାତୀୟ ଜୀବନର ମହାକାବ୍ୟ ।

# ଧର୍ମପଦ

ଗୋପବନ୍ଧୁଙ୍କ ଅନ୍ୟାନ୍ୟ କାବ୍ୟ-କବିତାକୁ ସୂକ୍ଷ୍ମଭାବରେ ଅନୁଧ୍ୟାନ କଲେ ସ୍ପଷ୍ଟ ଜାଣି ହେବ, "ଧର୍ମପଦ" ଭାବଧାରାରେ, ଭାଷା ଓ ଶୈଳୀରେ ତାହାଁରୁ ଏକ ସ୍ୱାତନ୍ତ୍ର୍ୟଶୀଳ ବ୍ୟତିକ୍ରମ । ଧର୍ମପଦ ଖଣ୍ଡିଏ ଗାଥା-କାବ୍ୟ । ଦେଶ ପାଇଁ, ଜାତିପାଇଁ, ପ୍ରାଣବଳି ଦେବା ତାର କଥା-ବସ୍ତୁ । "ବାରଣ' ବଢ଼େଇରେ ଦାଣ୍ଡ ଓ ପୁଅରେ ଦାଣ୍ଡ" କିମ୍ବଦନ୍ତୀ ଉପରେ ଏହି ଖଣ୍ଡକାବ୍ୟ ଖଣ୍ଡି ରଚିତ ।

ପାଶ୍ଚାତ୍ୟ ଜଗତର ଏମିକରୁ ଆଉ ଜଣଙ୍କ କଥା ସ୍ୱତଃ ଦୃଷ୍ଟି-ପଥରେ ଉଦ୍ଭାସିତ ହୋଇଉଠେ । ତାର ନାମ (Iphigenia) ଇଫିଜେନିଆ —ସେ ଜଣେ ସୁବତୀ ଶହୀଦ୍ ।

ଗ୍ରୀକ୍ ସେନାପତି ଆଗାମେମନନ୍ (Agamemnon) ଟ୍ରୟ ଅଭିଯାନରେ ସେନାପତି ହୋଇଛନ୍ତି । ଗ୍ରୀକ୍ ବାହିନୀ ଆଉଲିସ୍ (Aulis)ରେ ଶିବିର ସ୍ଥାପନା କରିଛନ୍ତି । ଅଯଥା ବିଳମ୍ବ ସୈନ୍ୟ-ମାନଙ୍କର ମନରେ ଆଣିଛି ଦୁର୍ବିଷହ ବୈଚଳ୍ୟତା । କାଲକାସ୍ (Calchas) ବଜ୍ରବାଣୀ ଶୁଣାଇ ଦେଇଛନ୍ତି—ଯଦି ଆଗାମେମନନ୍ ତାଙ୍କର କନ୍ୟାକୁ ଆର୍ଟେମିସ୍ (Artemis)ଙ୍କ ନିକଟରେ ବଳିଦେବେ ତେବେ ଅନୁକୂଳ ବାୟୁ ପ୍ରବାହିତ ହେବ—ଗ୍ରୀକ୍ ପୋତସମୂହ ଟ୍ରୟୀ ବେଳାଭୂମିରେ ନିର୍ବିଘ୍ନରେ ପହଞ୍ଚିପାରିବ । ପ୍ରଥମେ ଆଗାମେମନନ୍ଙ୍କର ପିତୃହୃଦୟ କୁଣ୍ଠିତ ହୋଇଛି କନ୍ୟାର ଆତତାୟୀ ହେବାକୁ । ଭାଇ ମେନେଲସ୍ (Menelaus)ଙ୍କ ଅନୁରୋଧ ଏଡ଼ି ନ ପାରି, ଗ୍ରୀକ୍-ବାହିନୀର ବିଦ୍ରୋହ ଆଶଙ୍କା କରି ଦେଇଛନ୍ତି ସକୁଣ୍ଠ ସମ୍ମତି । ତାଙ୍କର ପତ୍ନୀ କ୍ଲାଇଟେମେଷ୍ଟ୍ରା (Clytemenestra)ଙ୍କ ନିକଟକୁ ଲେଖିଛନ୍ତି ଏକ ପତ୍ର—

ଆକିଲେସ୍ (Achilles)ଙ୍କ ସହିତ ତାଙ୍କ କନ୍ୟା ଇଫିଜେନିଆର ବିବାହ କଥା ପତ୍ରରେ ଉଲ୍ଲିଖିତ—ପୁଣି ତାଙ୍କର ମନରେ ଆସିଛି, କିନ୍ତୁ—ପତ୍ର ଲେଖିଛନ୍ତି ନ ଆସିବା ପାଇଁ—ତାହା ପହଞ୍ଚିବା ପୂର୍ବରୁ ଜନନୀ ଓ

କନ୍ୟା ଆଉଲିଣ୍ଟରେ ଆସି ଉପସ୍ଥିତ, ଜଣାଯାଇଛି ବିଗ୍ରହେବା କଥା ସତ୍ୟ ନୁହେ, ଦେଶପାଇଁ ବଳିପଡ଼ିବା ସତ୍ୟ । ଶେଷରେ ଇଫିଜିନିଆ ଦେଶ ପାଇଁ, ଜାତି ପାଇଁ ପ୍ରାଣବଳି ଦେବାର ସଂକଳ୍ପରେ ସ୍ଥିର, ଅଟଳ । ସ୍ଥାନାନ୍ତରରେ ଇଫିଜିନିଆର ବିନିମୟରେ ଏକ ହରିଣର ବଳି-ପଡ଼ିବା କଥାର ଉଲ୍ଲେଖ ଥିଲେ ସୁଦ୍ଧା ଇଫିଜିନିଆ ଆତ୍ମବଳି ଦେଇଛି ଦେଶର ସେଇ ସଙ୍କଟ-ସଙ୍କୁଳ ମୁହୂର୍ତ୍ତରେ ।

ଧର୍ମପଦକୁ ତାର ଜାତିଭାଇମାନେ ଦେଉଳ ଉପରୁ ସମୁଦ୍ରକୁ ଗଡ଼ାଇ ଦେବା ବିଷୟ କମ୍ବଦନ୍ତୀରେ ଥିଲେ ସୁଦ୍ଧା ଗୋପବନ୍ଧୁଙ୍କ ଲେଖାରେ ଧର୍ମପଦ ନିଜେ ଦେଉଳରୁ ମୃତ୍ୟୁର କରାଳ ସମୁଦ୍ରକୁ ଡେଇଁ-ପଡ଼ିଛି । ଏକ ଉତ୍କୃଷ୍ଟ ଚରିତ୍ର ।

ଇଫିଜିନିଆର ସେଇ ଆତ୍ମୋତ୍ସର୍ଗ ସହିତ ଧର୍ମପଦର ଆତ୍ମୋତ୍ସର୍ଗ ସମଧର୍ମୀ ।

"ବାଲ୍ୟକାଳରୁ କବି ହେବାର ବାସନା ମୋର ବଳବତୀ ଥିଲା । ବାଲ୍ୟ ସହଜ ଉଦ୍ୟମରେ ମଧ୍ୟ ସେଆଡ଼େ କିଛି କରିଥିଲି । ମାତ୍ର ଘଟଣା ତରଙ୍ଗରେ ଇତସ୍ତତଃ ବିକ୍ଷିପ୍ତ ହୋଇ ଚିରଦିନ ପାଇଁ ସେ ଆଶା ମରିଯାଇଛି । ଧର୍ମପଦ ସେ ଆଶାର ଅଙ୍କୁର ନୁହେଁ, ଏହା ବିକ୍ଷିପ୍ତ ହୃଦୟର ସାମୟିକ ସ୍ପନ୍ଦନ ମାତ୍ର । ବନ୍ଦୀଶାଳର ନିର୍ଜନ ପ୍ରକୋଷ୍ଠରେ ଏକ ସନ୍ଧ୍ୟାରୁ ତହିଁ ଆରଦିନ ସକାଳ ପର୍ଯ୍ୟନ୍ତ ଏକାକୀ ଆବଦ୍ଧ ହୋଇ ଅନେକ ସମୟରେ ଉନ୍ନିଦ୍ରାବସ୍ଥାରେ ଯେ ସବୁ ଚିନ୍ତା ମନକୁ ଆସୁଥିଲା "ଧର୍ମପଦ" ତହିଁରୁ ଅନ୍ୟତମ । ଦେଶ ଓ ଦଶ ନିମନ୍ତେ ଆତ୍ମୋତ୍ସର୍ଗରେ କି ସୁଖ ଓ ଗୌରବ ଅଛି, ଉତ୍କଳର ଚିର କଥିତ ଏହି କମ୍ବଦନ୍ତୀରେ ତାହା ସୁସ୍ପଷ୍ଟ ବିବୃତ ହୋଇଅଛି ।"

'ଭୂମିକା'ରେ କବି ଗୋପବନ୍ଧୁ ଧର୍ମପଦ ରଚନା କରିବାର ଭୂମିକା ଦେଇଛନ୍ତି···'କାରାକବିତା' ଓ 'ବନ୍ଦୀର ଆତ୍ମକଥା' ହଜାରିବାଗର ଜେଲ୍ ଜୀବନ ଭିତରେ ସେ ଯେପରି ପ୍ରଣୟନ କରିଛନ୍ତି ସେଇ କାରା ରାତିମାନଙ୍କରେ 'ଧର୍ମପଦ'ର ଜନ୍ମ ବୋଲି ମଧ୍ୟ ସମ୍ଭାବ

ଦେଇଛନ୍ତି । କି ଦିନ, କି ରାତିରେ ଅବରୁଦ୍ଧ କାରାକକ୍ଷରେ ତାଙ୍କର ଅବିଶ୍ରାନ୍ତ ଚିନ୍ତା ଥିଲା, 'ମୋ ଦେଶ' ଓ ମୋ ଜାତି । ତେଣୁ କାରା-ଜୀବନର ଦୁଃଖ କ୍ଲେଶ ଭିତରେ କାବ୍ୟାନନ୍ଦର ସ୍ୱପ୍ନ ଦେଖି ପାରିଥିଲେ । ତେଣୁ ମୃତ୍ୟୁର ଅନ୍ଧକାରରେ ଜୀବନର ଜ୍ୟୋତି ଆବିଷ୍କାର କରି ଧର୍ମପଦର ମୃତ୍ୟୁବରଣକୁ ତାଙ୍କର କାବ୍ୟର ଉପାଦାନ ଭାବରେ ବାଛି ନେଇଛନ୍ତି ।

ବାର ବରଷର ବାଳୁତ ପୁଅ ସେ
ବୁଦ୍ଧିବନ୍ତ ସୁକୁମାର;
ଦେଖିନାହିଁ କିବା ଶୁଣିନାହିଁ କେବେ
କିଏ ସେ ବାପା ତାହାର ।

ଜନମି କୋଳରେ ବଢ଼ିଛି ଖେଳରେ
ଆଜନମୁଁ ଅତିସୁଖେ,
ମଅ ବୋଲି କେବେ ମାତୃକି ବୋଲିବା
ଆଣି ନାହିଁ ହେଲେ ମୁଖେ ।

ବାରବର୍ଷର ବାଳୁତଟିଏ—ବାପାଙ୍କୁ ସ୍ୱଚକ୍ଷୁରେ ଦେଖି ନାହିଁ—ବାପାଙ୍କ ବିଷୟରେ କିଛି ଜାଣି ନାହିଁ—କାରଣ ଧର୍ମପଦ ମାତୃଗର୍ଭରେ ରହିବାର ଚାରି ମାସ ବେଳୁଁ ବାପା କୋଣାର୍କ ଦେଉଳ ନିର୍ମାଣ କାର୍ଯ୍ୟ ପାଇଁ ରାଜାଜ୍ଞା ପାଇଥିଲେ । ତେଣୁ ବାପାଙ୍କ ଅଜାଣତରେ ତାର ଜନ୍ମ । ମା'ଙ୍କ କୋଳରେ ବଢ଼ିଛି—ସୁକୁମାର ହେଲେ ସେ ବୁଦ୍ଧିମନ୍ତ । ସେଇ ଧର୍ମପଦ ହୋଇଛି ମୃତ୍ୟୁଞ୍ଜୟ । ଧର୍ମପଦ ଗୋପବନ୍ଧୁଙ୍କ କାବ୍ୟର "ହିରୋ" ।

ଧର୍ମପଦ ବନ୍ଧୁ ସାହିଆଳିରୁ ଫେରିଛି—ମୁହଁରେ କଥା ନାହିଁ—ଆଖି ଥିର ଥିର—ଭ୍ରୂଯୁଗ କାନ୍ଦ କାନ୍ଦ—ତାଙ୍କର କୁଳଚନ୍ଦ୍ରମାକୁ କିଏ କଅଣ କହିଛି ଅବା କରିଛି—ସାଙ୍ଗେ ସାଙ୍ଗେ ପଚାରିଛନ୍ତି ତାଙ୍କର କୁଳଚନ୍ଦ୍ରମାକୁ ।

ଦେଇଛନ୍ତି ଦଣ୍ଡ   ଅବଧାନେ ଅବା
ଗାଳିଦେଲେ ଆନ ଛାତ୍ରେ,
ଗାଳିମାନ କରି   କିଏ ବା କହିଲା
କିବା ଦାଣ୍ଡେ ଅବା ହାଟେ ।

ଆଶ୍ୱସନା ପାଇଁ ପୁଅ କନ କନ ହୋଇ ପ୍ରଶ୍ନ କରଛି—
"ଆମରି କୁଳ କ'ଣ ?
କିଏ ମୋର ବାପ ?"

ମା ସ୍ତମ୍ଭୀଭୂତ ହୋଇ ଯାଇଛି—କେବେ ତ ପୁଅ ଇମିତି ପଚାରି ନାହିଁ । ଆଜି କଅଣ—କାହିଁକି ପଚାରୁଛି ! ଟିକିଏ ବୁଝେଇ କହିବାକୁ

କହେ ପୁଅ—"ଆଜି   ଗୁହାଳିରେ ଛାତ୍ରେ
କହିଲେ ମତେ ଯେ କଥା,
ଲାଜ ଅପମାନେ   ଗଲି ମୁହିଁ ସଡ଼ି
ଟେକି ନ ପାରିଲି ମଥା ।

ଗୁହାଳିରେ ଯେବେ   ଲେଖୁଥିଲି ପାଠ
ଗୋଟାଳି ମୋ ଗଲା ଗଡ଼ି,
ନିକଟ ପିଲାକୁ   କହିଲି, ହେ ଭାଇ
ବଢ଼ାଇ ଦିଅ ସେ ଖଡ଼ି ।

ମୋ କଥାରେ ସେ ତ   ଦେଲାନାହିଁ ଖଡ଼ି
କହି କଲା ଉପହାସ,
ଭାଇ ଡାକ ଆଜ୍ଞା   ଦିଏ ଅବାଗୁଆ
ଏହାର କେଡ଼େ ସାହାସ ?
ନ କହିଣ କିଛି   ଅଳପେ ହସିଲେ
ତହିଁ ଆନ ପିଲାମାନେ,
ଲାଜେ ମଥା ପୋତି   ଗୋଟାଳି ଉଠାଇ
ଆଣି ବସିଲି ମୋ ଥାନେ ।"

ରାଗରେ ଜନନୀ ଉତ୍ତର ଦେଉଛନ୍ତି—

ତା'ମା ଏତେ ସସ୍ତା ?          ମୋ ଧୂଅକୁ ପୁଣି
କହେ ସେ ଅଣବାବୁଆ !

ପୁଣି
ତା କଥାରେ ଛଳ          କରି କବା ଫଳ
ସେ କି ତ ଅଜ୍ଞାନ ଛୁଆ !

ପୁଅକୁ ବହୁତ ବୁଝାଇ କହୁଛନ୍ତି—ବିଶ୍ୱକର୍ମାଙ୍କ ବଂଶରେ ଆମର ଜନ୍ମ—ଆମେ ଦେଶର ଶିଳ୍ପୀ, କାରିଗର । ଇନ୍ଦ୍ରଦ୍ୟୁମ୍ନ ରାଜା ଯେତେବେଳେ ଶ୍ରୀକ୍ଷେତ୍ରରେ ଶ୍ରୀମନ୍ଦିର ତୋଳାଇଥିଲେ ସେତେବେଳେ ବହୁତ ଶିଳ୍ପୀ କାରିଗର ସେଠି କାମ କରିଥିଲେ; ମାତ୍ର ତୋ ବଡ଼ବଡ଼ୁଏ ଯୋଗ୍ୟତା ଦେଖାଇ ଶିରପା ପାଇଥିଲେ, ଯଯାତି ପୁଣି ଯେତେବେଳେ ପୁଣି ମନ୍ଦିର ସଂସ୍କାର କରାଇଲେ, ଅନଙ୍ଗ ଭୀମ ଯେତେବେଳେ ମନ୍ଦିର ନିର୍ମାଣ କରାଇଲେ ସେତେବେଳେ ମଧ୍ୟ ତୋର ପୂର୍ବପୁରୁଷ ସେଠାରେ କାର୍ଯ୍ୟ କରି ନାମ ରଖିଥିଲେ । ତୋର ବଂଶର ଲୋକେ ଖଣ୍ଡଗିରିରେ ଗୁମ୍ଫା ତିଆରି କରିଥିଲେ—ଯେଉଁଠି ଖାରବେଳ ଅନୁଶାସନ ଖୋଦିତ ହୋଇ ରହିଛି, ଯଯାତି କେଶରୀ ବୈତରଣୀ କୂଳରେ ମହାଯଜ୍ଞ କରାଇଥିଲେ—ବରଦେଇ ଆବିର୍ଭୂତ ହେଲେ—ସେଠି ସପ୍ତମାତୃକା ମୂର୍ତ୍ତି କରିଥିଲେ ତୋର ପୂର୍ବପୁରୁଷ, ଭୁବନେଶ୍ୱରରେ ଲିଙ୍ଗରାଜମନ୍ଦିର ମଧ୍ୟ ।

ବାରବାଟୀ ଦୁର୍ଗ ମରାମତି ପାଇଁ ଶଶୁରେ କଟକ ଯାଇଥିଲେ, ସେ'ଠି ରହିଲେ ବହୁତ ଦିନ—ଆଉ ସେ କଟକରୁ ବାହୁଡ଼ି ନାହାନ୍ତି—ଶାଶୁ ଝୁରି ଝୁରି ମଲେ—ତୋର ବାପ ସେଇପରି ରାଜାଜ୍ଞା ପାଇ ଯାଇଛନ୍ତି କୋଣାର୍କ-ସୂର୍ଯ୍ୟମନ୍ଦିର ତିଆରିରେ ଲାଗିଛନ୍ତି—ମୋ ଦେହରୁ ରକତ ଶୁଖିଛି—ଜୀବନର ଆଶା ନାହିଁ, କେବଳ ତୋ ମୁହଁକୁ ଚାହିଁ ବାପ, ଏ ଜୀବନ ରଖିଛି—

ତାପରେ ପୁତ୍ର ବାହାରିଛି ପିତାଙ୍କର ସନ୍ଧାନରେ, ମାତାର କୌଣସି ବାରଣ ସେ ମାନି ନାହିଁ—ସାଙ୍ଗରେ ସାଥି ଘରର ବଳିଆ କୁକୁର—କାନ୍ଧରେ ଘରର କଣ୍ଟି କୋଳି ।

ଆଗ୍ରହରେ, ନିର୍ବେଗରେ ଧର୍ମପଦ ପଥ ଅତିକ୍ରମ କରି ଉପସ୍ଥିତ ହୋଇଛି କୋଣାର୍କରେ—ଯେଉଁଠି ବାରଶହ ବଢ଼େଇ ଦେଉଳ ତିଆରି କାମରେ ଲାଗି ପଡ଼ିଛନ୍ତି । ପିତାଙ୍କୁ ସ୍ୱଚକ୍ଷୁରେ କେବେ ଦେଖି ନାହିଁ—ତେଣୁ ସେ ଗୋଟାଏ ବୁଦ୍ଧି କରିଛି—କୋଳ ବନି ବାହାନାରେ ଘୂରି ବୁଲିଛି—ହଠାତ୍ ତାର ପିତା ଚିହ୍ନିପାରିଛନ୍ତି ତାଙ୍କ ନିଜ ଘରର କୋଳ ଓ ବଳିଆ କୁକୁରକୁ । ମନର କେଉଁ ନୈସର୍ଗିକ ଭାବରୁ···ଧର୍ମପଦକୁ ମନେକରିଛି ନିଜର ପିଲା ବୋଲି ।

ପିତା ପୁତ୍ରର ପରିଚୟ ହୁଏ – ପିତା କହନ୍ତି—ପଅରଦିନ ସକାଳେ—ରାଜାଙ୍କର ଆଜ୍ଞା—ଦେଉଳ ମୁଣ୍ଡି ମରା ନ ହେଲେ ବାରଶ' ବଢ଼େଇଙ୍କର ମୁଣ୍ଡକାଟ, ତେଣୁ ସମସ୍ତଙ୍କର ପ୍ରାଣରେ ଆତଙ୍କ—ମୃତ୍ୟୁର ଆସନ୍ନ ଛାୟା । ପିତା ଓ ପୁତ୍ରର ମିଳନ ସଙ୍ଗେ ସଙ୍ଗେ ଚିର ବିଚ୍ଛେଦର ଏକ ମହାନ୍ ଆତଙ୍କ ।

ଧର୍ମପଦ ଯାଇ ଦେଖା ଦେଖି କରିଛି, ଦେଉଳର ମୁଣ୍ଡି ମାରି ଦେବା ପାଇଁ ଠିକ୍ କରିଛି, ପିତାଙ୍କୁ କହିଛି କିନ୍ତୁ, ସେ ସଂବାଦ ରାଜାଙ୍କର କର୍ଣ୍ଣଗୋଚର ହେଲେ ପୁଣି ତ ସେଇ ପରିଣାମ—ବାରଶ' ବଢ଼େଇଙ୍କର ମୁଣ୍ଡ କାଟ ।

ଧର୍ମପଦ ଦେଉଳର ମୁଣ୍ଡିମାରିଛି, ମାତ୍ର ଯେ ସମ୍ବାଦ ରାଜାଙ୍କର କର୍ଣ୍ଣଗୋଚର ହେଲେ ପୁଣି ତ ସେଇ ବିଷମଫଳ, ବାରଶ' ବଢ଼େଇଙ୍କର ମୁଣ୍ଡ କାଟ—ତେଣୁ ସମସ୍ତ ବଢ଼େଇ ଧର୍ମପଦର ପିତାଙ୍କୁ କଟାଳ କରିଛନ୍ତି—ବାରଶ' ବଢ଼େଇଙ୍କର ଦାୟୀ କି ପୁଅରେ ଦାୟୀ ?

ପିତା ନୀରବ ନିରୁତ୍ତର ।

ମାତ୍ର ଧର୍ମପଦ ପିତାଙ୍କୁ କହିଛନ୍ତି—ଜାତି ପାଇଁ ସେ ଜୀବନ ବିସର୍ଜନ କରିବାକୁ ପ୍ରସ୍ତୁତ ।

ତାପରେ ସେ ରାତିର ଅନ୍ଧକାର ଭିତରେ ଦେଉଳର ଚୂଡ଼ାରେ ଚଢ଼ି ଚନ୍ଦ୍ରଭାଗାର ପ୍ରବାହକୁ ଡେଇଁପଡ଼ିଛି—ଲୀନ ହୋଇ ଯାଇଛି ସମୁଦ୍ର ଗର୍ଭରେ ।

'ଅବକାଶ ଚିନ୍ତା'ରେ ଗୋପବନ୍ଧୁ ଈଶ୍ୱର ଭକ୍ତି, ଦେଶପ୍ରୀତି ଓ ମାନବପ୍ରୀତିର ଜୟଗାନ କରିଛନ୍ତି । ପର ଜୀବନରେ ପରାଧୀନ ଦେଶର ମୁକ୍ତି ପାଇଁ ସତ୍ୟାଗ୍ରହରେ ବିପ୍ଳବରେ ଯୋଗଦେଇଛନ୍ତି । କାରା-ବରଣ କରିଛନ୍ତି ଅମ୍ଳାନବଦନରେ । ପ୍ରାଣର ସେଇ ସ୍ପନ୍ଦନ, ସେଇ ସ୍ୱର ତୋଳିଛନ୍ତି ତାଙ୍କର 'କାରା କବିତା'ରେ ଓ 'ବନ୍ଦୀର ଆତ୍ମକଥା'ରେ । ଦେଶର, ଜାତିର ମୁକ୍ତି ପାଇଁ, ପୂଜା ପାଇଁ ସେତିକି ପର୍ଯ୍ୟାପ୍ତ ନୁହେ— ଆହୁରି କିଛି ବେଶୀ···ଆତ୍ମବଳ । ସେଇଥି ପାଇଁ ମହାପ୍ରାଣ ଗୋପବନ୍ଧୁ କାରାକକ୍ଷର ନିର୍ଜନ ନିଶୀଥରେ ଆତ୍ମବଳର ବଳିଷ୍ଠ ପ୍ରତୀକ ଧର୍ମପଦର ସ୍ୱପ୍ନ ଦେଖିଛନ୍ତି—ଯାହା ତାଙ୍କର 'ଧର୍ମପଦ'ରେ ରୂପାୟିତ ।

"ଧର୍ମପଦ" କାବ୍ୟଟି ଗୋଟିଏ ତ୍ରିଭୁଜ···ତିନୋଟି ଚରିତ୍ର, ଧର୍ମପଦ, ତାର ମାତା ଓ ତାର ପିତା ।

ବାଳକ ଧର୍ମପଦ ପରି ଧର୍ମପଦ ଗାଥା କାବ୍ୟଟି ଆକାରରେ କ୍ଷୁଦ୍ର ହେଲେହେଁ ବିଶୁପ୍ରାଣର ମହାନ୍ ଭାବରାଜିର ଅଭିବ୍ୟକ୍ତି ଯୋଗୁ ତାହା ଅପୂର୍ବ ଦୀପ୍ତିରେ ପ୍ରତିଭାତ ହୋଇ ଉଠିଛି ।

ଦୃଷ୍ଟାନ୍ତ ସ୍ୱରୂପ, ଧର୍ମପଦ ତାର ମାତାଙ୍କ ପାଖରେ ସେଦିନ ଗୃହ-ଶାଳୀରେ ପାଇଥିବା ଅପମାନ ବିଷୟ ବଡ଼ ଦୁଃଖରେ ପ୍ରକାଶ କରିଛି—

"ଗୃହାଳୀରେ ଯେବେ ଲେଖୁଥିଲି ପାଠ
ଗୋଟାଳି ମୋ ଗଲା ଗଡ଼ି,
ନିକଟ ପିଲାକୁ କହିଲି 'ହେ ଭାଇ
ବଢ଼ାଇ ଦିଅ ମୋ ଖଡ଼ି ।'

ମୋ କଥାରେ ସେ ତ ଦେଲା ନାହିଁ ଖଡ଼ି,
କରିବା କଲା ଉପହାସ,
ଭାଇ ଡାକ ଆଜ୍ଞା ଦିଏ ଅବାଗୁଆ
ଏହାର କେଡ଼େ ସାହସ ?"

ପୁତ୍ରପାଇଁ ଅପମାନ ଯେତେକେ କଷ୍ଟକର ନୁହେଁ; ଜନନୀ ତ୍ରୁଟି ତାହା ତହିଁରୁ ଅଧିକ । ମାତୃଜୀବନର ସୂକ୍ଷ୍ମ-ତନ୍ତ୍ରୀରେ ସେ ଆଘାତ କେଡ଼େ ଦାରୁଣ ତାହା ଭାଷାରେ ପ୍ରକାଶ କରିହେବ ନାହିଁ । ତେଣୁ ସେ ସାଙ୍ଗେ ସାଙ୍ଗେ ଦୁଃଖ ଓ କ୍ରୋଧରେ କହିଛନ୍ତି—

"ତା ମା ଏଡ଼େ ସତୀ ? ମୋ ପୁଅକୁ ପୁଣି
କହେ ସେ ଅଣବାବୁଆ !"

ମାତ୍ର ତାଙ୍କର ମାତୃହୃଦୟରେ ବିଶ୍ୱ-ଜନନୀର ଭାବ ଜାଗିଉଠିଛି, ତେଣୁ ଅଜ୍ଞାନ ଛୁଆର ସେ ଦୋଷକୁ ଗ୍ରହଣ କରି ନାହାନ୍ତି—

"ତା କଥାରେ ଛଳ କରି କିବା ଫଳ
ସେ କି ତ ଅଜ୍ଞାନ ଛୁଆ !"

ଆମ ଦେଶର ଉଚ୍ଚ ଆଦର୍ଶର ପରମ୍ପରା ଓ ବିଶ୍ୱ-ଜନନୀର ଭାବ ସେଇ କଥାପଦକରେ ଉଦ୍‌ବୋଧିତ ହେଲପରି ମନେହୁଏ ।

ଶ୍ରୀମଦ୍ ଭାଗବତର ପ୍ରଥମ ସ୍କନ୍ଧରେ ଅଶ୍ୱତ୍ଥାମା ଦ୍ରୌପଦୀଙ୍କର ପଞ୍ଚପୁତ୍ରକୁ ହତ୍ୟା କରିଚି—ଦ୍ରୌପଦୀ ପୁତ୍ର ଶୋକରେ ଅଧୀର ହୋଇ ଭାସୁଛନ୍ତି ଅଶ୍ରୁଜଳରେ । ଅର୍ଜୁନ ଆତତାୟୀକୁ ଧରିନେଇ ପୁତ୍ରହରା ଜନନୀ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି ଦୃଢ଼ବନ୍ଧ ପଶୁଭଳି । ତାର ଶିରଚ୍ଛେଦ କରି ତା'ର ରକ୍ତରେ ତର୍ପଣ କରିବାକୁ ଯେତେବେଳେ ସେ ପଚାରିଛନ୍ତି—ଦ୍ରୌପଦୀଙ୍କଠାରୁ ଉତ୍ତର ମିଳିଚି—

"ତାକୁ ମାରି ନାହିଁ—ଛାଡ଼ିଦିଅ ।

ମା ରୋଦୀଦସ୍ୟ ଜନନୀ
ଗୌତମୀ ପତି ଦେବତା,
ଯଥାହଂ ମୃତବତ୍ସାର୍ତ୍ତା
ରୋଦିମ୍ୟଶ୍ରୁମୁଖୀ ମୁହୁଃ ॥

ଅର୍ଥାତ୍ ମୁଁ ଯେପରି ପୁତ୍ର ଶୋକରେ ଆତୁର ହୋଇ ଅଶ୍ରୁଜଳରେ ଭାସୁଛି, ଏହାଙ୍କର ମାତା କୁନ୍ତୀ ଯେପରି ଶୋକଜଳରେ ନ ଭାସନ୍ତୁ ।"

ସେଇ ଆଦର୍ଶର ନିର୍ଯ୍ୟାସ ଦେଇ ଧର୍ମପଦର ମାତାଙ୍କ ହୃଦୟରେ ଗୋପବନ୍ଧୁଙ୍କର ଲେଖନୀ ମହତ୍ତ୍ୱ ସୃଷ୍ଟି କରି ଚାଲିଅଛି ।

ସେଇ ଜନନୀ ପୁଣି ପୁତ୍ରର ବିଦାୟବେଳେ କଲ୍ୟାଣ କରିଛନ୍ତି ହୃଦୟର ସମଗ୍ର ସ୍ନେହ ମମତା ଢାଳି ଦେଇ—

"ମରିଯାଏ ଆହା ମୋ' ଧନ ମାଳରେ
କେଡ଼େ ବୁଦ୍ଧି କି ସାହସ !
ଜଗନ୍ନାଥ କୃପା କଲେ ତୁ ରଖିବୁ
କୁଳ ଗଉରବ ଯଶ ।"

ଧର୍ମପଦ ଆଜି ମାତୃକୋଳକୁ ଫେରି ନାହିଁ । ମାତ୍ର; ମାତାଙ୍କ କଥା ଅନୁସାରେ ଜୀବନରେ ଅର୍ଜନ କରି ପାରିଛି "କୁଳ ଗଉରବ ଯଶ ।" ଗୋଟାଏ ଦିଗରେ ମାତୃବଚନ ସତ୍ୟ ଓ ସଫଳ ହୋଇଛି ।

ଧର୍ମପଦ ଚନ୍ଦ୍ରଭାଗାର ପଠାରରେ ଉପସ୍ଥିତ ହୋଇଛି । କାରଣ' ବଢ଼େଇ ସେଠି ଦେଉଳ କାର୍ଯ୍ୟରେ ନିଯୁକ୍ତ—କାହାକୁ ଚିହ୍ନେ ନାହିଁ । କେମିତି ସେ ତାର ପିତାଙ୍କ ଠାବ ପାଇବ ? କୋଳ ବିକଳା ଛଳରେ ସେ ଏଠି ସେଠି ବୁଲୁଛି । ଜଣେ ବିଜ୍ଞାଣୀ ସେଇ ବରକୋଳ ଦେଖି ନିଜ ଘର-କୋଳ କଥା ମନେପକାଉଛି । ଧର୍ମପଦକୁ ଦେଖି ତାର ପ୍ରାଣରେ ଏକ ଅପୂର୍ବ ଜିଜ୍ଞାସା ।

"କୋଳ ବିକା ପିଲା ମୁହଁକୁ ଅନାଇ
କହୁଁ ନ ପାରଇ କିହି,
ନ ଜାଣେ ଅପୂର୍ବ ବାତ୍ସଲ୍ୟ ମମତା
କିଁପା ହୃଦେ ଉପୁଜଇ ।
ବାଳକ ବଚନ ଶୁଣି କୁତୂହଳେ
ପୁଲକେ ପୂରେ ପରାଣ ।"

କାଳିଦାସଙ୍କର ଅଭିଜ୍ଞାନ ଶକୁନ୍ତଳାରେ ସର୍ବଦମନର ରୂପ ବର୍ଣ୍ଣନା କରି ଦୁଷ୍ମନ୍ତଙ୍କ ମନରେ ଜାଗି ଉଠିଥିଲା—

"କଂ ନୁ ଖଳୁ, ବାଳେଽସ୍ମିନ୍ନୌରସ ଇବ
ପୁତ୍ରେ ସ୍ନିହ୍ୟତି ମେ ମନଃ ।"

ଭବଭୂତିଙ୍କର ଉତ୍ତର ରାମ ଚରିତରେ ରାମ କୁଶଙ୍କୁ ଦେଖି ଦେଖି କହି ଉଠିଥିଲେ—

"ଅମୃତ ଧ୍ମାତ ଜୀମୂତ ସ୍ନିଗ୍ଧ ସଂହନନସ୍ୟ ତେ ।
ପରିଷ୍ୱାଙ୍ଗାୟ ବାତ୍ସଲ୍ୟା ଦୟମୁତ୍କଣ୍ଠତେ ଜନଃ ॥"

ଆର୍‌ନୋଲ୍‌ଡ଼ଙ୍କ ସୋରାବ ଓ ରସ୍ତମ କାବ୍ୟରେ ବୃଦ୍ଧ ରସ୍ତମ ତତ୍ପରୂପ କହିଲା ଭଳି ମନେ ହୁଏ—ସୋରାବ କହୁଁ କହୁଁ ପିତାଙ୍କର ମନର ବ୍ୟଗ୍ରତା କଅଣ ତାହା ସହଜରେ ଅନୁମେୟ—

"He spoke but Rustum gazed and gazed and stood
Speechless and he uttered one sharp cry—
O boy, thy father and the voice chooked there."

ଗୋପବନ୍ଧୁ ବଣ୍ଣୁର ସେଇ ସମାନ୍ତରାଳ ଭାବକୁ ନିପୁଣଭାବରେ ପ୍ରକାଶ କରିଛନ୍ତି ଦିଓଟି ପଦରେ ।

କାରଣ ବଢ଼େଇଙ୍କୁ ବିସ୍ମିତ କରି ଧର୍ମପଦ ଦେଉଳର ମୁଣ୍ଡି ମାରି ଦେଇଛି । ସେମାନେ ହର୍ଷ ଓ ବିଷାଦରେ ଅଭିଭୂତ । ରାଜା ନରସିଂହ ଦେବ ଜାଣିଲେ ବାଳକ ପାଇବ ବଧେଇ । ବଢ଼େଇମାନଙ୍କର ହେବ ମୁଣ୍ଡ କାଟ—ଅତଏବ ସେକଥା ଗୁପ୍ତ ରହିବ—ରାଜାଙ୍କୁ ଜଣା ହେବ ନାହିଁ ।

ସେଇଥି ପାଇଁ ପିତା ପୁତ୍ରଙ୍କର କଥାବାର୍ତ୍ତା—ଗମ୍ଭୀର ଆଲୋଚନା । ପିତାଙ୍କର ମନ ଯେମିତି ପ୍ରସନ୍ନ, ସେମିତି ବିପନ୍ନ । ଧର୍ମପଦ ଶେଷରେ ପ୍ରକାଶ କରିଛି ତାହାର ମନର ଭାବ—

"ବାରଣ ବଢ଼ରେ ରହନ୍ତୁ ଜୀବନେ
ଗୁଡ଼ ଏବେ ମୋର ଆଶା ।
ଏ ଜଗତେ କାହା ପୁଅ ବା କାହାର
ସମସ୍ତ ମାୟା ଭରସା,
ସାର୍ଥକ ଜନମ ତାର ଏକା ଯିନା
ପରହିତେ ଯାର ପ୍ରାଣ ।"

ପୁତ୍ରର ଆତ୍ମବଳରେ ପିତାଙ୍କର ହୃଦ୍‌ବୋଧ ପାଇଁ ଗୋପବନ୍ଧୁ ବ୍ୟାସମୁନିଙ୍କର ଭାବ ଗରିମା ଉପସ୍ଥାପିତ କରି ଅଛନ୍ତି—

ତ୍ୟଜେଦେକଂ କୁଲସ୍ୟାର୍ଥେ
ଗ୍ରାମସ୍ୟାର୍ଥେ କୁଲଂ ତ୍ୟଜେତ୍ ।
ଗ୍ରାମଂ ଜନପଦସ୍ୟାର୍ଥେ
ଆତ୍ମାର୍ଥେ ପୃଥିବୀଂ ତ୍ୟଜେତ୍ ॥

ଗୋପବନ୍ଧୁ ସେଇଠି କହୁଛନ୍ତି—

କହିଛନ୍ତି ମୁନି— "କୁଳରକ୍ଷା ପେନି
ହେବ ଯେବେ ପ୍ରୟୋଜନ,
ତେଜିବ ଜଣେକୁ ହେଲେ ହେଉ ପଛେ
ସେ ଯେତେ ସ୍ନେହ ଭାଜନ ।

ନ ହୋଇ ବ୍ୟାକୁଳ ଗ୍ରାମହିତେ କୁଳ
ବରଜନ୍ତି ସାଧୁଜନ,
ଦେଶ ହିତେ ଗ୍ରାମ, ଜଗତ କଲ୍ୟାଣେ
କରି ଦେଶ ବିସର୍ଜନ ।"

ପୁତ୍ରର କଠୋର ପ୍ରସ୍ତାବ ପିତା ଶୁଣନ୍ତେ କେତେକେ ? ତେଣୁ ଗୋପବନ୍ଧୁ ଧର୍ମପଦର କଣ୍ଠରେ ଭରିଦେଇଛନ୍ତି ମୃତ୍ୟୁଞ୍ଜୟ ବାଣୀ—

ପୁଅ କହେ, "ବାପା, ଜୀବନ ମରଣ
ଲାଗିଅଛୁ ଅନୁକ୍ଷଣ,
ଜନମ ହୋଇଲେ ଆଗେ ଅବା ପଛେ
ଅବଶ୍ୟ ହେବ ମରଣ ।
କାପୁରୁଷ ପରି ମରିବା ଜଗତେ
ନୁହେ ନର ପଉରୁଷ,
ପରହିତ ସାଧି ମରେ ଯେ ମହୀରେ
ସେହି ଏକା ସୁ ପୁରୁଷ ।"

ଲର୍ଡ଼ ମ୍ୟାକ୍‌ଲେଙ୍କର ପଦ ସେଇଠି ମନରେ ସ୍ୱତଃ ଜାଗି ଉଠେ—

Then outspoke brave Horatius
The captain of the gate—
"To every man upon this earth,
Death cometh soon or late.
And how can man better
than facing fearful odds
For the ashes of his fathers,
And temples of his Gods".

ପାଲିଭାଷାରେ ଧର୍ମପଦରେ ଯାହା ଅଛି ତା ବି ମନେପଡ଼େ—

ଯୋ ଚ ବସ୍‌ସ ସତଂ ଜୀବେ
କୁସୀତୋ ହୀନ ବୀରେୟୋ ।
ଏକାହଂ ଜୀବିତଂ ସେୟ୍ୟୋ
ବୀରୟମାରଭତେ ଦଳ୍‌ହ ॥

ଅଳସ ଓ ପୌରୁଷହୀନ ହୋଇ ଯେ (କେହି) ଶଏ ବର୍ଷ ବଞ୍ଚିରହେ । ତା ଅପେକ୍ଷା ଦୃଢ଼ତା ସହିତ ପୌରୁଷ ବା ଉଦ୍ୟୋଗ ଆରମ୍ଭ କରୁଥିବା ବ୍ୟକ୍ତିର ଦିବସ ମାତ୍ର ବ୍ୟାପୀ ଜୀବନ ଶ୍ରେୟସ୍କର ।

ଅର୍ହତ୍ତବର୍ଗ—୧୩

କବି ଧର୍ମପଦ ମୁଖରେ ପୁଣି କୁହାଉଛନ୍ତି—

"ମାନବ ଜୀବନ ନୁହଇ କେବଳ
ବର୍ଷ ମାସ ଦିନ ଦଣ୍ଡ;
କର୍ମେ ଜୀଏଁ ନର, କର୍ମ ଏକା ତାର
ଜୀବନର ମାନଦଣ୍ଡ ।"

ଏହି ଭାବଟି ପାଇଁ ବେନ ଜନସନ୍ (Ben Johnson)ଙ୍କର ଗୋଟିଏ ଶ୍ରେଷ୍ଠ କବିତାର ଉଦାହରଣ ଦେଉଅଛି—

"It is not growing like a tree,
In bulk, doth make man better be,
Or standing long an Oak
three hundred years,

To tall a log at last dry. bold, sue
A lily of a day
Is fairer far in May.
Although it fall and dry that might
It was the plant and flower of light.
In small proportions
We just beauties see
And in short measures
life may porfect be."

ମହାଭାରତର ବିଦୁଲା ତାଙ୍କର ପୁତ୍ର ସଞ୍ଜୟର ଉଦ୍‌ବୋଧନ ପାଇଁ ଯେଉଁପରି କହିଥିଲେ ଗୋପବନ୍ଧୁ ପୁଣି ସେଇପରି କହୁଛନ୍ତି—

"ଅଲାତ ତିନ୍ଦୁକସ୍ୟେବ ମୁହୂର୍ତ୍ତମପି ହି ଜ୍ୱଳ ॥
ମା ତୁଷାଗ୍ନିରିବା ନର୍ଚ୍ଚି ଧୂମାୟସ୍ୱ ଜିଜୀବିଷୁଃ ।
ମୁହୂର୍ତ୍ତଂ ଜ୍ୱଳିତଂ ଶ୍ରେୟୋ ନତୁ ଧୂମାୟିତଶ୍ଚିରମ୍ ॥"

"ମୁହୂର୍ତ୍ତେ ମାତର ଉଜ୍ଜ୍ୱଳ ପ୍ରଖର
ଶିଖା ଟେକି ହୁତାଶନ,
ଜଳି ଯେବେ କରେ ଆଲୋକ ଉତ୍ତାପ
ଚଉଦିଗେ ବିତରଣ ।

ଲଭୁ ସେ କ୍ଷଣକେ ତଥାପି ଏ ଲୋକେ
ରହେ ତା ଆଦର ଯଶ,
କି ଲୋଡ଼ା ତହିଁରେ ରହେ ସେ ମହୀରେ
କୁହୁଳି ସହସ୍ର ବର୍ଷ ?"

ଧର୍ମପଦ ପିତାଙ୍କ ନିକଟରେ ପୁଣି ଆବେଦନ କରେ—
"ବାରଣ ବଚନେ ମୋର ଜାତିଭାଇ
ସହି ନିନ୍ଦା ଅପମାନ,
ମଲେ ଯେବେ ଏଥି, କି ସୁଖ ମୋହର
କରି ମନ୍ଦିର ନିର୍ମାଣ ।

ବାରଣ ବଚନେ ରକତ ରଞ୍ଜିତ
ଯଶ ସନମାନ ଧନ,
ପାଇ ରାଜଦ୍ୱାରେ କହ କି ପ୍ରକାରେ
ବଢ଼ିବ ମୋ ବଡ଼ପଣ ?"

ଧର୍ମପଦର ସେଇ ଉଚ୍ଚକୋଟିର ଚିନ୍ତା ପୃଥିବୀରେ ବଡ଼ ବଡ଼ ମହାପୁରୁଷମାନଙ୍କ ଜୀବନରେ ହିଁ ସମ୍ଭବ । ଯୁଧିଷ୍ଠିରଙ୍କ ମନୋଭାବକୁ ରାଧାନାଥ ତାଙ୍କର ମହାଯାତ୍ରାରେ ଉଲ୍ଲେଖ କରିଛନ୍ତି—

"ହତ ହେଲେ ସୁଯୋଧନ କୁରୁକ୍ଷେତ୍ର ରଣେ
ଜୟୀ ହୋଇ ଆମ୍ଭେ ତହିଁ ହେଲୁଁ ଜୀବନ୍ମୃତ ।
ପୁତ୍ର ମିତ୍ର ରକ୍ତ ସ୍ରୋତେ ସନ୍ତରି ସନ୍ତାପେ
ସନ୍ତାପର ସିଂହାସନ ହେଲା ସିନା ଲଭ ।"

ରଜା ଆର୍ଥର୍‌ଙ୍କର ବେଡ଼ଭିରଙ୍କ ନିକଟରେ ଯାହା ପ୍ରକାଶ କରିଛନ୍ତି ତାହା ଲର୍ଡ୍ ଟେନିସନ ତାଙ୍କର Passing of Arthur ରେ ଗୁମ୍ଫିତ କରି ଯାଇଛନ୍ତି—

Oh, Bediver for on my heart hates father
Confusion, till I know not what I am;
Nor whence I am nor whether I be king
Beheld, I seem but King among the dead.

ଭାବକୁ ଆହୁରି ପ୍ରାଞ୍ଜଳ କରିବାପାଇଁ ଗୋପବନ୍ଧୁ ପୁଣି ଧର୍ମପଦ ମୁଖରେ ସଞ୍ଚାଣ କପୋତ କଥାର ଦୃଷ୍ଟାନ୍ତ ପରିବେଷଣ କରାଇଛନ୍ତି । ମହାଭାରତରେ, ବହୁ ପୁରାଣରେ ଉଲ୍ଲିଖିତ ଅଛି ନୃପ ରାଜା ଶିବି ଦିବ୍ୟାସନରେ ବସିଛନ୍ତି, ହଠାତ୍ ଗୋଟିଏ କପୋତ ଆସି ତାଙ୍କର କ୍ରୋଡ଼ଦେଶରେ ନିପତିତ ହୋଇଛି; ମାତ୍ର ଗୋପବନ୍ଧୁ ସେଠି ଲେଖିଛନ୍ତି । ଯଜ୍ଞାଗାରରେ ପ୍ରବେଶ କରି ପକ୍ଷୀ ଶରଣଭିକ୍ଷା କରୁଛି । ସେହି ବ୍ୟତିକ୍ରମ ଆଣିବା ଦ୍ୱାରା କବି ଶ୍ରୀମଦ୍ଭଗବତ ଗୀତାର ଉକ୍ତିଟିକୁ ଉପସ୍ଥାପିତ କରିବାର ସୁଯୋଗ ନେଇଛନ୍ତି, ଧର୍ମପଦ କହୁଛି—

"ଏ ଜଗତ, ବାପା ମହା ମଖଶାଳା
ନର ନାରୀ ଯଜମାନ,
ସେହି କୃତୀ ଯେହୁ ପରହିତେ କରେ
ଜୀବନ ଆହୁତି ଦାନ ।"

ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହୁଛନ୍ତି—

ଯଜ୍ଞାର୍ଥାତ୍ କର୍ମଣୋଽନ୍ୟତ୍ର ଲୋକୋଽୟଂ କର୍ମବନ୍ଧନଃ ।
ତଦର୍ଥଂ କର୍ମ କୌନ୍ତେୟ ମୁକ୍ତସଙ୍ଗଃ ସମାଚର ॥
ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା ପୁରୋବାଚ ପ୍ରଜାପତିଃ ।
ଅନେନ ପ୍ରସବିଷ୍ୟଧ୍ୱ ମେଷବୋଽସ୍ତ୍ୱିଷ୍ଟ କାମଧୁକ୍ ॥

ଅର୍ଥାତ୍, ଯଜ୍ଞାର୍ଥରେ ପରୋପକାର ପାଇଁ ଯେଉଁ କର୍ମ କରାଯାଏ ତାହାଛଡ଼ା ଆଉ ସମସ୍ତ କର୍ମ ସମସ୍ତ ଲୋକଙ୍କୁ ସଂସାର ପାଶରେ ବାନ୍ଧି ରଖେ, ଅତଏବ, ହେ କୌନ୍ତେୟ ତୁମେ ମୁକ୍ତସଙ୍ଗ ଅର୍ଥାତ୍ କର୍ମଫଳ ତ୍ୟାଗକରି ସେଇ ଯଜ୍ଞ ପାଇଁ କର୍ମ କର । ପୂର୍ବକାଳରେ ପ୍ରଜାପତି ବ୍ରହ୍ମା ଯଜ୍ଞ ସାଥିରେ ପ୍ରଜାମାନଙ୍କୁ ସୃଷ୍ଟି କରି ଏହାଇଁ କହିଥିଲେ, "ତୁମେମାନେ

ଏବଂ ଯଜ୍ଞ ଦ୍ୱାରା ଉତ୍ତରୋତ୍ତର ବୃଦ୍ଧି ଲାଭ କର । ଏ ଯଜ୍ଞ ତୁମମାନଙ୍କର କାମଧେନୁ ଭଳି ଅଭିଳଷିତ ଭୋଗ ଦାନକରୁ ।

ଏତେ କହି ପୁଅ ବାପ ପଦରଜ
ନେଇ ଲଗାଇଲା ଶିରେ,
ବୃଦ୍ଧ ମୁଖେ କିଛି ବଚନ ନ ଆସେ
ଗଣ୍ଡ ସିକ୍ତ ନେତ୍ର ନୀରେ ।
ମୂକ ଆଶୀର୍ବାଦ ଇଙ୍ଗିତେ ପ୍ରକାଶି
ସ୍ନେହେ ଚୁମ୍ବିଲା ବଦନ,
ଚାଲିଗଲା ପୁଅ କ୍ଷଣେ ବୃଦ୍ଧ ତହିଁ
ହେଲା ଶୋକେ ଅଚେତନ ।

ଗୋପବନ୍ଧୁ ଏହି ଚାରୋଟି ପାଦରେ ଗୋଟିଏ ନୀରବ ଓ ନିସ୍ତବ୍ଧ ଚିତ୍ର ଆଙ୍କି ଦେଇଛନ୍ତି—କେତେ ଅଳ୍ପ କଥାରେ କେତେ ବେଶି ଭାବ । ନୀରବତା କେଡ଼େକ ବାଙ୍ମୟ ! କବିଙ୍କର ଅନୁଭୂତି ଓ ତାର ଭାବବ୍ୟଞ୍ଜନତା (Suggestiveness) ର ସ୍ୱାକ୍ଷର ସେଠି ଅତି ସ୍ପଷ୍ଟ ।

ଧର୍ମପଦ ଧୀରେ ଧୀରେ ଦେଉଳର ଶିଖରଭାଗକୁ ଉଠିଛି— ଚତୁର୍ଦ୍ଦିଗକୁ ଦୃଷ୍ଟି ଦେଇ ଦେଖୁଛି—ବିସ୍ତୃତ ସମୁଦ୍ର, ନିସ୍ତବ୍ଧ ବେଳାଭୂମି, ତାହାର ଉପରେ ଭଙ୍ଗିପଡ଼ୁଛି ଅସଂଖ୍ୟ ଲହରୀ । ଉପରେ ତାରାଗୁମ୍ଫିତ ଆକାଶ—ପ୍ରାଣରେ ଉଦାର ଓ ମହାନ୍ ଭାବର ଉଦ୍ବେଳନ—ବିମୁଗ୍ଧ କଣ୍ଠରେ ସ୍ଫୁରିତ ହୋଇଛି ସେହି ଉତ୍କଳ କବି ଜୟଦେବଙ୍କର "ଜୟ ଜଗଦୀଶ ହରେ" । ଶେଷ ଉଚ୍ଛ୍ୱାସ—

ପ୍ରଭୁ ପରାତ୍ପର ପରମ ଈଶ୍ୱର
ଆଶ୍ରା ଦିଅ ଶ୍ରୀପଦରେ,
ପୂରୁ ତବ ଇଚ୍ଛା ଏ ନର ପରାଣେ
"ଜୟ ଜଗଦୀଶ ହରେ" ।

ତାପରେ ଗୋଟିଏ ଲମ୍ଫ—ମିଶି ଯାଇଛି ସମୁଦ୍ରର ଅତଳ ଗର୍ଭରେ ।

ପରବ୍ରନ ସୂର୍ଯ୍ୟ ଆସି ଦେଖିଛନ୍ତି—ସମ୍ପୂର୍ଣ୍ଣ ଦେଉଳ ଛୁଡ଼ା ହୋଇଚି—ମାତ୍ର ସିଏ ମୂର୍ତ୍ତି ମାରଚି ସେ କାହିଁ ?

ସମୁଦ୍ରର ଅତଳ ଗର୍ଭରେ···

ସମୁଦ୍ରର ସେଇ ଅତଳ ଗର୍ଭରୁ ଗୋପବନ୍ଧୁ ଧର୍ମପଦକୁ ଆଣି ଜଗତ ଆଗରେ ଠିଆ କରାଇଛନ୍ତି ତାଙ୍କର ଗାଥା-କାବ୍ୟରେ । ଧର୍ମପଦ କୋଣାର୍କ ଦେଉଳର ମୂର୍ତ୍ତି ମାର, ଆତ୍ମବଳ ଦେଇ ବାରଶ ବଢ଼େଇଙ୍କର ସନମାନ ରଖିଥିଲା । ସତେ ଯେପରି ଜବ ସେହି ନିର୍ମାଣ ପାଇଁ ନିର୍ମାଣ କରିଛନ୍ତି ଧର୍ମପଦ ଗାଥା-କାବ୍ୟ···ଗୋଟିଏ **Votive temple**—ମାନସିକ ମନ୍ଦିର ।

## ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନ

"ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନ" ଗୋପବନ୍ଧୁଙ୍କର ଶେଷ ରଚନା । ଦେଶପ୍ରୀତି, ମାନବ ପ୍ରୀତି ଓ ଈଶ୍ୱର ଭକ୍ତି ତାଙ୍କ ଜୀବନରେ ତ୍ରିବେଣୀ ସଙ୍ଗମ ଭଳି ଉଦ୍‌ବେଳିତ ଓ ଓତପ୍ରୋତ ହୋଇ ପାରିଥ । ଉକ୍ତ ରଚନାର ଅନ୍ତରାଳରେ ମୁଖ୍ୟତଃ ତାଙ୍କର ଈଶ୍ୱର ଭକ୍ତି ବା ଆଧ୍ୟାତ୍ମିକ ଚିନ୍ତାର ଏକ ମନୋଜ୍ଞ ଓ ଅନୁରକ୍ତ ମାନସ ସ୍ପଷ୍ଟ ହୋଇ ଆତ୍ମପ୍ରକାଶ କରିଛି ।

ମହାଭାରତର ଅନୁଶାସନ ପର୍ବର ଅବଲମ୍ବନରେ ଗୋପବନ୍ଧୁ ଲେଖିଛନ୍ତି "ଗୋମାହାତ୍ମ୍ୟ" । ତହିଁରେ ଋଷିଙ୍କର ନାମ ଅଛି ଉଦ୍ଦାଳକ ଓ ପୁତ୍ରଙ୍କ ନାମ ନାଚିକେତ ।

ମାତ୍ର କଠ ଉପନିଷଦରେ ଋଷିଙ୍କ ନାମ ବାଜଶ୍ରବସ ଓ ପୁତ୍ରଙ୍କ ନାମ ନଚିକେତା ।

"ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନ ଗୋପବନ୍ଧୁଙ୍କର ଏକ ଅନୁବାଦ ରଚନା । କଠ ଉପନିଷଦରୁ ପ୍ରଥମ ଅଧ୍ୟାୟର ତିନୋଟି ଓ ଦ୍ୱିତୀୟ ଅଧ୍ୟାୟର ତିନୋଟିବଲ୍ଲୀ ତାଙ୍କର ମୌଳ ଅବଲମ୍ବନ । ଅନୁବାଦ

କେଉଁଠି ମୂଳାନୁଗାମୀ, ବଳ, କେଉଁଠି ମୁକ୍ତ, କେଉଁଠି ଅନୁବାଦ ନୁହେ—ପ୍ରସଙ୍ଗର ସହଜବୋଧତା ପାଇଁ କିଛି ଯୋଗ-ବିଯୋଗର ବ୍ୟବସ୍ଥା ରହିଛି ।

ମାତ୍ର ଗୋପବନ୍ଧୁ ନାମର ବ୍ୟବହାରରେ କିଞ୍ଚିତ ପ୍ରମାଦ ସୃଷ୍ଟି କରିଛନ୍ତି ଯାହା ବିଶ୍ୱବନ୍ଧୁଙ୍କ ଉପାଖ୍ୟାନରେ ଚାହିଁବାର ନୁହେଁ । ମୂଳ-ସଂସ୍କୃତ ପାଠରେ ଅଛି—

ଓଁ ଉଶନ୍ ହ ବୈ ବାଜଶ୍ରବସଃ ସର୍ବବେଦସଂ ଦଦୌ
ତସ୍ୟ ହ ନଚିକେତା ନାମ ପୁତ୍ର ଆସ ।
—ପ୍ରଥମ ଅଧ୍ୟାୟ, ପ୍ରଥମବଲ୍ଲୀ, କଠ ଉପନିଷଦ୍

ଅର୍ଥାତ୍ ବାଜଶ୍ରବା ( ବାଜ-ଅନ୍ନଦାନ ହେତୁ, ଶ୍ରବ—କୀର୍ତ୍ତି ଯାହାଙ୍କର ) ପୁତ୍ର ବାଜଶ୍ରବସ ସର୍ବସ୍ୱ ଦକ୍ଷିଣା-ବିଶିଷ୍ଟ ବିଶ୍ୱଜିତ୍ ଯଜ୍ଞ କରି ସମବେତ ବ୍ରାହ୍ମଣମାନଙ୍କୁ ସର୍ବସ୍ୱ ଦାନ କରିଥିଲେ—ତାଙ୍କର ପୁତ୍ର ନଚିକେତା ।

ମାତ୍ର ଗୋପବନ୍ଧୁଙ୍କ ଲେଖନୀରେ ତାହା ଭିନ୍ନ ରୂପ ଧାରଣ କରିଅଛି—

"ଥିଲେ ଋଷି ଉଦ୍ଦାଳକ ପୁରାଣ ପ୍ରଧାନ,
ବାଜଶ୍ରବା ତାଙ୍କ ବଂଶେ ସୁଯୋଗ୍ୟ ସନ୍ତାନ ।
ସ୍ୱର୍ଗଲାଭ ଆଶେ କଲେ ବିଶ୍ୱଜିତ୍ ଯାଗ,
ଧନ ଦାନେ ସର୍ବସ୍ୱାନ୍ତ ହେଲେ ମହାଭାଗ ।

ସୁଲକ୍ଷଣ ନଚିକେତା ଥିଲେ ତାଙ୍କ ସୁତ,
ବାଳକାଳୁଁ ତାଙ୍କ ମନ ସଦା ଶୁଦ୍ଧ ପୂତ ।
—ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନ—ପୃ ୧

ଅନ୍ୟ ସ୍ଥାନରେ ମଧ୍ୟ ପ୍ରକାଶ ପାଇଛି—

ପିତା ମୋର ବାଜଶ୍ରବା ଗୌତମ ତାପସ ।—ପୃ ୫

ଅବଶ୍ୟ ବାଜଶ୍ରବସଙ୍କର ଅନ୍ୟନାମ ଥିଲା ଉଦ୍ଦାଳକ, ଗୌତମ ଓ ଆରୁଣି ମାତ୍ର ବାଜଶ୍ରବା ନୁହେ—ବାଜଶ୍ରବା ତାଙ୍କର ପିତା ।

ଗୋ-ମାହାତ୍ମ୍ୟରେ ମହାଭାରତର ନାଚିକେତ ଉପାଖ୍ୟାନ ସମ୍ପର୍କରେ ଆଲୋଚନା କରାଯାଇଅଛି । ବର୍ତ୍ତମାନ କଠ ଉପନିଷଦର କଥାବସ୍ତୁ ଉପସ୍ଥାପିତ ନ କଲେ ନାଚିକେତ ଓ ନଚିକେତାଙ୍କ ବୈଶିଷ୍ଟ୍ୟ ଉପଲବ୍ଧି କରି ହେବ ନାହିଁ ।

କଠ ଉପନିଷଦ ଅନୁସାରେ ଋଷି ବାଜଶ୍ରବା ଅନ୍ନଦାନ ହେତୁ ଚତୁର୍ଦ୍ଦିଗରେ ପ୍ରଥିତଯଶା ହୋଇଛନ୍ତି । ତାଙ୍କର ପୁତ୍ର ବାଜଶ୍ରବସ ଇଚ୍ଛା କରିଛନ୍ତି ଅଧିକତର ଯଶର ଅଧିକାରୀ ହେବାକୁ । ତେଣୁ ଆରମ୍ଭ କରିଛନ୍ତି ବିଶ୍ୱଜିତ ଯଜ୍ଞ—ଋତ୍ୱିକମାନଙ୍କୁ ଦାନ କରୁଛନ୍ତି ଧେନୁ—ଯେଉଁ ଧେନୁମାନେ—

ପୀତୋଦକା ଜଗ୍ଧତୃଣା ଦୁଗ୍ଧ ଦୋହା ନିରିନ୍ଦ୍ରିୟାଃ ।

କିନ୍ତୁ ନଚିକେତା ତାହା ଲକ୍ଷ୍ୟ କରି ପିତାଙ୍କୁ ପଚାରିଛନ୍ତି—"ଇଏ କଅଣ ? ଏ ଧେନୁମାନେ ଜରାଗ୍ରସ୍ତ, କଙ୍କାଳସାର, ତୃଣ ଦେଲେ ଚର୍ବଣ କରି ପାରିବେ ନାହିଁ, ଦୁହିଁଲେ ରକ୍ତ ଛଡ଼ା ଦୁଗ୍ଧ ସ୍ରବିବ ନାହିଁ; ଏମାନଙ୍କୁ ଦାନ କରିବାରେ ଆନନ୍ଦ ଲୋକ ମିଳିବାର ତ ସମ୍ଭାବନା ନାହିଁ, ବରଂ ଅ-ନନ୍ଦ ଲୋକକୁ ସିଧା ରାସ୍ତା—ଏ ଦାନରେ କି ଫଳ ? ମୋତେ କାହାକୁ ଦାନ କରୁ ନାହାନ୍ତି ? ଏ ପ୍ରଶ୍ନ ଥରେ ନୁହେ, ଦୁଇ ଥର ନୁହେ, ତିନିଥର ।

ରୁଷ୍ଟ ପିତାଙ୍କର ନିଷ୍ଠୁର ଉତ୍ତର

"ତୋତେ ଯମକୁ ଦାନ କଲି ।"

ପିତାଙ୍କର ଅଭିସମ୍ପାତରେ ନଚିକେତା ଯାଇଛନ୍ତି ଯମପୁରକୁ । ସେତେବେଳେ ଯମ ତାଙ୍କ ପୁରରୁ ଅନ୍ୟତ୍ର ଯାଇଛନ୍ତି—ତିନିଦିନ ପରେ ଫେରି ଆସି ଦେଖିଛନ୍ତି, ଦ୍ୱାର ଦେଶରେ ଅତିଥି ବାଳକ, ନିରାହାରରେ

ତନବଦନ ହେଲା ତାଙ୍କୁ ଅପେକ୍ଷା କରିଛନ୍ତି । ମୃତ୍ୟୁଦେବ ବ୍ରାହ୍ମଣ ବାଳକର ପରିତୃପ୍ତି ପାଇଁ ତାଙ୍କୁ ଅନୁରୋଧ କରିଛନ୍ତି ତିନୋଟି ବରଭିକ୍ଷା କରିବା ପାଇଁ ।

ନଚିକେତାଙ୍କର ପ୍ରଥମ ବର ଭିକ୍ଷା—

"ଶାନ୍ତ ସଂକଳ୍ପଃ ସୁମନା ଯଥା ସ୍ୟା—
ଦ୍ଵୀତମନ୍ୟୁ ର୍ଗୌତମୋ ମାଭିମୃତ୍ୟୋ ।
ତ୍ଵତ୍ ପ୍ରସୃଷ୍ଟଂ ମାଭି ଦଦେତ୍ ପ୍ରତୀତ—
ଏତଦ୍ ତ୍ରୟାଣଂ ପ୍ରଥମଂ ବରଂ ବୃଣେ ।"

"ପିତା ମୋର ବାଜଶ୍ରବା, ଗୌତମ ତାପସ
ମୋ ବିରହ ଭାବନାରେ ନୁହନ୍ତୁ ଅବଶ ।
ନ ଜନମୁଁ ତାଙ୍କ ହୃଦେ କୋପ ମୋହପ୍ରତି
ରହନ୍ତୁ ସଦା ସେ ଶାନ୍ତ ସୁପ୍ରସନ୍ନ ମତି ।

ତବ ପୁରୁ ଫେରିଗଲେ ଦେଖି ମୋ ବଦନ
ଚିହ୍ନନ୍ତୁ, କରନ୍ତୁ ପୁଣି ସ୍ନେହ ସମ୍ଭାଷଣ ।
ମୋ ପ୍ରତି ସୁଦୟା ଯେବେ ତବ, ଦଣ୍ଡଧର !
ଦେଉ ଆଜ୍ଞା, ଏହା ମତେ ଏ ପ୍ରଥମ ବର ।"

ଯମ ଆନନ୍ଦରେ ସମ୍ମତ ଜଣାଇଛନ୍ତି—"ତଥାସ୍ତୁ" !

ଦ୍ଵିତୀୟ ବର—

ସ୍ଵର୍ଗେ ଲୋକେ ନ ଭୟଂ କିଞ୍ଚିନାସ୍ତି
ନ ତତ୍ର ତ୍ଵଂ ନ ଜରୟା ବିଭେତି ।
ଉଭେ ତୀର୍ତ୍ଵାଽଶନାୟା ପିପାସେ
ଶୋକାତିଗୋ ମୋଦତେ ସ୍ଵର୍ଗଲୋକେ ॥

ସ ତ୍ଵମଗ୍ନିଂ ସ୍ଵର୍ଗ୍ୟମଧ୍ୟେଷି ମୃତ୍ୟୋ
ପ୍ରବ୍ରୂହି ତ୍ଵଂ ଶ୍ରଦ୍ଦଧାନାୟ ମହ୍ୟମ୍ ।

ସ୍ୱର୍ଗଲୋକା ଅମୃତତ୍ୱଂ ଭଜନ୍ତ—
ଏତଦ୍ ଦ୍ୱିତୀୟେନ ବୃଣେ ବରେଣ ॥

"କହେ ପୁଣି ନଚିକେତା—"ସ୍ୱର୍ଗେ ନାହିଁ କ୍ଷୟ
ନାହିଁ ମୃତ୍ୟୁ, ନାହିଁ ଜରା, ନାହିଁ କିଛି ଭୟ ।
ନ ଜାଣନ୍ତି ସ୍ୱର୍ଗ ଲୋକେ କ୍ଷୁଧାତୃଷ୍ଣା ତ୍ରାସ
ଅତିକ୍ରମି ଶୋକ ସଦା କରନ୍ତି ଉଲ୍ଲାସ ।
ଯେ ଅଗ୍ନି ପ୍ରସାଦେ ଲଭି ଅକ୍ଷୟ ଅମୃତ
ସ୍ୱର୍ଗ ଲୋକ ନରନ୍ତର ହୁଏ କୃତକୃତ୍ୟ,
ସେ ଅଗ୍ନି ଗଭୀର ତତ୍ତ୍ୱ ତୁମ୍ଭର ଗୋଚର
କହ ଏ ବିଶ୍ୱାସୀ ଜନେ ଏ ଦ୍ୱିତୀୟ ବର ।"

ମୃତ୍ୟୁଦେବ ପୁଣି କହିଛନ୍ତି—"ତଥାସ୍ତୁ' ! ବିସ୍ତୃତଭାବରେ କହିଛନ୍ତି—ଅଗ୍ନିଙ୍କର ସ୍ୱରୂପ, କେମିତି ସେଇ ଅଗ୍ନି ସଞ୍ଚୟନ କରିବାକୁ ହେବ । ଯାହା ଯାହା ଉପଦେଶ ସେ ଦେଇଛନ୍ତି ନଚିକେତା ତାଙ୍କ ସମ୍ମୁଖରେ ତାହା ଅବିକଳ ଆବୃତ୍ତି କରି ଯାଇଛନ୍ତି ।

ମୃତ୍ୟୁଦେବ ତା' ଶୁଣି ସନ୍ତୁଷ୍ଟ ସନ୍ତୋଷରେ ନିଦର୍ଶନ ସ୍ୱରୂପ ସେ ପୁଣି କହିଛନ୍ତି—

ତବୈବ ନାମ୍ନା ଭବିତାଽୟମଗ୍ନିଃ ।

ଏହି ଅଗ୍ନି ତୁମ ନାମରେ ଅର୍ଥାତ୍ ନାଚିକେତସ ଅଗ୍ନି ନାମରେ ଅଭିହିତ ହେବେ ।

"ନଚିକେତା ଅଗ୍ନି ବୋଲି ହେବେ ସେ ବିଦିତ ।"

ତାପରେ ତୃତୀୟ ବର କଥା

ଯେୟଂ ପ୍ରେତେ ବିଚିକିତ୍ସା ମନୁଷ୍ୟେ-
ଽସ୍ତୀତ୍ୟେକେ ନାୟମସ୍ତୀତି ଚୈକେ ।
ଏତଦ୍ ବିଦ୍ୟାମନୁଶିଷ୍ଟସ୍ତ୍ୱୟାଽହଂ
ବରାଣାମେଷ ବରସ୍ତୃତୀୟଃ ॥

"କହେ ନଚିକେତା, "ମନେ ଲାଗେ ମୋ ସନ୍ଦେହ
କି ହୁଏ ମାନବ ? ଯେବେ ତେଜେ ମର ଦେହ ।
କହନ୍ତି କେତେକ ଆତ୍ମା ଯାଏ ପର ଲୋକ,
ବିଶ୍ୱାସ କରନ୍ତି ନାହିଁ ପରଲୋକେ ଥୋକେ ।
ଚିରକାଳ ରହିଛି ଏ ସଂଶୟ ଜଗତେ,
ଦିଅ ଉପଦେଶ ଯେହ୍ନେ ଯିବ ମୁଁ ପରତେ ।
ପରଲୋକ ତତ୍ତ୍ୱ ପ୍ରଭୁ ହେଉ ମୋ ଗୋଚର
ଦୟା କରି ଦିଅ ମତେ ଏ ତୃତୀୟ ବର ।"

ଆତ୍ମ ତତ୍ତ୍ୱ ଜ୍ଞାନର ଉପଯୁକ୍ତ କି ନା ପରୀକ୍ଷା କରିବାକୁ ଯମ ନଚିକେତାଙ୍କୁ ଅନୁରୋଧ କରିଛନ୍ତି ତୃତୀୟ ବର ଛଡ଼ା ଅନ୍ୟ ବର ମାଗିବା ପାଇଁ—ମାତ୍ର ବ୍ରାହ୍ମଣ ଯୁବକ ହୃଦୟର ଦୃଢ଼ତା ପ୍ରକାଶ କରିଛନ୍ତି ଅବିଚଳିତ କଣ୍ଠରେ ।

ଦେବୈରତ୍ରାପି ବିଚିକିତ୍ସିତଂ କିଲ
ତ୍ୱଂ ଚ ମୃତ୍ୟୋ ଯନ୍ନ ସୁବିଜ୍ଞେୟ ମାତ୍ଥ ।
ବକ୍ତା ଚାସ୍ୟ ତ୍ୱାଦୃଗନ୍ୟୋ ନ ଲଭ୍ୟୋ
ନାନ୍ୟୋ ବରସ୍ତୁଲ୍ୟ ଏତସ୍ୟ କଶ୍ଚିତ୍ ॥
—ବୋଇଲେ ନଚିକେତା, "ଯାହା କହିଲ ଆପଣ
ଏ ତତ୍ତ୍ୱେ ସଂଶୟ ପୂର୍ବେ କଲେ ଦେବଗଣ ।
ଇତର ଜନର ଏହା ନୁହଇ ସୁଗମ
ସତ୍ୟ, ମାତ୍ର ତୁମ୍ଭ ପରି କାହିଁ ଅନ୍ୟତମ ।
ଏ ତତ୍ତ୍ୱର ଉପଯୁକ୍ତ ବକ୍ତା ଦଣ୍ଡଧର,
ଏହା ବିନୁ ନାହିଁ ମୋର ଲୋଡ଼ା ଅନ୍ୟବର ।"

ମୃତ୍ୟୁ ପୁନର୍ବାର କହନ୍ତି—

ଶତାୟୁଷଃ ପୁତ୍ର ପୌତ୍ରାନ୍ ବୃଣୀଷ୍ୱ
ବହୂନ୍ ପଶୂନ୍ ହସ୍ତି ହିରଣ୍ୟମଶ୍ୱାନ୍ ।
ଭୂମେ ର୍ମହଦାୟତନଂ ବୃଣୀଷ୍ୱ
ସ୍ୱୟଂ ଚ ଜୀବ ଶରଦୋ ଯାବଦିଚ୍ଛସି ॥

ଏତ ତୁଲ୍ୟଂ ଯଦି ମନ୍ୟସେ ବରଂ
ବୃଣୀଷ୍ୱ ବିତ୍ତଂ ଚିରଜୀବିକାଂ ଚ ।
ମହାଭୂମୌ ନଚିକେତସ୍ତ୍ୱମେଧି
କାମାନାଂ ତ୍ୱାଂ କାମଭାଜଂ କରୋମି ॥

ଯେ ଯେ କାମା ଦୁର୍ଲଭା ମର୍ତ୍ତ୍ୟଲୋକେ
ସର୍ବାନ୍ କାମାଂଶ୍ଛନ୍ଦତଃ ପ୍ରାର୍ଥୟସ୍ୱ ।
ଇମା ରାମାଃ ସରଥାଃ ସତୂର୍ଯ୍ୟାଃ
ନହୀ ଦୃଶା ଲମ୍ଭନୀୟା ମନୁଷ୍ୟୈଃ ॥

ଅଭ୍ୟର୍ମତ୍ପ୍ରତ୍ତାଭିଃ ପରିଚାରୟସ୍ୱ
ନଚିକେତୋ ମରଣଂ ମାନୁପ୍ରାକ୍ଷୀ ॥

"ବଢ଼ିବାକୁ ନଚିକେତା ହୃଦୟ ଦୃଢ଼ତା
କହିଲେ ଦେଖାଇ ଲୋଭ ସେ ଯମ ଦେବତା ।
"ଶତବର୍ଷ ଯାଏଁ ଜୀବୀ ପୁତ୍ର ପୌତ୍ରଚୟ
ମାଗ ଅଗଣିତ ଧେନୁ ସ୍ୱର୍ଣ୍ଣହସ୍ତୀ ହୟ ।
ମାଗ ହେ ଧରଣୀ ତଳ ମହା ଆୟତନ,
ଯେତେ କାଳ ଇଚ୍ଛା ରହ ଧରିଣ ଜୀବନ ।
ଅବା ଏହି ପରି ଅନ୍ୟ ଯାହା ବାଞ୍ଛା ତବ
ମାଗ ଚିରାୟୁଷ, ମାଗ ଅତୁଳ ବିଭବ ।
ବିଶାଳ ମଣ୍ଡଳେ ତୁମ୍ଭେ ହୁଅ ଅଧୀଶ୍ୱର
ପୂର୍ଣ୍ଣ କରିବି ମୁଁ ଯେତେ କାମନା ତୁମ୍ଭର ।"

ଯେ ସୁଖ ସୌଭାଗ୍ୟ ନିତ୍ତ ମାଗଇ ମାନବ
ମର୍ତ୍ତ୍ୟବାସୀ ନରେ ଯାହା ଅତ୍ୟନ୍ତ ଦୁର୍ଲଭ ।
ସ୍ୱଚ୍ଛନ୍ଦେ ମାଗ ସେ ସର୍ବ କର ଯା କାମନା
ଦେଖୁଅଛ ଏଥି ଯେତେ ଅମର ଅଙ୍ଗନା ।

ଗୃହରତ୍ନ ସୁଖଚିତ ସୁନ୍ଦର ସ୍ୟନ୍ଦନ,
ଶୁଣୁଛ ଯେ ତୂର୍ଯ୍ୟ ଭେରୀ ବାଦ୍ୟର ନିଃସ୍ୱନ ।

ମାନୁଷ ଦୁର୍ଲଭ ଏହୁ ଅଶେଷ ସଂପଦ
ଖଟନ୍ତୁ ଏସବୁ, ବତ୍ସ, ସଦା ତୁମ୍ଭ ପଦ ।
କିନ୍ତୁ ନଚିକେତା ଘେନ ମୋର ନିବେଦନ
ନ ପଚ୍ଛର ମୃତ୍ୟୁ ତତ୍ତ୍ୱ କଦାପି ଆପଣ ।"

ନଚିକେତା ଉତ୍ତର ଦେଇଛନ୍ତି—

ନ ବିତ୍ତେନ ତର୍ପଣୀୟୋ ମନୁଷ୍ୟୋ
ଲପ୍ସ୍ୟାମହେ ବିତ୍ତମଦ୍ରାକ୍ଷ୍ମ ଚେତ୍ ତ୍ୱା ।
ଜୀବିଷ୍ୟାମୋ ଯାବଦୀଶିଷ୍ୟସି ତ୍ୱଂ
ବରସ୍ତୁ ମେ ବରଣୀୟଃ ସ ଏବ ॥

"ବିପୁଳ ବିଭବେ ନର ନପାଏ ତୃପତି
ବିଶେଷେ ସାକ୍ଷାତ ତବ ଯେବେ ଜନୁପତି ।
ଘଟିଛି ମୋ ଭାଗ୍ୟେ, ବିତ୍ତ ମିଳିବ ନିଶ୍ଚୟ
ତବ ଯମ ପଣେ ମୋର ନାହିଁ ମୃତ୍ୟୁଭୟ ।
ତେଣୁ ମୋର ଅନ୍ୟ ବାଞ୍ଛା ନାହିଁ ଯମରଜ,
ଦିଅ ଆଦ୍ୟବର କହ ମୃତ୍ୟୁ ତତ୍ତ୍ୱ ଆଜି ।

ଶେଷରେ ପୁଣି କହୁଛନ୍ତି—

ଯସ୍ମିନ୍ନିଦଂ ବିଚିକିତ୍ସନ୍ତି ମୃତ୍ୟୋ
ଯତ୍ ସାମ୍ପରାୟେ ମହତି ବ୍ରୂହି ନସ୍ତତ୍ ।
ଯୋଽୟଂ ବରୋ ଗୂଢ଼ମନୁପ୍ରବିଷ୍ଟୋ
ନାନ୍ୟଂ ତସ୍ମାନ୍ନଚିକେତା ବୃଣୀତେ ।

"ମରଣ ଅନ୍ତରେ ଆତ୍ମା ଥାଏ ବା ନ ଥାଏ
ମର୍ତ୍ତ୍ୟେ ଲୟ ପାଏ କିବା ପରଲୋକେ ଯାଏ ।
ଚିରଦିନ ମାନବର ରହିଛି ସଂଶୟ
ଅତି ଗୁରୁ ଗହନ ଏ ନିଗୂଢ଼ ନିଶ୍ଚୟ ।
ଦିଅ ଉପଦେଶ, କର ସଂଶୟ ମୋଚନ,
ନାହିଁ ମୃତ୍ୟୁ ମୋର ଅନ୍ୟ ବରେ ପ୍ରୟୋଜନ ।"

ଯମଙ୍କର ପରୀକ୍ଷା ଶେଷ, ବ୍ରହ୍ମଜ୍ଞାନର ଆଜ ଯୋଗ୍ୟ ଅଧିକାରୀ କିଏ ? ଯୋଗ୍ୟ ଗୁରୁ ସଙ୍ଗରେ ଯୋଗ୍ୟ ଶିଷ୍ୟଙ୍କର ସାକ୍ଷାତ । ଶିଷ୍ୟଙ୍କୁ ଅଭିନନ୍ଦନ ଜଣାଇ ଯମରାଜ ହୃଦୟ ଖୋଲିଛନ୍ତି ଉଚ୍ଛ୍ୱସିତ ଭାଷାରେ —

ଅନ୍ୟଚ୍ଛ୍ରେୟୋଽନ୍ୟଦୁତୈବ ପ୍ରେୟ—
ସ୍ତେ ଉଭେ ନାନାର୍ଥେ ପୁରୁଷଂ ସିନୀତଃସ୍ତ ।
ତୟୋ ଶ୍ରେୟ ଆଦଦାନସ୍ୟ ସାଧୁ
ଭବତି ହୀୟତେଽର୍ଥାଦ୍ୟଉ ପ୍ରେୟୋ ବୃଣୀତେ ॥

"ଶ୍ରେୟ ଯାହା ମାନବର ମୋକ୍ଷ ବିଧାୟକ
ପ୍ରେୟ ଯାହା ଲୋଡ଼େ ନର ତହିଁରୁ ପୃଥକ ।
ଶ୍ରେୟ ପ୍ରେୟ ବେନି ଭାବେ ଆବଦ୍ଧ ମାନବ
ପ୍ରେୟ ପଥେ ଲଭଇ ସେ ସଂସାର ବିଭବ ।

ଶ୍ରେୟ ପଥ ଅନୁସରି କାଟେ ଭବ ପାଶ
ପାଏ ପୁରୁଷାର୍ଥ ଯାର ନାହିଁ କେବେ ନାଶ ।
ଲୋଡ଼ଇ ଯେ ପ୍ରେୟ ପଥ ଧନ ଦାରା ଲୋଭେ
ହରାଇ ପରମ ପଦ ପଡ଼େ ଚିର କ୍ଷୋଭେ ।

ତାପରେ ଯମ କହୁଛନ୍ତି
ବିବୃତଂ ସଦ୍ମଂନଚିକେତସଂ ମନ୍ୟେ ।

ତାପରେ କହୁଛନ୍ତି ଆତ୍ମତତ୍ତ୍ୱ—ଆତ୍ମାର ସ୍ୱରୂପ ।

ନଜାୟତେ ମ୍ରିୟତେ ବା ବିପଶ୍ଚି—
ନ୍ନାୟଂ କୁତଶ୍ଚିନ୍ନ ବଭୂବ କଶ୍ଚିତ୍ ।
ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ
ନ ହନ୍ୟତେ ହନ୍ୟମାନେ ଶରୀରେ ॥

"ଆତ୍ମଜ୍ଞାନଲାଭେ ଯେବେ ବିଶ୍ୱ ବ୍ରହ୍ମମୟ
ନାହିଁ ଜନ୍ମ, ନାହିଁ ମୃତ୍ୟୁ, ନାହିଁ ବୃଦ୍ଧିକ୍ଷୟ ।
ନାହିଁ ଅନ ହେତୁ ଯେଣୁ ଆତ୍ମାର ସମ୍ଭବ"
ନୁହଇ ଆତ୍ମାରୁ ଅନ୍ୟ ବସ୍ତୁ ସମୁଦ୍ଭବ ।

ଜନ୍ମ ମରଣବିହୀନ ଆତ୍ମା ନିତ୍ୟ ସନାତନ
ନିର୍ବିକାର ଶାଶ୍ୱତ ସେ ସର୍ବଦା ନୂତନ ।
ବିଶ୍ୱବସ୍ତୁ ରହନ୍ତି, ରହନ୍ତି, ଆତ୍ମା ସୁପ୍ରକାଶ
ଶରୀର ବିନାଶେ ଆତ୍ମା ଯାଏ ନାହିଁ ନାଶ ।

ଅଣୋରଣୀୟାନ୍ମହତୋମହୀୟାନ୍—
ନାତ୍ମାସ୍ୟ ଜନ୍ତୋର୍ନିହିତୋ ଗୁହାୟାମ୍ ।
ତମକ୍ରତୁଃ ପଶ୍ୟତି ବୀତଶୋକୋ
ଧାତୁଃ ପ୍ରସାଦାନ୍ମହିମାନମାତ୍ମନଃ ।

ସୂକ୍ଷ୍ମତମ ପରମାଣୁ ତହୁଁ ସୂକ୍ଷ୍ମାକାର
ବୃହତ୍ତମୁ ବୃହତ୍ତମ ଆତ୍ମାର ବିସ୍ତାର ।
ପ୍ରାଣିଗଣ ହୃଦେ ଆତ୍ମା ନିହିତ ନିଭୃତ
ଗିରି ଦରୀ ଅଭ୍ୟନ୍ତରେ ହର୍ମ୍ୟିକ ଯେମନ୍ତ ।
କାମ ତ୍ୟାଗେ ପରିପୂତ ଯାହାର ଅନ୍ତର
ଦୁଃଖ ଶୋକ ଅତିକ୍ରମ କରିଛି ସେ ନର ।
ଆତ୍ମାର ମହିମା ସେହି ଦେଖେ, ଉପଭୋଗେ
ପ୍ରସନ୍ନ ଇନ୍ଦ୍ରିୟ ମନ ଶୁଦ୍ଧ ବୁଦ୍ଧି ଯୋଗେ ।"

ତାହା ଯେ ବିଦ୍ୟା ବୁଦ୍ଧି ଜ୍ଞାନ ଦ୍ୱାରା ସୁଲଭ ନୁହେ ତାହା ମଧ୍ୟ କହିଛନ୍ତି—

ନାୟମାତ୍ମା ପ୍ରବଚନେନ ଲଭ୍ୟୋ
ନ ମେଧୟା ନ ବହୁଧା ଶ୍ରୁତେନ ।
ଯମେବୈଷ ବୃଣୁତେ ତେନ ଲଭ୍ୟ—
ସ୍ତସ୍ୟୈଷ ଆତ୍ମା ବିବୃଣୁତେ ତନୂଂ ସ୍ୱାମ୍ ।।

"ମିଳେ ନାହିଁ ଆତ୍ମଲାଭ ଶାସ୍ତ୍ର ଅଧ୍ୟୟନେ
ଶାସ୍ତ୍ରାର୍ଥେ ଶ୍ରବଣେ ଅବା କେବଳ ଧାରଣେ ।
ଆତ୍ମାର ସ୍ୱରୂପ ଜ୍ଞାନେ କରେ ଯେ ସାଧନା
ଦୂରେ ପରିହରି ହୃଦୁଁ ସକଳ କାମନା ।

ନିଜ ପରମାର୍ଥ ରୂପ ସେ ସାଧକ ପାଶେ
ମୋହ ଅନ୍ଧକାର ନାଶି ଆତ୍ମା ପରକାଶେ ।"

ଏ ଶରୀର ଯେମିତି ଏକ ରଥ, ଆତ୍ମା ରଥୀ, ବୁଦ୍ଧି ସାରଥି, ମନ ରଶ୍ମି ଓ ଇନ୍ଦ୍ରିୟ ଗଣ ଅଶ୍ୱ । ଇନ୍ଦ୍ରିୟଠାରୁ ମନ ଶ୍ରେଷ୍ଠ, ମନଠାରୁ ବୁଦ୍ଧି, ବୁଦ୍ଧିଠାରୁ ପ୍ରକୃତି, ପ୍ରକୃତିଠାରୁ ପୁରୁଷ ଶ୍ରେଷ୍ଠ, ପୁରୁଷ ହିଁ ଶେଷ ସୀମା, ଶେଷ କାଷ୍ଠା—ତା ପରେ ଆଉ କିଛି ନାହିଁ ।

ପରମାତ୍ମା ପରମ ପୁରୁଷଙ୍କ ସମ୍ବନ୍ଧରେ ବହୁତ ପ୍ରସଙ୍ଗ ବିଶ୍ଳେଷଣ କରି ତାପରେ ଯମରାଜ ନଚିକେତାଙ୍କୁ ଶୁଣାଉଛନ୍ତି ଉଦ୍‌ବୋଧନ—

ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ ।
କ୍ଷୁରସ୍ୟ ଧାରା ନିଶିତା ଦୁରତ୍ୟୟା ଦୁର୍ଗଂ ପଥସ୍ତତ୍ କବୟୋ ବଦନ୍ତି ॥

"ଉଠ ହେ ମୁମୁକ୍ଷୁ ଚେତ ଜାଗହେ ସତ୍ୱର
ଛାଡ଼ି ଘୋର ମୋହ ନିଦ୍ରା ଦୂରେ ପରିହର ।
ବରେଣ୍ୟ ବ୍ରହ୍ମଜ୍ଞ ଗୁରୁ ପଦାଶ୍ରୟେ ଆସି
ପ୍ରବୁଦ୍ଧ ଜାଗ୍ରତ ହୁଅ ହେ ମୋକ୍ଷ ପ୍ରୟାସୀ ।
କହନ୍ତି ତ୍ରିକାଳଦର୍ଶୀ କ୍ଷୁରଧାର ସମ
ବ୍ରହ୍ମତତ୍ତ୍ୱ ମାର୍ଗ ଏହୁ ଶାଣିତ ଦୁର୍ଗମ ।
ସୁଦୃଢ଼ ସାଧନା ବିନା ଅସାଧ୍ୟ ଅତ୍ୟନ୍ତ
ଉଠ ନର, ଜାଗ ଲଭ ସିଦ୍ଧି ସୁନିଶ୍ଚିତ ।"

ସବାଶେଷରେ କହୁଛନ୍ତି "ହେ ବ୍ରାହ୍ମଣ, ଯେଉଁ ଜ୍ୟୋତିର୍ମୟଙ୍କ ପ୍ରକାଶରେ ବିଶ୍ୱର ପ୍ରକାଶ—ଯାହାଙ୍କର ଶକ୍ତିରେ ନିଖିଳ ବିଶ୍ୱ ଉଦ୍ଭାସିତ ସେ ଉଦ୍ୟତ ବଜ୍ର, ମହାଭୟଙ୍କର, ତାଙ୍କରି ଭୟରେ ଅଗ୍ନି ଦେଉଛନ୍ତି ଉତ୍ତାପ, ସୂର୍ଯ୍ୟ ଦେଉଛନ୍ତି ଆଲୋକ, ଇନ୍ଦ୍ର, ଚନ୍ଦ୍ର, ବାୟୁ, ଯମ ପ୍ରଭୃତି ଲୋକପାଳ ରହିଛନ୍ତି ଭୟରେ ନିଜ ନିଜର କର୍ମରେ ବ୍ୟାପୃତ । ବାକ୍ୟ, ଚକ୍ଷୁ କିମ୍ବା ମନ ଦ୍ୱାରା ତାଙ୍କୁ ଉପଲବ୍ଧି କରାଯାଇପାରେ ନାହିଁ, ସେ ପୁରୁଷ ସମସ୍ତଙ୍କର ଅନ୍ତରାତ୍ମା ରୂପରେ ହୃଦୟରେ ସନ୍ନିବିଷ୍ଟ, ସେହି ହେଉଛନ୍ତି ଅମୃତ—ଶୁଦ୍ଧ ଅମୃତ ।

ଯମଙ୍କଠାରୁ ନଚିକେତା ଅବହିତ ହୋଇ ଶୁଣିଛନ୍ତି—ମର୍ମେ ମର୍ମେ ଉପଲବ୍ଧି କରିଛନ୍ତି ଆତ୍ମତତ୍ତ୍ୱ—ସର୍ବବିଧଯୋଗ ବିଧି—ଅନ୍ତରେ ଅନ୍ତରେ ପାଇଛନ୍ତି ମୃତ୍ୟୁ-ରହିତ ବିଶୁଦ୍ଧ ବ୍ରହ୍ମତତ୍ତ୍ୱ ।

କଠ ଉପନିଷଦର ଏହି ଅମୃତ ଚରିତ ହିଁ "ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନ"ର ବିଷୟ ବସ୍ତୁ ।

କଠ ଉପନିଷଦର ଉପାଖ୍ୟାନ ଦ୍ୱିତୀୟ ଅଧ୍ୟାୟ, ତୃତୀୟ ବଲ୍ଲୀରେ ସମାପ୍ତ । ମାତ୍ର ଗୋପବନ୍ଧୁ ଚତୁର୍ଥ ବଲ୍ଲୀରେ ମହାଭାରତର ଅନୁଶାସନ ପର୍ବର ଗୋଦାନ ଓ ଗୋ ସେବା କଥାର ଅବତାରଣା କରିଛନ୍ତି ।

ଯମ ଠାରୁ ନଚିକେତା ଲଭି ବ୍ରହ୍ମଜ୍ଞାନ,
ବାହୁଡ଼ି ମିଳିଲେ ଆସି ପିତୃ ସନ୍ନିଧାନ ।
ଅଚେତନ ପିଣ୍ଡେ ଯେବେ ଜାଗିଲା ଚେତନା,
ଉଠି ପୁତ୍ର କଲେ ପିତୃ ଚରଣ ବନ୍ଦନା ।

ଜୀବନ୍ତ ତନୟେ ଦେଖି ପିତା ହରଷିତ,
ଦରିଦ୍ର ପାଇଲେ ଯଥା ଶରଧିର ବିତ୍ତ
"ଧନ୍ୟ ନଚିକେତା, ଧନ୍ୟ ତୋର ପୁଣ୍ୟରାଶି,
ତ୍ରିପୁର ଜିଣିଲୁ ବାବୁ ହୋଇ ମର୍ତ୍ତ୍ୟ ବାସୀ ।
ଦେବବଳେ ପାଇଲୁ ତୁ ଜନମ ଆବର,
ତୋହର ଶରୀର ନୁହେ ନର କଳେବର ।
କହ ପୁତ୍ର ଦେଖିଲୁ ତୁ କିସ ମୃତ୍ୟୁପୁରେ,
କି କର୍ମେ କି ଫଳ ଜନ ଲଭେ ଯମ ଘରେ ?"

ଗୋ-ମାହାତ୍ମ୍ୟରେ ଯାହା ଉଲ୍ଲେଖିତ ହୋଇଅଛି ସେହି କଥାର ପୁନରୁଦ୍ଧାର ହୋଇଛି ନିମ୍ନୋକ୍ତ ପଦସ୍ତବକରେ—

ବାହୁଡ଼ି ଆସିଲା ନନ୍ଦନ
ହେଲା ସେ ଶବ ସଚେତନ ।

ପୁତ୍ର ନମିଲା ପିତା ପାଦେ
ଆନନ୍ଦେ ଭକ୍ତି ଗଦଗଦେ ।
ସକଳେ ଦେଖି ଆନନ୍ଦିତ
ପିତା ହୋଇଲେ ହରଷିତ ।

ଦରିଦ୍ର ଯେହ୍ନେ ହରା ବିତ୍ତ
ପାଇଣ ହୁଅଇ ଉନ୍ମତ୍ତ ।
ପିତା ବୋଇଲେ—ଧନ୍ୟ ଧନ୍ୟ,
କହିଲେ ମୋର ବହୁ ପୁଣ୍ୟ ।

କହନ୍ତି ପୁତ୍ରେ ପରଶଂସି
ତୁ ନୋହୁ ବାବୁ ମର୍ତ୍ତ୍ୟବାସୀ ।
ନବ ଜନମ ଦୈବ ବଳେ
ପାଇଲୁ ନିଜ କର୍ମ ଫଳେ ।

କହ ତନୟ ଫେଡ଼ି ମୋରେ
କିସ ଦେଖିଲୁ ମୃତ୍ୟୁ-ପୁରେ ?
କିପରି କର୍ମଫଳ ନରେ
ଭୁଞ୍ଜନ୍ତି ଯାଇ ଯମପୁରେ ।

ମୃତ୍ୟୁଦେବ ନଚିକେତାଙ୍କୁ ତିନୋଟି ବର ମାଗିବାକୁ କହିଛନ୍ତି— ଯାହା କଠ ଉପନିଷଦରେ ଦେଖିବାକୁ ମିଳେ । ମାତ୍ର ଗୋପବନ୍ଧୁ ଚତୁର୍ଥ ବଲ୍ଲୀର ସଂଯୋଜନା କରି ତହିଁରେ ମହାଭାରତର ନାଚିକେତ ଉପାଖ୍ୟାନ ଯେପରି ଭାବରେ ଉପସ୍ଥାପିତ କରିଅଛନ୍ତି ତାହା "ନଚିକେତା ଉପଖ୍ୟାନ"ର ସାମଞ୍ଜସ୍ୟ ଓ ପ୍ରାସଙ୍ଗିକତା ରକ୍ଷା କରି ପାରୁ ନାହିଁ । ନିମ୍ନୋକ୍ତ ଉଦ୍ଧୃତିରେ ତାହା ସ୍ପଷ୍ଟଭାବରେ ଜଣାଯାଉଅଛି ।

"ମୋ ପୁରେ ଅତିଥି ତୁମ୍ଭେ ଯାହା ଇଚ୍ଛା ମାଗ ।
ସାଦରେ ଏ କ୍ଷଣେ ସବୁ ଦେବ ମହାଭାଗ ।

× × ×

ଯମରାଜ ବାକ୍ୟେ ମୁହିଁ କଲି ନିବେଦନ,
ଆସିଅଛି ତବ ପୁରେ ହେ ଯମ ରାଜନ ।
ଏ ଦେଶକୁ ଆସି କେହି ବାହୁଡ଼ି ନ ଯାଏ
କର ଅନୁଗ୍ରହ ଯେବେ ଆହେ ଜନ୍ତୁ ରାଏ ।

ଲଭନ୍ତି ସୁକୃତବନ୍ତ ଜନେ ଯେ ଯେ ଦେଶ
ଦେଖିବି ସେ ସବୁ ଦେବ କର ହେ ଆଦେଶ ।"
ତହୁଁ ଯମ ବସାଇଲେ ମତେ ଦିବ୍ୟ ଯାନେ
ନିଜପୁରେ ବୁଲାଇଲେ ନେଇ ନାନାସ୍ଥାନେ ।
ବସନ୍ତି ପ୍ରମୋଦେ ଯହିଁ ପୁଣ୍ୟବନ୍ତ ଜନ
ଦେଖିଲି ସେ ସବୁ ଦିବ୍ୟ ରତ୍ନ ନିକେତନ ।

ଗୋ-ମାହାତ୍ମ୍ୟର ପଂକ୍ତିମାନଙ୍କ ସହିତ ତୁଳନା କଲେ ତାହା ଭିନ୍ନ ନୁହେଁ ।

ଯେ ବର ତୁମ ଇଚ୍ଛା ମାଗ
ଦେବି ମୁଁ ଏବେ ମହାଭାଗ ।
ଯମର ଶୁଣି ଏ ଭକତି
କହିଲି—ଦେବ ଜନ୍ତୁପତି ।
ପିତୃ ଆଦେଶେ ଏତେ ଦୂରେ
ଆସିଛି ମୁହିଁ ତବ ପୁରେ ।
ଏଠାକୁ ଆସି କେହି ପ୍ରାଣୀ
ନ ଫେରେ ମର୍ତ୍ତ୍ୟପୁରେ ପୁଣି ।

ଯାହିଁ ସୁକୃତ.ବନ୍ତ ନରେ
ବସନ୍ତି ଆସିଣ ଏ ପୁରେ ।
ସୁକୃତ ଫଳେ ଯେ ଯେ ଲୋକେ
ବସନ୍ତି ନିଶ୍ଚିନ୍ତେ ବିଶୋକେ ।
ସେ ସବୁ ମତେ ଦୟାକରି
ଦେଖାଅ ଯମ ଦଣ୍ଡଧାରି ।

ତହୁଁ ସେ ଯମ ବିବ୍ୟଯାନେ
ବସାଇ ମତେ ନାନା ସ୍ଥାନେ
ଦେଖାଇ ବୁଲାଇଲେ ଧୀର
ଅତି ଅଦ୍ଭୁତ ମନୋହର ।

ପିତାଙ୍କ ନିକଟରେ ମୃତ୍ୟୁଲୋକ ବିଷୟ କହିବା ବେଳେ ନଚିକେତା ତିନିବର କଥା ଆଦୌ ଉତ୍‌ଥାପନ କରି ନାହାନ୍ତି । କେବଳ କହିଛନ୍ତି ମୃତ୍ୟୁପୁରରେ ତାଙ୍କର ପରିଭ୍ରମଣ···ଏବଂ ଘରେ ଘରେ ଗୋଦାନ, ଗୋ-ସେବା ଇତ୍ୟାଦି ବିଷୟ ।

"ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନରେ" ଗୋପବନ୍ଧୁଙ୍କ ଚତୁର୍ଥ ବଲ୍ଲୀର ସଂଯୋଜନା ଅନାବଶ୍ୟକ ଓ ଅପ୍ରାସଙ୍ଗିକ ହୋଇପଡ଼ିଛି । ବ୍ରହ୍ମତତ୍ତ୍ୱର ମାର୍ମିକ ସ୍ୱର ସୁରକ୍ଷିତ ହୋଇ ପାରିନାହିଁ ।

## ଗୋ ମାହାତ୍ମ୍ୟ

ଆମ ଦେଶରେ ଗୋ ଜାତିର ଦୁରବସ୍ଥା ଯାହା, ତାହା ଅତ୍ୟନ୍ତ କାରୁଣ୍ୟ-ପୂର୍ଣ୍ଣ । ମହାତ୍ମା ଗାନ୍ଧିଙ୍କ ଭାଷାରେ "Cow in India is a poem of pity." । ତେଣୁ ଗୋପବନ୍ଧୁ ସେଇ କରୁଣ କାବ୍ୟ ଉପରେ ଆଉ ଏକ କାବ୍ୟ ସୃଷ୍ଟି କରିଛନ୍ତି । ତାହା କବିତାରେ ମିଥ୍ୟାପ୍ରମାଣ କବିତା ହୋଇ ପାରେ, ମାତ୍ର ତାହା ତାଙ୍କର ସଂବେଦନଶୀଳ ହୃଦୟର ଆତ୍ମପ୍ରକାଶ ।

"ଗୋ ମାହାତ୍ମ୍ୟ" କାବ୍ୟ ଓ ଭାଷା ଦିଗରୁ ସଂପୂର୍ଣ୍ଣ ପୁରାଣ-ଭିତ୍ତିକ । ଯେଉଁ ଓଡ଼ିଆ ଭାଗବତ ଆମ ଦେଶର ଗ୍ରାମେ ଗ୍ରାମେ, ଲୋକ-ମାନଙ୍କର ମୁଖେ ମୁଖେ ଗୁଣା ଅଧିକେ, ଉଚ୍ଚାରିତ ଓ ଉଦାହୃତ ସେଇ ସର୍ବଜନପ୍ରିୟ ଭକ୍ତକବି ଜଗନ୍ନାଥ ଦାସଙ୍କ ଅମର କୃତିର ଭାଷା ଓ ଛନ୍ଦ ଅନୁସରଣ କରିଛନ୍ତି ତାଙ୍କର ସେଇ ଗୋମାହାତ୍ମ୍ୟରେ ।

ଗୋମତୀ ତୀରେ ପୁଣ୍ୟବନ,
ଶୀତଳ ବହଇ ପବନ ।
ବିରାଜେ ନାନା ଜାତି ଦ୍ରୁମ
ଫୁଟଇ ବିବିଧ କୁସୁମ ।
ମୃଗ ବରାହ କୃଷ୍ଣସାର
କରନ୍ତି ସ୍ୱଚ୍ଛନ୍ଦେ ବିହାର ।

—ପ୍ରଥମ ଅଧ୍ୟାୟ

ପ୍ରାଚୀନ ଛାନ୍ଦ କାବ୍ୟ ଓ ଗୀତମାନଙ୍କରେ ଭଣିତା ଥିଲା ଭଳି ପୂର୍ବ ସୂରୀମାନଙ୍କୁ ଅନୁକରଣ କରି ତାହା ମଧ୍ୟ କରିଛନ୍ତି—

ଗୋ ସେବା ବ୍ରତ ପୁଣ୍ୟବନ୍ତି
ତୁମ୍ଭ ମରଣୁ ବିଶ୍ୱବାସୀ
ଶିଖି ଲଭନ୍ତି ସ୍ୱର୍ଗବାସ
ଗୀତେ ଭଣିଲ ଗୋପଦାସ ।

ଗୋ ମାହାତ୍ମ୍ୟ ପ୍ରାଚୀନ ଶୈଳୀରେ ଦେଶର ପାଠକ ପାଠିକାମାନଙ୍କ ସମ୍ମୁଖରେ ଉପସ୍ଥାପିତ । ସର୍ବମୋଟ ୨୧ ଅଧ୍ୟାୟ । ନିମ୍ନଲିଖିତ ମତେ ଗୋଜାତିର ଚରିତ ଓ ସମସ୍ୟା ପରିବେଷିତ ହୋଇଅଛି ।

ବେଦବ୍ୟାସଙ୍କର ମହାଭାରତର ଅନୁଶାସନ ପର୍ବରେ ଗୋଜାତିର ବିଷୟ ପ୍ରାଞ୍ଜଳଭାବରେ ଚର୍ଚ୍ଚିତ । ଗୋପବନ୍ଧୁ ତାʼର ଅବଲମ୍ବନରେ ୫୦ ଠାରୁ ୮୩ ଅଧ୍ୟାୟ ପର୍ଯ୍ୟନ୍ତ ନିଜ ରଚନାରେ ସଦୁପଯୋଗ କରିଛନ୍ତି ।

ଗୋ ମାହାତ୍ମ୍ୟର ଆରମ୍ଭ—

ଗୋମତୀ ତୀରସ୍ଥ ବନଭୂମି—ପ୍ରକୃତିର ମନୋଜ୍ଞ ପରିବେଶ ଅଜସ୍ର ଫୁଲ ଫଳର ଜନ୍ମଭୂମି, ପଶୁପକ୍ଷୀମାନଙ୍କର ଲୀଳାଭୂମି । ସେଠି ଜଣେ ମୁନିଙ୍କର ଆଶ୍ରମ—ସାଥିରେ ଋଷିପତ୍ନୀ, ଜଣେ ଶିଷ୍ୟ—ଗୁରୁଙ୍କ ନିକଟରୁ ଅଧ୍ୟୟନ କରୁଛନ୍ତି ବେଦ, ପୁରାଣ ଓ ଇତିହାସ । ଆଶ୍ରମ ଧେନୁର ଲାଳନ ଓ ପାଳନ ତାଙ୍କରି ଦାୟିତ୍ୱରେ । ଦିନେ ଅରଣ୍ୟରେ

ଧେନୁକୁ ଛାଡ଼ି ଦେଲେ, ସୃଷ୍ଟିର ପ୍ରଥମ ଉତ୍ପତ୍ତି ବିଷୟ ଚିନ୍ତା କରୁ କରୁ ଧେନୁ ଚାଲିଯାଇଛି ବହୁତ ଦୂର । ଦିନ ଅବସାନରେ ଶିଷ୍ୟ ଆଉ ତାର ସନ୍ଧାନ କରି ପାରି ନାହାନ୍ତି—ବହୁତ ଖୋଜିଛନ୍ତି···ପାଇ ନାହାନ୍ତି—ବହୁତ ଖୋଜିଛନ୍ତି···ପାଇ ନାହାନ୍ତି । ଏଣେ ଆଶ୍ରମରେ ବିଷାଦର ଉଦ୍ବେଗ ଲକ୍ଷ୍ୟକରି ମୁନି ପତ୍ନୀ ବିବ୍ରତା ।

ତହିଁଆରଦିନ ପ୍ରଭାତରୁ ଶିଷ୍ୟ ପୁଣି ଧେନୁ ସନ୍ଧାନରେ ବାହାରି ଯାଇଛନ୍ତି—ଆଶ୍ରମରେ ପାନାହାର ନାହିଁ । ଶିଷ୍ୟ ଆଉ ଫେରି ନାହାନ୍ତି । ଧ୍ୟାନବଳରେ ମୁନି ଜାଣିଛନ୍ତି ଗାଈ ଆଉ ଜୀବନରେ ନାହିଁ । ୨୦ ଦିନ ଅତିକ୍ରାନ୍ତ ହୋଇଯାଏ ସେହିପରି । ବ୍ରାହ୍ମଣୀଙ୍କର ଅବସ୍ଥା ବଡ଼ ଶୋଚନୀୟ—ଅନ୍ନ ଜଳ ସ୍ପର୍ଶ କରୁ ନାହାନ୍ତି···ବେଳେ ବେଳେ ମୂର୍ଚ୍ଛିତା ହୋଇ ପଡ଼ୁଛନ୍ତି—ଦିନେ ମୁନି ପତ୍ନୀ ପତିଙ୍କର ପାଦପ୍ରାନ୍ତରେ ଚିରଦିନ ପାଇଁ ଚକ୍ଷୁବୁଜି ଦେଇଛନ୍ତି—ଶିଷ୍ୟ ଫେରିଛନ୍ତି ସେଇ ସମୟରେ । ଅତି କରୁଣ ଦୃଶ୍ୟ । ଗୁରୁପତ୍ନୀଙ୍କର ଅନ୍ତ୍ୟେଷ୍ଟି କ୍ରିୟା ପରେ ସଂସାରର ଇଏ ଲୀଳା ଖେଳା ବୋଲି ଗୁରୁ ଶିଷ୍ୟଙ୍କୁ ଆଶ୍ୱାସନା ଦେଇଛନ୍ତି । ପ୍ରଶ୍ନ କରିବାରେ ଜାଣିବାକୁ ପାଇଛନ୍ତି—କୋଡ଼ିଏ ଦିନ ଅବିଶ୍ରାନ୍ତ ଇତସ୍ତତଃ ଭ୍ରମଣ ଓ ଅନୁସଂଧାନ ପରେ ଶିଷ୍ୟ ଦେଖିବାକୁ ପାଇଛନ୍ତି କଂସେଇ ଦୋକାନରେ ଧେନୁର ମୁଣ୍ଡ ଓ ଚର୍ମ ।

ପଚାରିବାରେ କଂସେଇ କହିଛି—କୌଣସି ଏକ ବ୍ରାହ୍ମଣ ତା' ଠାରେ ଏ ଗାଈ ବିକିଥିଲା—କାରଣ ଏଇ ଗାଈ ତାର ଫସଲ ଖାଇ ଯାଇଥିଲା, ସେ ତାକୁ ନେଇ ଘରେ ବାନ୍ଧି ଗାଈ ଯା'ର ହୋଇଥିବ ତାକୁ ଅପେକ୍ଷା କରିଥି, ଲଗିଲାଗଲା ଦୁଇଦିନ । ତାପରେ ସେ କଂସେଇ ପାଖରେ ଅଳ୍ପମୂଲ୍ୟରେ ବିକି କରି ଦେଇଥିଲା । କଂସେଇ ମାଂସ ପ୍ରସ୍ତୁତ କରିଥିଲା ବିକି ପାଇଁ । ସମସ୍ତ ଶୁଣି ମୁନି କିଂକର୍ତ୍ତବ୍ୟବିମୂଢ଼—

ମୌନଭଙ୍ଗ କରି କହିଛନ୍ତି—

ସପ୍ତାହ ଅନ୍ତରେ ବାଥିକା,
ବସିଲେ ଲାଗେ ଗୋରୁ ବିକା ।
ବ୍ରାହ୍ମଣ ଆଦି ଯେତେ ଜାତି,
ଗୋରୁ ବିକିଯେ ଛନ୍ତି ମାତି ।

ବଳଦେ କରୁଛନ୍ତି ହଳ,
ଘଟେଲ୍ ସେ ବଳଦ ବଳ ।
ବିକନ୍ତି ବୃଦ୍ଧକାଳେ ହାଟେ,
କଂସେଇ କିଣିନେଇ କାଟେ ।

ଗୋ ସେବା ନ କରନ୍ତି ନର,
ଘରେ ବେ ଚଷନ୍ତି ଗୋଚର ।
ଧେନୁ ନ ପାଇ ତୃଣ ଦଳ,
କଙ୍କାଳ ମାତ୍ର ଟଳ ଟଳ ।

ଗୋରୁଙ୍କୁ ନଂଦେଇ ଭୋଜନ,
ନଷ୍ଟ କିନ୍ତେ ଖାଉଛନ୍ତି ଜନ ।
ଗୋ ବୃଷ ନ ପାଇ ଆହାର,
ହେଲେଣି ଅତି ନାରଖାର ।

ଧେନୁ ବଳଦ ବୃଷ ବଳା,
କଲେଣି ସକଳେ ଖାବକା ।
କଂସେଇ ଗୋରୁ ବଧ କରେ,
ଦେଖନ୍ତି ସମସ୍ତେ ନେତ୍ରରେ ।

ତଥାପି ଅଳ୍ପ ଧନ ପାଇ,
ବିକନ୍ତି କଂସେଇକି ଗାଇ ।
ଆଦର ସ୍ନେହ ଭକତି,
ନାହିଁ କାହାର ଗୋରୁ ପ୍ରତି !
ଗୋ ମାତା, ଗୋରୁ ଯେ ଦେବତା,
ନାହିଁ ଆଉ ଏ ଶାସ୍ତ୍ର କଥା ।

କେତେକ ଚଣ୍ଡାଳ ପାଷଣ୍ଡ,
ବଧେ ମାରନ୍ତି ଗୋରୁ ଷଣ୍ଢ ।
ବିକନ୍ତି ନେଇ ତାଙ୍କ ଚର୍ମ,
ଲୁପ୍ତ ହେଲାଣି ଆସି ଧର୍ମ ।

ଶିଷ୍ୟ ବଖାଣି ଯାଇଛନ୍ତି ଗୋ ଜାତିର ଦୁଃଖ ଦୁର୍ଦ୍ଦଶା । ମୁନି ତାହା ଶୁଣି ନିର୍ବାକ ନିସ୍ତବ୍ଧ ।

ତାପରେ ମୁନିଙ୍କର ମନରେ ଆସେ ବୈରାଗ୍ୟ—ପତ୍ନୀ ଗୋ ବନ୍ଦଦରେ ଚାଲି ଯାଇଛନ୍ତି—ବର୍ତ୍ତମାନ ତାଙ୍କର ଇଚ୍ଛା ସେ ପତ୍ନୀଙ୍କ ପଥ ଅନୁସରଣ କରିବେ, ଆତ୍ମ ବିସର୍ଜନ କରିବେ ।

ଶିଷ୍ୟମଧ୍ୟ ଜଣାଇ ଦେଇଛନ୍ତି ସେ ଗୁରୁଙ୍କର ପନ୍ଥା ଗ୍ରହଣ କରିବେ । ତାହା ଜାଣି ଗୁରୁ ଶିଷ୍ୟଙ୍କୁ ବୁଝାଇଛନ୍ତି—

ତୁମ୍ଭର ଯୌବନ ଆଗମ,<br>
ରୂପ ସ୍ୱଭାବ ଅନୁପମ ।<br>
ନିର୍ଧାଇଛ ଶାସ୍ତ୍ରେ ଧୁରନ୍ଧର,<br>
ଏବେ ଗୃହସ୍ଥାଶ୍ରମ କର ।<br>
ସଂସାରେ ରହି ନିଜ କର୍ମେ,<br>
ଲୋକଙ୍କୁ ପ୍ରବର୍ତ୍ତାଅ ଧର୍ମେ ।

ଗୋ ସେବା କର ଅନୁକ୍ଷଣ,<br>
ଗୋହିତେ ବ୍ୟୟ କର ଧନ ।<br>
ଗୋ ମୁଖେ ଦିଅ ହେ ଆହାର<br>
ଗୋ ସେବା ଲୋକରେ ପ୍ରଚାର ।

ଗୁରୁ ତାହା କହି ଶାସ୍ତ୍ର ପୁରାଣରୁ ଗୋମାହାତ୍ମ୍ୟ ସଂପର୍କରେ ଉପଦେଶ ଦେବାକୁ ପ୍ରସ୍ତୁତ ହେବା ପାଇଁ ଶିଷ୍ୟଙ୍କୁ ଜଣାଇ ଦେଇଛନ୍ତି—

"ଯାହାର ଶୃଙ୍ଗ ପାଦ ଯାଏ,<br>
ଅଙ୍ଗେ ବସନ୍ତି ଦେବତାଏ ।"

ପୁଣି ବହୁ ବହୁ ଉଦ୍ଧୃତି ଦେଇ ବର୍ଣ୍ଣନା କରିଛନ୍ତି ଗୋଜାତିର ପରିସ୍ଥିତି ଓ ମାହାତ୍ମ୍ୟ ।

ଗୋ ଜାତିର ସେବା ଓ ସେବାର ପ୍ରଚାର କରିବା ପାଇଁ ଉପଦେଶ ଦେଇ ଶେଷରେ ସେ ଗୋମତୀ ଜଳରେ ଝାସଦେଇ ଦେହତ୍ୟାଗ କରିଛନ୍ତି । ଶିଷ୍ୟ ମଧ୍ୟ ଗୁରୁ ଆଜ୍ଞାମାନ ତାର ପ୍ରଚାରରେ ନିଯୁକ୍ତ ।

ଗୋପବନ୍ଧୁ ସେଇ ଚରିତ ବର୍ଣ୍ଣନା କରିଛନ୍ତି ତାଙ୍କର ଗୋ-ମାହାତ୍ମ୍ୟରେ । ଗୋ ଜାତି ପାଇଁ ପ୍ରାଣର ସମସ୍ତ ଶ୍ରଦ୍ଧା, ମମତା ଓ ସଂବେଦନା ଢାଳି ଦେଇଛନ୍ତି ପ୍ରତି ଛନ୍ଦରେ, ପ୍ରତି ପଦରେ···

ଅଧମ ଗୋପ ତାହା ଗୀତେ
ପ୍ରକାଶ କଲା ଲୋକ ହିତେ ।
ହିଅ ହେ ଜନେ ଏଥି ଧ୍ୟାନ
ମନରେ ନ ବିଚାର ଆନ ।
•
ଗୋପ ତୁମ୍ଭର ପାଦେ ଭୃତ୍ୟ
କର ହେ ତାକୁ କୃତ କୃତ୍ୟ ।
ଗୋଲୋକନାଥ ବାଞ୍ଛାନିଧି
କରନ୍ତୁ ସବ ବାଞ୍ଛା ସିଦ୍ଧି ।

ଗୋପବନ୍ଧୁ ଦାସ ଦେଶ ପାଇଁ, ଜାତିପାଇଁ କରିଛନ୍ତି କାରାବରଣ ଓ କହିଯାଇଛନ୍ତି ପ୍ରାଣର ସ୍ୱର—

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।

ଗୋ ମାହାତ୍ମ୍ୟରେ ଯେଉଁ ହୃଦ୍ୟତା ସେ ଦେଖାଇ ଯାଇଛନ୍ତି ଧର୍ମପଥରେ ମଧ୍ୟ ସେ ଆମର ନେତା ଓ ନାୟକ ।

ଗୋମାହାତ୍ମ୍ୟରେ ଗୁରୁଶିଷ୍ୟ ସମ୍ବାଦ ଭିତରେ ଗୋପବନ୍ଧୁ ଯେଉଁ ପୁଙ୍ଖାନୁପୁଙ୍ଖ ଓ ବିଶଦ ବ୍ୟାଖ୍ୟାନ ଉପସ୍ଥାପିତ କରିଛନ୍ତି ତାହା ନିଶ୍ଚିତ ଭାବରେ ତାଙ୍କର ମୌଳିକ ପରିକଳ୍ପନା । ତାର ଭାବଧାରାର ପରିପୁଷ୍ଟି

ପାଇଁ ବହୁ ଆଖ୍ୟାନ ଓ ଉପାଖ୍ୟାନ ଗ୍ରହଣ କରିଛନ୍ତି ମହାନ୍ କବି ବେଦବ୍ୟାସଙ୍କର ମହାଭାରତରୁ ।

ଗୋ'ର ଗୌରବ ପ୍ରତିପାଦିତ କରିବାକୁ ଅନୁଶାସନ ପର୍ବର ୫୦ ଅଧ୍ୟାୟରୁ ସେ ଉଲ୍ଲେଖ କରିଛନ୍ତି ଚ୍ୟବନ ଚରିତ ।

ଗଙ୍ଗା ଯମୁନା ସନ୍ଧି ସ୍ଥଳେ
ଚ୍ୟବନ ଋଷି ଯୋଗବଳେ
ନିଶ୍ୱାସ ରୋଧି କାଠପରି
ଜଳେ ରହିଲେ ତପସ୍ୱୀଶ୍ୱରି ।

ମୂଳ ମହାଭାରତରେ ଅଛି—

ଅନ୍ତର୍ଜଲେ ସେ ସୁଷ୍ୱପ
କାଷ୍ଠ ଭୂତେ ମହା ମୁନି
ତତ୍ସ୍ଥାନ୍ବତୋ ଧୀମାନ୍
ଚ୍ୟବନ ଭାରତର୍ଷଭ ।

ଗୋପଦାସଙ୍କର ପଦ—

ମାଛ ଧରିବା ଆଶେ ଥରେ,
କେଉଟେ ପଶି ନଦୀ ନୀରେ ।
ଚୌଦିଗେ ବିସ୍ତାରିଲେ ଜାଲ,
ଗୋଳ କଲେ ସେ ନଦୀ ଖାଲ ।

ଟାଣି ଆଣିଲେ ଜାଲ କୂଳ,
ମୁନି ଆସିଲେ ମାଛ ଭୁଲେ ।
ଜାଲରେ ଛନ୍ଦ ହୋଇ ଛଟେ,
ଆଶ୍ଚର୍ଯ୍ୟ ମଣିଲେ କେଉଟେ ।
ମୁନିଙ୍କୁ ଦେଖି ଭୟ ପାଇ,
ନହୁଷ ରାଜା ପାଶେ ଯାଇ ।
କେଉଟମାନେ ଜଣାଇଲେ,
ରାଜା ଅଇଲେ ନଦୀକୂଳ ।

ପ୍ରଣମି ଚ୍ୟବନ ଚରଣ,
"କି ଆଜ୍ଞା କର ତପୋଧନ ।
ପୁଚ୍ଛନ୍ତେ ଏସନେ ନୃପତି,
କହନ୍ତି ସେ ଚ୍ୟବନ ଯତି ।
କେଉଟ ତୋଷି ମାଛ ମୂଲେ
ମାଛଙ୍କୁ ଗୁଡ଼ିଦଅ କୂଳେ ।
ମୁଁ ମଧ୍ୟ କେଉଟଙ୍କ ଧନ,
ମୋ ମୂଲ୍ୟ ଦିଅ ହେ ରାଜନ ।
ତେବେ ମୁଁ ପାଇବ ମୁକତି
କେଉଟ ହାତୁଁ ନରପତି ।

ରାଜା ଏକ ସହସ୍ର ସୁବର୍ଣ୍ଣ କେଉଟଙ୍କୁ ଦେବାକୁ ଅଙ୍ଗୀକାର କରିଛନ୍ତି—ସେଥିରେ ହୋଇ ପାରିବ ନାହିଁ ବୋଲି ମୁନିଙ୍କର ମତ—ରାଜା ପୁଣି ଶତ ସହସ୍ର, ଏକ ଲକ୍ଷ, ଏକ କୋଟି ଦେବା ପାଇଁ ନିବେଦନ କରିଛନ୍ତି···ସେଥିରେ ମଧ୍ୟ ହୋଇ ପାରିବ ନାହିଁ ବୋଲି ମୁନିଙ୍କର ଅସମ୍ମତି ।

ତାପରେ ରାଜା ଅର୍ଦ୍ଧ ରାଜ୍ୟ କିମ୍ବା ସମଗ୍ର ରାଜ୍ୟ ଦେବାକୁ କହିବାରୁ ତାହାମଧ୍ୟ ଗୃହୀତ ହୋଇ ନାହିଁ—

ମୂଳ ସଂସ୍କୃତରେ ଅଛି—

ଅର୍ଦ୍ଧ ରାଜ୍ୟଂ ସମଗ୍ରଂବା ନିଷାଦେଭ୍ୟଃ ପ୍ରଦୀୟତାମ୍ ।
ଏତନ୍ମୂଲ୍ୟମହଂମନ୍ୟେ କିବାନ୍ୟନ୍ମନ୍ୟସେ ଦ୍ୱିଜ ॥
—୧୨, ୫୧ ଅଧ୍ୟାୟ

ମାତ୍ର ରାଜାଙ୍କ ପକ୍ଷରେ ସମଗ୍ର ରାଜ୍ୟ ଅର୍ପଣ କରିବା ସୁବିଧାଜନକ ନୁହେ ଭାବି ଗୋପବନ୍ଧୁ ଅର୍ଦ୍ଧରାଜ୍ୟ କଥା ଉତ୍‌ଥାପନ କରିଛନ୍ତି—

ରାଜ୍ୟରୁ ମୋର ଅର୍ଦ୍ଧ ଅଂଶ
ନିଅନ୍ତୁ କୈବର୍ତ୍ତ୍ୟ ତାପସ ।

ସେଇ ସମସ୍ତଙ୍କରେ ଆଜ ଜଣେ ଋଷିଙ୍କର ଆବର୍ଭାବ—ତାଙ୍କର ନାମ ଗବଜ—ସେ ରାଜାଙ୍କୁ ପରାମର୍ଶ ଦେଇଛନ୍ତି ମୂଲ୍ୟସ୍ୱରୂପ ଧେନୁ ଦେବା ପାଇଁ । ସେଥିରେ ଚ୍ୟବନ ମୁନି ରାଜାଙ୍କୁ ଜଣାଇ ଦେଇଛନ୍ତି ନିଜର ପ୍ରସାଦିତ ସ୍ୱୀକୃତି ।

ବ୍ୟାସଙ୍କର ମୂଳ କଥାବସ୍ତୁକୁ ଗୋପଦାସ କରି ଦେଇଛନ୍ତି ଖୁବ୍ ସଂକ୍ଷେପିତ ମାତ୍ର ଅବିକଳ ଗ୍ରହଣ କରିଛନ୍ତି ଗୋ ଗୌରବର ପର୍ଯ୍ୟାୟ । କାରଣ ଗୋମାହାତ୍ମ୍ୟର ଲକ୍ଷ୍ୟ ହେଲା ଗୋ ଜାତିର ମହିମା ବ୍ୟାଖ୍ୟାନ...

ଉତ୍ତିଷ୍ଠାମୌ ରାଜେନ୍ଦ୍ର ସମ୍ୟକ୍ କ୍ରୀତୋଽସି ତେଽନଘ ।
ମୌନ୍ୟସ୍ତୁମ୍ଲ୍ୟଂ ନ ପଶ୍ୟାମି ଗବା କଣ୍ଠୋଦଧାଚ୍ୟୁତ ॥
କୀର୍ତ୍ତନ ଶ୍ରବଣ ଦାନଂ ଦର୍ଶନଂ ଚାପି ପାର୍ଥିବ ।
ଗବାଂ ପ୍ରଶଂସ୍ୟତେ ବୀର ସର୍ବପାପହରଂ ଶିବମ୍ ॥
ଗାବୋ ଲକ୍ଷ୍ମ୍ୟା ସଦା ମୂଳଂ ଗୋଷୁ ପାପା ନ ବିଦ୍ୟତେ ।
ଅନ୍ନମେବ ସଦା ଗାବୋ ଦେବାନାଂ ପରମଂ ହବିଃ ॥
ସ୍ୱାହାକାର ବଷଟ୍‌କାରେ ଗୋଷୁ ନିତ୍ୟଂ ପ୍ରତିଷ୍ଠିତୌ ।
ଗାବୋ ଯଜ୍ଞେ ପ୍ରଣେତ୍ର୍ୟୋ ବୈ ତଥା ଯଜ୍ଞସ୍ୟ ତା ମୁଖମ୍ ॥
ଅମୃତଂ ହ୍ୟକ୍ଷୟଂ ଦିବ୍ୟଂ କ୍ଷରନ୍ତି ଚ ବହନ୍ତି ଚ ।
ଅମୃତାୟତନଂ ଚୈତାଃ ସର୍ବଲୋକନମସ୍କୃତାଃ ॥
ତେଜସା ବପୁଷା ଚୈବ ଗାବୋ ବହ୍ନିସମା ଭୁବି ।
ଗାବୋହି ସୁମହତ୍ ତେଜଃ ପ୍ରାଣିନାଂ ଚ ସୁଖପ୍ରଦାଃ ॥
ନିବିଷ୍ଟଂ ଗୋକୁଳଂ ଯତ୍ର ଶ୍ୱାସଂ ମୁଞ୍ଚତି ନିର୍ଭୟମ୍ ।
ବିରାଜୟତି ତଂ ଦେଶଂ ପାପାନଂ ଚାପକର୍ଷତି ॥
ଗାବଃ ସ୍ୱର୍ଗସ୍ୟ ସୋପାନଂ ଗାବଃ ସ୍ୱର୍ଗେଽପି ପୂଜିତାଃ ।
ଗାବୋ କାମଦୁଘା ଦେବ୍ୟୋ ନାନ୍ୟ କଣ୍ଠତ୍ ପରଂ ସ୍ମୃତମ୍ ॥

ଗୋଧନେ କଣା ହେଲା ମୁହିଁ,
ଗୋଧନ ସମ ଧନ ନାହିଁ ।
ଗୋଗୁଣ ଶ୍ରବଣ କୀର୍ତ୍ତନ,
ଧେନୁ ଦର୍ଶନ, ଧେନୁ ଦାନ ।

ଅଟଇ ସର୍ବ ଶୁଭପ୍ରଦ,
ଖଣ୍ଡାଇ ଦୁରିତ ବିପଦ ।
ଲକ୍ଷ୍ମୀ ମିଳଇ ଗୋ ସେବନେ,
ନ ପଡ଼େ ତାପ କଥା ମନେ ।
ଗୋ ଜାତି ହେଲେ ସୁପ୍ରସନ୍ନ,
ଲୋକଙ୍କୁ ମିଳେ ସୁଖ ଅନ୍ନ ।
ଗୋଜାତି ଯଜ୍ଞରେ ପ୍ରଧାନ,
କରନ୍ତି ତେଣୁ ହବି ଦାନ ।

ସ୍ୱାହା ସ୍ୱଧାଦି ବଷଟ୍କାର,
ଯଜ୍ଞର ଯେତେ ଉପସ୍କର ।
ଗୋଜାତି ଠାରୁଁ ହୁଏ ଲଭ,
ଅଶେଷ ଗୋଜାତି ପ୍ରଭାବ ।

ଗୋରୁ ବହନ୍ତି ହବ୍ୟରସ,
ଦେବେ ହୁଅନ୍ତି ଯହିଁ ବଶ ।
ଗୋ ଠାରୁଁ କ୍ଷରେ କ୍ଷୀରଧାର,
ବିଶୁଦ୍ଧ ଅମୃତ ଆକାର ।
ଗୋ ଜାତି ସର୍ବଲୋକ ମାତା,
ଦେବତା ମାନବେ ବନ୍ଦିତା ।
ଗୋଜାତି ନିଜ ତନୁ ତେଜେ,
ଅନଳ ସମାନ ବିରାଜେ ।
ଯହିଁ ଗୋକୁଳ କରେ ବାସ,
ନିର୍ଭୟେ ମାରଇ ନିଶ୍ୱାସ ।
ଅତି ପବିତ୍ର ସେହି ସ୍ଥାନ,
ହରଇ ଜନ ପାପମାନ ।
ଆଦରେ ପୂଜିଲେ ଗୋଜାତି,
ପାଏ ମାନବ ସ୍ୱର୍ଗ ଗତି ।
ପୂରଇ ସକଳ କାମନା,
କଲେ ଗୋ-ପାଳନ ଅର୍ଚ୍ଚନା ।

ସ୍ୱର୍ଗକୁ ପାହାଚ ପରାଏ,
ଗୋଜାତି ଜାଣ ନରରାୟେ ।
ସ୍ୱର୍ଗେ ପୂଜନ୍ତି ଦେବଗଣ,
ସାଦରେ ଗୋଜାତି ଚରଣ ।

ଧେନୁ ସାକ୍ଷାତେ ଦେବୀରୂପ
ଏ ତଥ୍ୟ ଭଲେ ବୁଝ ନୃପ ।

ତାହା ଶୁଣି କୈବର୍ତ୍ତ୍ୟମାନେ ମୁନଙ୍କର ଚରଣ ବନ୍ଦନା କରନ୍ତି ଓ ନବେଦନ କରନ୍ତି···

ଗୋ ଧନେ ନାହିଁ ପ୍ରୟୋଜନ,
ଏ ଗୋରୁ ନଅନ୍ତୁ ଆପଣ ।

ମୁନ ସନ୍ତୁଷ୍ଟ, ରାଜା ସନ୍ତୁଷ୍ଟ !

ଗୋ ମାହାତ୍ମ୍ୟରେ ଗୋପ ଦାସ ଅନୁରକ୍ତ ପ୍ରାଣରେ ପ୍ରକାଶ କରନ୍ତି -

ଗୋଜାତି ମହମା ବର୍ଣ୍ଣନ
କଲେ ଯା ମହର୍ଷି ଚ୍ୟବନ ।
ସଂସାରେ ବୁଝାଅ ଏ ତତ୍ତ୍ୱ
ଗୋଜାତି ଗୌରବ ମହତ୍ତ୍ୱ ।

× ×

ଏଣେ ମିଳଇ ସୁଖ ଯଶ
କହଇ ଦୀନ ଗୋପ ଦାସ ।

ମାତ୍ର ଗୋପବନ୍ଧୁ ଦଶମ ଅଧ୍ୟାୟରେ ଉପସ୍ଥାପିତ କରନ୍ତି ନଚକେତ କଥା···ଯାହା ମୂଳ ମହାଭାରତରେ ନାଚକେତ··· । ମୂଳ ଉପାଦାନ ଠାରୁ ତହିଁରେ କିଛି ବ୍ୟତକ୍ରମ ପରିଲକ୍ଷିତ ହୁଏ, ତାହା ମୂଳ ଉପାଖ୍ୟାନର ଅଧିକ ଯଥାର୍ଥତା ରକ୍ଷା କରିବା ପାଇଁ । ତେଣୁ ତାହାହିଁ ମୋର ଆଲୋଚ୍ୟ ପ୍ରସଙ୍ଗ ।

"ଥିଲେ ପୂର୍ବେ ଉଦ୍ଦାଳକ,
ଋଷି ସୂକ୍ଷ୍ମୀ ସୁବଚକ ।
ପୁତ୍ର ତାଙ୍କର ବିଶ୍ୱଜିତ,
ସକଳ ଲୋକରେ ବିଦିତ ।
କଲେ ସେ ଯଜ୍ଞ ଅନୁଷ୍ଠାନ,
ଦେଲେ ବହୁତ ଧେନୁଦାନ ।
ତାଙ୍କର ପୁତ୍ର ନଚିକେତ,
ଗୋଦାନ କାଳେ ଉପଗତ ।
ପିତାଙ୍କୁ ପଚ୍ଛେ ନନ୍ଦନ,
ମତେ କାହାକୁ ଦେବ ଦାନ ?
କର୍ମରେ ଥିବାରୁ ନିଯୁକ୍ତ
ବିରକ୍ତ ହେଲେ ବିଶ୍ୱଜିତ ।
କହିଲେ "ତତେ ଦେବି ଯମେ"...

ମହାଭାରତର ଉପାଖ୍ୟାନ ସ୍ଥଳରେ ଗୋପବନ୍ଧୁ ଗ୍ରହଣ କରନ୍ତି ଉପନିଷଦ କଥା । ମହାଭାରତରେ ଉକ୍ତ ଋଷିଙ୍କ ନାମ ଉଦ୍ଦାଳକ । ଉଦ୍ଦାଳକଙ୍କର ପୁତ୍ର ନଚିକେତ ମନେହୁଏ । ଉଦ୍ଦାଳକଙ୍କର ପୁତ୍ର ବିଶ୍ୱଜିତ । ମାତ୍ର ବିଶ୍ୱଜିତ୍ ବ୍ୟକ୍ତିର ନାମ ନୁହେ । ଯଜ୍ଞର ନାମ ।

ମହାଭାରତରେ ଥିଲା—

ଋଷିରୁଦ୍ଦାଳକ ଧୀମାନ୍ ପ୍ରଗମ୍ୟ ତତଃ ସୁତମ୍ ।
ତ୍ୱଂ ମାନ୍ ପ୍ରତରସ୍ୱେତି ନାଚିକେତ ସମାଗତ ॥
ଅମାପ୍ତେ ନିୟମେ ତସ୍ମିନ୍ ମହର୍ଷିଃ ପୁତ୍ରମବ୍ରବୀତ୍ ।
ଉପସ୍ପର୍ଶନ ଶକ୍ତସ୍ୟ ସ୍ୱାଧ୍ୟାୟାଭିରତସ୍ୟ ଚ ॥
ଇଧ୍ମା ଦର୍ଭାଃ ସୁମନସଃ କଳସଶ୍ଚାତି ଭୋଜନମ୍ ।
ବିସ୍ମୃତଂ ମେ ତଦାଦାୟ ନଦୀତୀରାଦିହାବ୍ରଜ ॥
ଗତ୍ୱାନ ବାପ୍ୟ ତତ୍ ସର୍ବଂ ନଦୀତୀରେ ସମାପ୍ଲୁତମ୍ ।
ନ ପଶ୍ୟାମି ତଦିତ୍ୟେବ ପିତରଂ ସୋଽବ୍ରବୀତ୍ ମୁନିଃ ॥
କ୍ଷୁତ୍ ପିପାସା ସମାବିଷ୍ଟ ଋଷିରୁଦ୍ଦାଳକସ୍ତଦା ।
ଯମଂ ପଶ୍ୟେତି ତଂ ପୁତ୍ରମଶପତ୍ ସ ମହାତପାଃ ॥

ଉପନିଷଦରେ ଅଛି—

ଓଁ ଉଶନ୍ ହ ବୈ ବାଜଶ୍ରବସଃ ସର୍ବ ବେଦସଂ ଦଦୌ
ତସ୍ୟ ହ ନଚିକେତା ନାମ ପୁତ୍ର ଆସ ॥
ତଂ ହ କୁମାରଂ ସନ୍ତଂ ଦକ୍ଷିଣାସୁ ନୀୟମାନାସୁ ଶ୍ରଦ୍ଧାଽବିବେଶ
ସୋଽମନ୍ୟତ ॥
ପୀତୋଦକା ଜଗ୍‌ଧତୃଣା ଦୁଗ୍‌ଧଦୋହା ନିରିନ୍ଦ୍ରିୟାଃ ।
ଅନନ୍ଦା ନାମ ତେ ଲୋକା ସ୍ତାନ୍‌ସ ଗଚ୍ଛତି ତା ଦଦତ୍ ॥
ସହୋବାଚ ପିତରଂ ତତ କସ୍ମୈ ମାଂ ଦାସ୍ୟସୀତି ।
ଦ୍ୱିତୀୟଂ, ତୃତୀୟଂ ତ ହୋବାଚ ମୃତ୍ୟବେ ତ୍ୱା ଦଦାମୀତି ॥

ମୃତ୍ୟୁ ପାଖରୀ ନଚିକେତ ସ୍ୱର୍ଗରେ ଗୋଲୋକର ମହତ୍ତ୍ୱ ଶୁଣିନ୍ଥନ୍ତି । ମୃତ୍ୟୁଙ୍କଠାରୁ—ଯାହା ଗୋଦାନ ଓ ଗୋ ସେବାର ଫଳ । ତେଣୁ ଗୋପବନ୍ଧୁ ମହାଭାରତର ଉପଖ୍ୟାନକୁ ପରିହାର କରି ପ୍ରାସଂଗିକତା ରକ୍ଷା କରିବାକୁ ଗ୍ରହଣ କରି ନେଇଛନ୍ତି ଉପନିଷଦର ଆଖ୍ୟାନ । ଆହୁରି ମଧ୍ୟ ମହାଭାରତରେ ଅଛି ।

ତଥା ସ ପିତାଭିହିତୋ ବାଗ୍‌ବଜ୍ରେଣ ତା କୃତାଞ୍ଜଳିଃ ।
ପ୍ରସୀଦେତି ବ୍ରୁବନ୍ନେବ ଗତସତ୍ତ୍ୱୋଽପତଦ୍ଭୁବି ॥
ନାଚିକେତଂ ପିତା ଦୃଷ୍ଟ୍ୱା ପତିତଂ ଦୁଃଖମୂର୍ଚ୍ଛିତଃ
କିଂ ମୟା କୃତମିତ୍ୟୁକ୍ତ୍ୱା ନିପପାତ ମହୀତଳେ ।
ତସ୍ୟ ଦୁଃଖ ପରୀତସ୍ୟ ସ୍ୱଂ ପୁତ୍ର ମନୁଶୋଚତଃ
ଅଣିତଂ ଦେହଃ ଶେଷଂ ସା ରୈତ୍ରୀ ତହଶର୍ବରୀ ॥
ପିତ୍ରେଣନାମଶ୍ରୁପାତେନ ନାଚିକେତଃ କୁରୁଦ୍ଵହ ।
ପ୍ରାସ୍ୟନ୍ଦତ ଶୟନେ କୌଶ୍ୟ ବୃଷ୍ଟ୍ୟାଶସ୍ୟମିବାପ୍ଳୁତଃ ॥

"ଋଷି ପୁତ୍ର ପାଇଁ ଗଭୀର ଦୁଃଖରେ ଅନୁଶୋଚନା କରୁ କରୁ ଦିନ ଶେଷ ହେଲା । ଉଦ୍ଦାଳକଙ୍କ ରଜନୀର ଅବସାନ ହେଲା । ଶୁଷ୍କୀମାଣ ଶସ୍ୟ ଯେପରି ବୃଷ୍ଟିଧାରାରେ ସଞ୍ଜୀବିତ ହୁଏ, ନାଚିକେତ ପିତାଙ୍କ ଅଶ୍ରୁପାତରେ କୁଶ ଶଯ୍ୟାରେ ଅଙ୍ଗ ସଞ୍ଚାଳନ କଲେ ।"

ମାତ୍ର ଉପନିଷଦକୁ ଅନୁସରଣ କରି ଗୋପବନ୍ଧୁ ଏକ ଦିନ ନୁହେଁ, ତିନି ଦିନ ରାତ୍ରିଦିନ ବୋଲି ଉଲ୍ଲେଖ କରିଛନ୍ତି—କାରଣ ଉପନିଷଦର ନଚିକେତା ମୃତ୍ୟୁପୁରକୁ ଯାଇ ନିଗଦ୍ୱାରରେ ମୃତ୍ୟୁ ଦର୍ଶନ ପାଇଁ ତିନି ଦିନ ଅପେକ୍ଷା କରିଥିଲେ—

ପଡ଼ିଲା ଶବ ଯକ୍ଷ ସ୍ଥାନେ,
ପୁଣି ତିନି କ ରାତ୍ରି ଦିନେ ।
ବାହୁଡ଼ି ଆସିଲା ନନ୍ଦନ,
ହୋଇଲା ସେ ଶବ ସଚେତନ ।

ପୁତ୍ର ଦର୍ଶନରେ ଋଷି ପରମ ଆନନ୍ଦ ଲାଭ କରିଛନ୍ତି—ପୁତ୍ରଙ୍କୁ ପଚାରିଛନ୍ତି—ଯମପୁରରେ ମଣିଷ କର୍ମଫଳ ଭୋଗ କରେ କିପରି ? ନଚିକେତା ନିବେଦନ କରିଛନ୍ତି; ଯମ କିପରି ତାଙ୍କୁ ଦିବ୍ୟ ଯାନରେ ବସାଇ ନାନା ସ୍ଥାନ ଦେଖାଇଛନ୍ତି—

ସୁକୃତ ଫଳେ ଯେ ଯେ ଲୋକେ,
ବସନ୍ତି ନିଶ୍ଚିନ୍ତେ ବିଶୋକେ ।
ସେ ସବୁ ମୋତେ ଦୟାକରି,
ଦେଖାଅ ଯମ ଦଣ୍ଡଧାରୀ ।

ଚଢ଼ିଣ ସେ ଯମ ଦିବ୍ୟଯାନେ,
ବସାଇ ମତେ ନାନାସ୍ଥାନେ ।
ଦେଖାଇ ବୁଲାଇଲେ ପୁଭ,
ଅତି ଅଦ୍ଭୁତ ମନୋହର ।
ସୁଦିବ୍ୟ ଗୃହୁ ନିକେତନ,
ଅତି ବିଚିତ୍ର ସୁଗଠନ ।

ଶୋଭିତ ଅଶେଷ ରତନେ,
ଖଚିତ ଅପୂର୍ବ ଯତନେ ।
ଶୁଭ୍ର ଶରଦ ଚନ୍ଦ୍ର ସମ,
ରୂପ ଗାମ୍ଭୀର୍ଯ୍ୟ ମନୋରମ ।

ଅଛି ପ୍ରଶସ୍ତ ଉଚ୍ଚପୁର,
ବିରାଜେ କଙ୍କିଣି ନୂପୁର ।
ଅଟ୍ଟାଳି ଉପରେ ଅଟ୍ଟାଳି,
ଉଠିଛି ଊର୍ଦ୍ଧ୍ୱେ ନୁହେଁ କଳି ।

ପୁର ମଧ୍ୟରେ ଶୋଭାବନ,
ସରିତ ଶଇଳ କାନନ ।
ବହଇ ସୁନିର୍ମଳ ଝର,
ବିରାଜେ କାହିଁ ସରୋବର ।

ସୁବର୍ଣ୍ଣ ରଜତେ ଜଡ଼ିତ,
ଶୋଭେ ତୋରଣ ଶତ ଶତ ।
ସେ ପୁରେ ଯେତେ ବସ୍ତୁ ଚୟ,
ରତ୍ନେ ଉଜ୍ଜ୍ୱଳ ପ୍ରଭାମୟ ।

ବାଳା କି କନକ କିରଣେ,
ରଞ୍ଜିତ ଦିଶନ୍ତି ଯେସନେ ।
ସୂକ୍ଷ୍ମ କୋମଳ ସୁବସନ,
ମଣ୍ଡିଛି ବିବିଧ ଆସନ ।

ବିବିଧ ରସ ଭକ୍ଷ ଭୋଜେ,
ଶଇଳ ଶିଖର ବିରାଜେ ।
ଲତା ପାଦପ ପାଏ ଶୋଭା,
ରସାଳ ଫଳ ମନୋଲୋଭା ।

ସୁଗନ୍ଧ ସୁନ୍ଦର ସୁମନ,
ଫୁଟଇ ନିତି ଅଗଣନ ।
ବହଇ ଦୁଗ୍ଧ ଦଧି ଧାର,
କେ ସଂଖ୍ୟା କରିବ ତାହାର ।

ପଥେ ଚଳଇ ନାନା ଯାନ,
ସୁନ୍ଦର ସ୍ୟନ୍ଦନ ବିମାନ ।

ସୁରଭି ଶୀତଳ ସମୀର,
ବହେ ସେ ପୁରେ ନିରନ୍ତର ।
ନ ଲାଗେ ତହିଁ ଦେହେ କ୍ଳାନ୍ତ;
ପ୍ରକାଶେ ଆଗମ ସୁଶାନ୍ତ ।

ନଚିକେତ ତାହା ଦେଖି ଯମଙ୍କୁ ପଚାରିଛନ୍ତି—

ଏ ସବୁ କାହା ଉପଭୋଗେ
ସଞ୍ଚିତ ଏତେ ଉପଯୋଗେ

ଯମ କହୁଛନ୍ତି—

ଗୋସେବା କରଇ ଯେ ନିତି,
ଗୋଦାନ କରେ ବହୁ ପ୍ରୀତି ।
କିଅବା ଉପଯୁକ୍ତ ଜନେ
ତୋଷଇ ଗୋରସ ଭୋଜନେ ।
ମୋ ପୁରେ ଆସିଲେ ସେ ନର
କରେ ଏ ସବ ଅଧିକାର ।

ନରପତି ରନ୍ତିଦେବ ଗୋମେଧ ଯଜ୍ଞ କରିଥିଲେ । ଗୋରୁମାନଙ୍କର ଚର୍ମରୁ ଯେଉଁ ରକ୍ତ ନିସୃତ ହୋଇଥିଲା ତହିଁରୁ ଚର୍ମଣ୍ୱତୀ ନଦୀର ଉଦ୍ଭବ ।

"ସେ ରନ୍ତିଦେବ ନରପତି
ପଶୁରେ ବରିଲେ ଗୋଜାତି ।

× × ×

ସେ ମହାଯଜ୍ଞେ ଗଲା ନାଶ
ଗୋରୁ ଜାତିର ପଶୁ ଦୋଷ ।
ପଶୁ ଦୋଷରୁ ହୋଇ ମୁକ୍ତ
ଗୋଜାତି ଦାନ ଉପଯୁକ୍ତ ।

ଉତ୍ତମ ସୁଜ୍ଞାନୀ ବ୍ରାହ୍ମଣେ
ତୋଷଇ ଯେତୁ ଧେନୁ ଦାନେ ।
ତାରେ ସେ ସକଳ ଦୁର୍ଗତି,
ନ ଭୋଗ କେବେହେଁ ବପତ୍ତି ।''

ମାତ୍ର ଦାନାପହରଣରେ କି ଦୁର୍ଗତି ଘଟିଥାଏ ସେ ସମ୍ପର୍କରେ ନୃଗ ରାଜାଙ୍କର ଦୃଷ୍ଟାନ୍ତ ଉପସ୍ଥାପିତ ହୋଇଛି—ରାଜା ବଡ଼ ଦାନୀ । ରାଜା ଥରେ ସହସ୍ର ଗୋଦାନ କଲାପରେ ଜଣେ ବ୍ରାହ୍ମଣ ଆସି ସେଇ ଗୋରୁ ମଧ୍ୟରୁ ଗୋଟିଏ ତାହାର ନିଜର ବୋଲି ଦାବି କଲା । ରାଜା କହିଲେ ମୁଁ ଦାନ ପ୍ରତିଗ୍ରହଣ କରିବି କିପରି ? ତୁମ ଗୋରୁ ବଦଳରେ ଏକ ସହସ୍ର ଗୋରୁ ନିଅ । ବ୍ରାହ୍ମଣ ରାଜି ହେଲେ ନାହିଁ । ବଡ଼ ବିଷମ କଥା, ରାଜାଙ୍କର ମୃତ୍ୟୁ ହୁଏ । ଯମ ଆଗରେ ଉପସ୍ଥିତ ହୁଅନ୍ତି । ଯମ କହିଲେ—''ହେ ରାଜା, ତୁମେ ବହୁତ ପୁଣ୍ୟ କରିଛ, ଏ ପାପ ମଧ୍ୟ କରିଛ, ଦଣ୍ଡ ନେବ ନା ପୁରସ୍କାର ଆଗ ନେବ ।''

ଦଣ୍ଡ ସରିଗଲେ ଅଖଣ୍ଡ ସୁଖ ମିଳିବ ବୋଲି ରାଜା ଆଗ ଦଣ୍ଡ ନେବାକୁ ଅଭିପ୍ରାୟ ଜଣାଇଲେ । ଯମ ସଙ୍ଗେ ସଙ୍ଗେ କହିଲେ, ତୁମେ ଏକ ହଜାର ପାଇଁ କୃକଳାସ ହୁଅ । ଦ୍ୱାରକାର ଗୋଟିଏ ପରିତ୍ୟକ୍ତ କୂପରେ ରୁହ । ଯେଉଁଦିନ ବାସୁଦେବ ଶ୍ରୀକୃଷ୍ଣ ତୋତେ ସ୍ପର୍ଶ କରିବେ ତୁମେ ସେଇକ୍ଷଣି ଅଭିଶାପରୁ ମୁକ୍ତ ହେବ ।

ଗୋରୁର ମହିମା ଓ ଗୌରବ କଥା ଶୁଣି ଶିଷ୍ୟ ଗୁରୁଙ୍କ ପାଦରେ ସାଷ୍ଟାଙ୍ଗ ପ୍ରଣାମ କଲେ, ଗୁରୁ ଆଶୀର୍ବାଦ ଦେଇ ଚାଲିଲେ ଆତ୍ମବିସର୍ଜନ କରିବାକୁ ଗୋମତୀ ଜଳରେ ।

ଅଧମ ଗୋପ ତାହା ଗୀତେ
ପ୍ରକାଶ କଲି ଲୋକ ହିତେ ।

**ରାଧାମୋହନ ଗଡ଼ନାୟକ**



# ପ୍ରାର୍ଥନା

ପ୍ରଭୁ ଦୟାମୟ ଜଗତପତି
ଅନାଥର ନାଥ ଅଗତିଗତି
ତବ ଶ୍ରୀଚରଣେ ଏହି ବିନତି
କରୁଛୁ ଉତ୍କଳ-ଶିଶୁ ସନ୍ତତି
ମିଳି ଆଜି ଏକମନେ ହେ,
ଦିଅ ନବ ତେଜ ନବୀନ ସାହସ
ଉତ୍କଳମାତା ଜୀବନେ ହେ । ୧ ।

ହିନ୍ଦୁ, ଖ୍ରୀଷ୍ଟ ଜୈନ ମୁସଲମାନ,
ଭେଦ ଭୁଲି ଏବେ ସର୍ବେ ସମାନ,
ଭ୍ରାତୃ-ପ୍ରେମ-ଡୋରେ ହୋଇଣ ବାନ୍ଧି
ଜଣାଉଛୁ ତବ ଛାମୁରେ କାନ୍ଦି
ଅରକ୍ଷିତ ଶିଶୁକୁଳ ହେ,
ଜନମ ବିଷାଦେ ଭସାଇ ନ ଦିଅ
କେବେ ପ୍ରଭୁ ଆଦମୂଳ ହେ । ୨ ।

ଉତ୍କଳ ମାତାର ଅତୀତ ଯଶ,
ବିପୁଳ ବିଭବ ବଳ ସାହସ
ସୁମରିଣେ ଫାଟିଯାଏ ହୃଦୟ,
ଦେଖି ଅବସ୍ଥାର ଏ ବିପର୍ଯ୍ୟୟ
ରକ୍ତ-ମାଂସ-ଦେହ ଧରି ଯେ,
ଅଧୀର ଆତୁର କିଏ ସେ ନ ହେବ
ଦେଖି ମାତା ଏତେ ସରି ଯେ । ୩ ।

ଅଛି ସେହି ନଦୀ, ଅଛି ସେ  ଗିରି,
ଅଛି ସେ ବିପିନ, କାହିଁ ସେ ଶିରୀ?
ଅଛି ସେହି ସେତୁ, ସେହି ଦେଉଳ,
କାହିଁ ସେହୁ ଦକ୍ଷ କର ସଙ୍କୁଳ ?
ଜନ୍ମ ଯା ଏବେ ଭାରତ ଯେ,
ଦଶ ଦିଗ ଶୂନ୍ୟ    କାହିଁ ପୂର୍ବ ପୁଣ୍ୟ,
କାହିଁ ସେ ପୂର୍ବ ଶକତି ଯେ ? । ୪ ।

ଇହି ଅଛି କାବ୍ୟ ନାହାନ୍ତି କବି,
ଅଛି ସେହି ଦେଶ ନାହିଁ ସେ ଛବି,
କାଳବଳେ ସବୁ ସରିଛି ଯାଇ,
ଆହା କି ସୁନ୍ଦର କି ନାରଖାର !
କି ଘୋର କର୍ମବିପାକ ହେ,
ହେରି ଏ ଦୁର୍ଗତି    ହରି ବିଶ୍ୱପତି
ଶୁଣ ଏ କାତର ଡାକ ହେ । ୫ ।

ସର୍ବ ଧର୍ମଧାମ ପୁଣ୍ୟ ଉତ୍କଳ-
ବଦନେ ବିକାଶୁ ସ୍ମିତ ବିମଳ,
ଜାଗୁ ଚଉଦିଗେ ନବ ପରାଣ,
କର ଏ କରୁଣା ଆରତତ୍ରାଣ,
ନୀଳାଚଳ, ନୀଳାଚଳ ହେ,
ବୋଲି ସୁବିଶାଳ    ଭାରତ ଭୁବନେ
ପଡୁ ସତତ ଡହଳ ହେ । ୬ ।

ବ୍ରାହ୍ମଣ-ଶାସନ ଶବରପଲ୍ଲୀ,
କୃଷକ କୁଟୀର ନୃପ ଅଟ୍ଟାଳ,
ଜାତିପ୍ରୀତି-ସ୍ରୋତେ ହେଉ ପ୍ଳାବିତ,
ଉଠୁ କୋଟି କଣ୍ଠୁ ଜାତୀୟ ଗୀତ,
ତେଜି ସ୍ୱାର୍ଥ ଅଭିମାନ ଯେ,
ଜନନୀ-କଲ୍ୟାଣେ ସାଧୁ ଅନୁଷ୍ଠାନେ
ରହୁ ସଦା ମନ ଧ୍ୟାନ ଯେ । ୭ ।

ସଂସାର ଭୂମିର ରଣାଙ୍ଗଣେ,
ଉତ୍କଳର ହୀନ ତନୟ-ଗଣେ,
ଚଳରେ କେବେହେଁ ନ ଡେରି ଦେବ,
ଶାନ୍ତିମନ୍ତ୍ର ଏହି ଆଦେଶ ଦେବ,
ଘେନି ଅଟୁଟ ଉତ୍ସାହ ଯେ,
ଭାରତର ମହା- ଜାତୀୟ ତରଙ୍ଗେ
ମିଶୁ ଉତ୍କଳ ପ୍ରବାହ ଯେ । ୮ ।



# ବାଣୀ

( ୧ )

ସୃଷ୍ଟି ଆଦ୍ୟକାଳୁ ଦେବୀ ତୋହର ଉତ୍ପତ୍ତି,
ତୋର ନିତ୍ୟ ଲୀଳାଭୂମି ଅନନ୍ତ ଅପାର,
ଅନନ୍ତ ଅଦ୍ଭୁତ ଅଟ ତୋ ମହାଶକତି,
ସହଜେ ବୁଝିବ କାହିଁ ତାହା ନର ଛାର ।

( ୨ )

ଅନଳେ ଆହୁତିଧାର କରି' ବରଷଣ,
ପୂତନୀର ସରସ୍ୱତୀ-ପୁଳିନ ପ୍ରଦେଶେ
ଗାଇଲେ ସଙ୍ଗୀତ ଯେବେ ଆଦ୍ୟ ଋଷିଗଣ
ପ୍ରକାଶିଲୁ ତହିଁ ମାତଃ କି ଶୁଦ୍ଧ ସୁବେଶେ !

( ୩ )

ସେ କାଳର ଶୁଦ୍ଧ ବେଶ ଦିବ୍ୟ ଭାବମାନ
ଝଲସିଣ ଆଲୋକରୁ ସର୍ବ ବସୁନ୍ଧରା
ତମାବୃତ କଲୁ ଆଜି ଭାରତ-ସନ୍ତାନ,
ନ କରଇ କହ କିବା କାଳ ପରମ୍ପରା !

( ୪ )

ପଙ୍କଜ ବାସିନୀ ଦେବୀ ନିତ୍ୟ ବୀଣାପାଣି,
ବାଅ ସେ ଅମର ବୀଣା କୃପା କରି ଥରେ,
ପ୍ରବେଶୁ ତା ଦିବ୍ୟନାଦ ମୃତସଞ୍ଜୀବନୀ
ମୃତ ପ୍ରାୟ ଭାରତର ହୃଦୟ-କନ୍ଦରେ ।

( ୫ )

ଘରେ ଉତ୍କଳ ପୁଣି ଅଟେ ଅଗ୍ରଗଣ୍ୟ,
ଧନେ, ଜନେ, ମାନେ, ଜ୍ଞାନେ, ବିକ୍ରମ, ସାହସେ;
ଆଦେଶେ ମା ଫୁଟି ତବ ଆବାସ-ନଳଣ୍ୟ
ଗୌରବ-ତପନେ ବଢୁ ଉତ୍କଳ-ନଭସେ ।

( ୬ )

ମହାନନ୍ଦେ ବିହରଣ କରି ଜ୍ଞାନ-ବନେ
ଶାସ୍ତ୍ର-ସୁମନରୁ ସତ୍ୟ-ମକରନ୍ଦ ଗଣି
ଆହରଣ ଭକ୍ତିଭରେ ହେ ସୁଧୀବୃନ୍ଦେ !
ଝଟନ୍ତୁ ତୋ ପଦମୂଳେ ଉତ୍କଳ-ନିବାସୀ

( ୭ )

ମୁଁ ଅଟେ ସାମାନ୍ୟ, ମୋର ସାମାନ୍ୟ କାମନା,
ପୂରୁ ମାତଃ ବାକ୍ୟ-ଦେବୀ ତୋହର ପ୍ରସାଦେ,
ବାସ୍ତବ ବିଶ୍ୱର ଯେତେ ନୀରସ ଘଟନା
ପ୍ରବେଶ ନ କରୁ କେବେ ମୋ ସୁଖ-ପ୍ରାସାଦେ

( ୮ )

ଅବର୍ଣ୍ଣନାମସ୍ତୁ ଏହୁ ସଂସାର-ଜଞ୍ଜାଳେ
କେବେ ପ୍ରପୀଡ଼ିତ ମୋର ନ ହେଉ ମାନସ,
କଳ୍ପନାର ସୁଖରାଜ୍ୟ ଦେଖେ କାଳେ କାଳେ
ସ୍ୱର୍ଗୀୟ ସୁଷମା ଆଉ ସ୍ୱର୍ଗୀୟ ରହସ୍ୟ ।



# କବିତା

କି ମୋହନ ବେଶ ତୋର ହେ ସୁର-ସୁନ୍ଦରି !
କିଏ ସେ ଏପରି ଅଛି ଜନ୍ମାନ୍ଧ ଜନ,
ତୋତେ ଦେଖି ନ ପାଏ ଯା ଦୁଃଖ ଅପସର,
ଅହ୍ଲାଦେ-ଅମୃତେ ନୁହେ ପରିତୃପ୍ତ ମନ ?

ଶୁଦ୍ଧ ସରଳତା ତୋର ବାହ୍ୟ ଆଭରଣ,
ଦିବ୍ୟ ରସମୟ ଭାବେ ଅନ୍ତର ପୂରିତ,
ବାହ୍ୟ ଭୂଷଣେ ବିମୋହିତ ଜନ ସାଧାରଣ,
ଅନ୍ତର ରସେ ମଗନ କେବଳ ପଣ୍ଡିତ ।

ପ୍ରକୃତିର ବିଚିତ୍ରତା ତୋ ପବଙ୍ଗ ଅଙ୍ଗେ,
ନାନାବିଧ ମାନବର ବିଭିନ୍ନ ସ୍ୱଭାବ,
ହୋଇଣ ପ୍ରତିଫଳିତ ଅହା କେତେ ରଙ୍ଗେ
ଉପୁଜାଏ ହୃଦ-କ୍ଷେତ୍ରେ ନବ ନବ ଭାବ ।

ବିବେକ-ସଙ୍ଗିନୀ ରମ୍ୟା କଳ୍ପନା-ସୁନ୍ଦରୀ
ଜ୍ଞାନଦାୟୀ ହୃଦୋଲ୍ଲାସା ଭାବନା ସଙ୍ଗରେ,
ନିବସନ୍ତ ବେନି ପାଶେ ବେନି କର ଧରି
ଅନୁଗତ ପରିକଳ୍ପ ପ୍ରଭାବେ ନିରତେ

ରଜୋଗୁଣମୟୀ ଦେବୀ ବାଣୀ ସ୍ୱରୂପିଣୀ,
ନାନା ଭାବେ ନାନା ସ୍ଥାନେ ହୁଏ ତୋ ପ୍ରକାଶ,
ଏ ମୃତ ଅଜ୍ଞାନେ ଦୟା କର ଗୋ ଭାବନ,
ପ୍ରକାଶ ଏ ପ୍ରାଣେ ପୁଣ୍ୟ ମଧୁର ଉଚ୍ଛ୍ୱାସ ।



# ଶମ୍ଭୁକର ବାଜପେୟୀ

କି ଭାଷାରେ ଦେବ, ଆମନ୍ତ୍ରିତ ତବ
ସ୍ୱର୍ଗୀୟ ଆତ୍ମାକୁ ଆଜ ?
ସୂକ୍ଷ୍ମ ଧାର୍ମିକ ଗୋଷ୍ଠ ପ୍ରବର୍ତ୍ତକ
ହେ ଉତ୍କଳ-ଭରଦ୍ୱାଜ !

ତୁମ ବଂଶୋଦ୍ଭବ ବୋଲି ଗଉରବ
କରନ୍ତି ବିପ୍ର ଅନେକ,
ବର୍ଷେ ଶତ ଶତ ହେଲେହେଁ ଅତୀତ
ଅଛୁ ତୁମ୍ଭ ନାମ ଟେକ ।

ବାଜପେୟ ଯାଗ କରି ମହାଭାଗ
ହେଲେ ନିଜେ ପୂତପ୍ରାଣ,
ସ୍ମୃତି ସପ୍ତୋଦଶେ ପ୍ରଚାରିଲ ଦେଶେ
ବେଦ-ତନ୍ତ୍ର-ବିଧାନ ।

ଧର୍ମତତ୍ତ୍ୱେ ରତ ଥିଲେ ହେଁ ସତତ
ସାହିତ୍ୟ-ଶୋଭା-କାନନେ,
ମାନସ ମିଳିନ୍ଦ ତବ ମକରନ୍ଦ
ଲୁଣ୍ଠି ଚଖାଇଲ ଜନେ

ରାଜ-ଅନୁଗ୍ରହ ରାଜ୍ୟ-ପ୍ରତିଗ୍ରହ
କରେ ବ୍ରହ୍ମତେଜ ନାଶ
ମାନି ରାଜାଦେଶ ତେଣୁ ତେଜି ଦେଶ
କଲ ଚିର କାଶୀବାସ ।

ତଥାପି ସ୍ୱଜନ- ମମତା-ବନ୍ଧନ
ହୃଦେ ଥିଲା ନିରନ୍ତର,
ଷଢ଼ଶ ବରଷେ ଦେଖିଲି ସ୍ୱଦେଶେ
ଯୋଗ୍ୟ ସୁତ ଷଦ୍ୟାକର ।

ଷମ୍ମୂର୍ତ୍ତି-ତାମସ କରଇ ଗରସ
ନର-କ୍ଷାରନ୍ତି- ନିରସ୍ତ,
କିନ୍ତୁ ସାଧ୍ୱଭାବ ପବିତ୍ର ପ୍ରଭାବ
ପାଏ ନାହିଁ କେବେ ଲୟ ।

ହେ ସମାଜ-ନେତା, ତବ ସ୍ୱାଧୀନତା
ସ୍ୱଦେଶ-ସ୍ୱଧର୍ମ-ପ୍ରୀତି,
ତେବେ କାହିଁ ଆଜ ସେ ଶକ୍ତି, ସେ ତେଜ
କିମ୍ବା ଏ ଘୋର ଅଶାନ୍ତି ?

ହେ ଉତ୍କଳ ଆଦ୍ୟ- ଋଷି ବ୍ରହ୍ମବାଦୀ,
କର ଏହି ଆଶୀର୍ବାଦ
ପରକାଶୁ ତବ ପ୍ରଚ୍ଛନ୍ନ ପ୍ରଭାବ
ଦଗ୍ଧୁ ଜାତି-ଅବସାଦ ।



# ଭକ୍ତ କବିବର ଶ୍ରୀ ଜଗନ୍ନାଥ ଦାସ

ଉତ୍କଳର ବ୍ୟାସ ଜଗନ୍ନାଥ ଦାସ
ବିଷ୍ଣୁଙ୍କ ଅଂଶେ ଅବତାର,
ଭକତ-ପ୍ରଧାନ ଗୂଢ଼ ତତ୍ତ୍ୱ ଜ୍ଞାନ
କଲ ସ୍ୱଦେଶେ ପ୍ରଚାର ।

ବେଦ-ମହୋଦଧି ବ୍ୟାସ ତପୋନିଧି
ମନ୍ଥି ସେ ତତ୍ତ୍ୱ ସକଳେ,
ଉଷର ପୁରଣେ ନାନା ଉପାଖ୍ୟାନେ
ପ୍ରକାଶିଥିଲେ ସରଳେ ।

ସକ୍ଷିପ୍ତ ସସ୍କୃତ ଅମୂଲ୍ୟ ଆଧାରେ
ଥିଲା ସେ ଅମିୟ ରସ,
ସର୍ବେ ଦୁଃଖୀ ଧନୀ ପଣ୍ଡିତ ଅଜ୍ଞାନୀ
ନ ପାଇଲେ ସମ ଅଂଶ ।

ତେଣୁ ଭାବସିନ୍ଧୁ 'ପ୍ରାକୃତ ପ୍ରବନ୍ଧ'
ଗୀତେ କଲ ପରକାଶ,
ଥିବାଯାଏ ଭାଷା ଗାଇବ ଓଡ଼ିଆ
"ଭଜେ (କହଇ) ଜଗନ୍ନାଥ ଦାସ ।"

ନୃପତି-ନଗରେ କୃଷକ-କୁଟୀରେ
ଆଜି ଉଠେ ତୁମ୍ଭ ନାମ,
ଦିନ ଅବସାନେ ଶ୍ରାନ୍ତକ୍ଲାନ୍ତ ଜନେ
ନେଉଛନ୍ତି ଶାନ୍ତି ଆରାମ ।

ବ୍ରାହ୍ମଣ ଚଣ୍ଡାଳ ପ୍ରେମେ ଏକମେଳ
ଧର୍ମଭାବେ ହୋଇ ମତ୍ତ,
ବିପଦେ ସମ୍ପଦେ ଗାଆନ୍ତି ଆନନ୍ଦେ
ସ୍ଥାନେ ସ୍ଥାନେ 'ଭାଗବତ' ।

ସ୍ତୁତିର ପ୍ରଶଂସା ପାଇବାକୁ ଆଶା
ମନରେ ନ ଥିଲା ପୋଷି,
ତଥାପି ଜଗତ— ଭାଷା କବିକୁଳ
ହେବେ ତୁମ୍ଭ ନାମ ଘୋଷି ।

ତୁମ୍ଭ ସମାଧିରୁ ଆଦ୍ୟ କବିଗୁରୁ !
କେତେ ଦାର୍ଶନିକ କବି
ଜନମିଣ କାଳେ ଧର୍ମ--ସାହିତ୍ୟେ
ଦେବେ ନବ ନବ ଛବି ।

କେତେ ଧର୍ମବୀର ନୁଆଁଇ ନିଜ ଶିର
ସ୍ୱଦେଶ ସ୍ୱଧର୍ମ ହିତେ,
ଅସଂଖ୍ୟ ନାସ୍ତିକ ହୋଇବେ ପ୍ରେମିକ
ତୁମ୍ଭ ମଧୁମୟ ଗୀତେ ।



# ବଳରାମ ଦାସ

କି ମଧୁର ନାମ ଭକ୍ତ ବଳରାମ
ଉତ୍କଳବାସୀ ଶ୍ରବଣେ,
ସାହିତ୍ୟ-ସଂସାରେ କଠୋର ସାଧକ
କାହିଁ ତୁମ ପରି ଜଣେ ?

ବାଲ୍ମୀକି ବ୍ୟାସ ଅନ୍ତର-ଉଚ୍ଛ୍ୱାସ
ଯମୁନା-ଜାହ୍ନବୀ ପରି
ପ୍ରୟାଗ ପରାଏ ଏକାଧାରେ କିଏ
ପାରେ ତୁମ୍ଭ ବିନେ ଧରି ।

'ଗୀତା, ଗୂଢ ବାଣୀ ଲୋକରେ ବଖାଣି
ପ୍ରଚାରିଲ ତତ୍ତ୍ୱ ଜ୍ଞାନ,
ଜନ ସାଧାରଣ କରିବା କାରଣ
କଲ ଆନ ଗୀତାମାନ (୧) ।

"କମଳ ଲୋଚନ" କୋମଳ ବଚନ
ଶିଶୁମୁଖେ ଜଣେ ଜଣା,
ବୃଦ୍ଧ ଯୁବା ଯୋଗୀ ଭକ୍ତ ଅନୁରାଗୀ
ସର୍ବେ ତବ ପଦେ କିଣା ।

ଦୁର୍ଲ୍ଲଭ ସଂସ୍କୃତ- ଗ୍ରନ୍ଥେ ଯେ ଅମୃତ
ରଖିଗଲେ ବାଲ୍ମୀକି,
କେବଳ କୋବିଦ ପାଇଲେ ଆସ୍ୱାଦ
ମିଳନ୍ତା ନାହିଁ ସର୍ବଙ୍କି ।

---

(୧) ନାମରତ୍ନ ଗୀତା, ଉଦ୍ଧବ ଗୀତା, ଗୁପ୍ତ ଗୀତା ଇତ୍ୟାଦି ।

ପତିତ ପାଷାଣ ମୂଢ଼ ମୂର୍ଖ ଗଣ୍ଡ
ତୋଷିବାକୁ ମନେ ଗଣି
ମୃତ୍ତିକା ଆଧାରେ ଦେଲ ଦ୍ୱାରେ ଦ୍ୱାରେ
'ରାମାୟଣ'-ସୁଧା ଢାଳି ।

ତୁଏ ମୋ ପ୍ରଶାନ୍ତ ନୀଳାଚଳପତି
ଭକତ-ବନ୍ଧୁ ଠାକୁର
ଉତ୍କଳ-କଲ୍ୟାଣେ ଯୁଦ୍ଧ-ଅଭିଯାନେ
ଜିଣିଲେ ଯେ କାଞ୍ଚୀପୁର ।

ଭବ ରୂପେ ପୁଣି ଅବତରି ବେନି (୨)
ଜଗନ୍ନାଥ ବଳରାମ,
ଧର୍ମ୍ମ-କର୍ମ୍ମ-ପନ୍ଥା ସାହିତ୍ୟ ସୁଶିକ୍ଷା
ପ୍ରଭୁର ରଖିଲ ନାମ ।

ଏବେ ନୀଳାଚଳେ ରହିଛ ନିଶ୍ଚଳେ
ଦେଖି ଏ ଦଶା କପଟ ?
ଶୁଣ ଆହ୍ୱାନ ଆସ ଆର୍ତ୍ତତ୍ରାଣ !
ଚଳାଅ ଉତ୍କଳ-ରଥ ।



(୨) ଜଗନ୍ନାଥ ଦାସ ଓ ବଳରାମ ଦାସ ପଞ୍ଚସଖାରୁ ଯୋଡ଼ିଏ ସଖା । ଯେପରି ଚୈତନ୍ୟଙ୍କ ଶିଷ୍ୟମାନେ ଚୈତନ୍ୟଙ୍କୁ ଓ ରାମକୃଷ୍ଣ ପରମହଂସଙ୍କ ଶିଷ୍ୟମାନେ ପରମହଂସଙ୍କୁ ଅବତାର ବୋଲି ବିଶ୍ୱାସ କରନ୍ତି, ପଞ୍ଚସଖାଙ୍କର ସମ୍ପ୍ରଦାୟମାନେ ସେହିପରି ଜଗନ୍ନାଥ, ବଳରାମ, ଅନନ୍ତ, ଅଚ୍ୟୁତ ଓ ଯଶୋବନ୍ତଙ୍କୁ ଅବତାର ବୋଲି ମାନନ୍ତି ।

# ସାରଳା ଦାସ

ତପସ୍ୱୀ ସତ୍ତମ  ଭକ୍ତ ଅନୁପମ
ହେ ଭାରତୀ ଜ୍ୟେଷ୍ଠ ସୁତ !
ତବ ପରସାଦେ  ସାହିତ୍ୟ-ସମ୍ପଦେ
ଆମ୍ଭେ ସର୍ବେ କୃତ୍ୟକୃତ୍ୟ ।

ଭାଷା ଆଦ୍ୟ-ଭାଳେ  ଅଙ୍ଗାର ଉଜ୍ଜଳେ
ସମ୍ପୂର୍ଣ୍ଣ ନବ-ରବି,
ଖଣ୍ଡିତେ ପାଷଣ୍ଡେ  ଦାଟେ ବାଟେ ଦାଣ୍ଡେ
ଦେଖାଇଲ ଦିବ୍ୟ ଛବି ।

ମହା ଭାରତରେ  ଜଟିଳ ବସ୍ତୁର
ଧର୍ମ୍ମନୀତି ରାଜନୀତି,
ଦୈବ ବଳେ କଲ  ସୁନ୍ଦର ସରଳ
ଶିଶୁକଣ୍ଠ-ଗେୟ ଗୀତି ।

ଓଜ ତେଜ ବଳ  ଶକ୍ତି ଅତୁଳ
ପୂଜୁଅଛୁ ପଦ ବନ୍ଦେ,
ଜନଗାମୀ ଭାଷା  କଲ ମହାୟଣ
ବାନ୍ଧି ନୋହୁ ଛନ୍ଦୋବନ୍ଧେ ।

ତୁମ୍ଭ ବୀରବାଣୀ                    ସଂଗ୍ରାମ-କାହାଣୀ
ଶ୍ରବଣେ ଆଜ ଉତ୍କଳେ,
ଚିର ପରାଧୀନ                    କ୍ଷୀଣ ଜଡ ପ୍ରାଣ
ଜାଗେ କ୍ଷଣ ନବବଳେ ।

ତୁମ୍ଭ ଗୀତେ ପିଇ                    ଶକ୍ତିଶାଳୀ ସେନା
ହୋଇଣ କୃଷକପନ୍ତ,
ଜିଣି ଶତ୍ରୁଗଣେ                    ଉଡାଇଲେ ରଣେ
ଉତ୍କଳର ବୈଜୟନ୍ତୀ ।

ହେ ଶୁଦ୍ରମୁନି !                    କେତେକାଳ ତୁମ୍ଭ
ହୋଇ ରହିଥିବ ଆଉ,
ଭାରତ ତଇଳେ                    ନବ ଜ୍ଞାନ-ଦୀପ
ଜଳୁ ଥରେ ଦାଉ ଦାଉ ।

ଉଠୁ ଘରେ ଘରେ                    ଅକୁଣ୍ଠିତ ସ୍ୱରେ
ସ୍ୱାଧୀନ ସଙ୍ଗୀତ-ଧ୍ୱନି,
ଗାଆନ୍ତୁ ଉତ୍କଳେ                    ବୃଦ୍ଧ ଯୁବା ବାଳେ
"ଜୟ ଭାରତ ଜନନୀ" ।



# ଅନଙ୍ଗଭୀମଦେବ

ଭୀମ ପରକ୍ରମ  ହେ ଅନଙ୍ଗଭୀମ !
କପର୍ଦ ଚିହ୍ନ ପରତେ
ରାଜ-ସିଂହାସନେ  ବସିଥିଲ ଯେନେ
ବଶାଳ ଉତ୍କଳେ ପତେ ?

ସତେ ଅବା ଗୁମ୍ଫ  ଅଗଣିତ ଚନ୍ଦ୍ର
ଫଲକେ ହୋଇଣ ଠୁଳ
ଘୋର ଦର୍ପଣରେ  ଅଗାଧ-ଅନ୍ତରେ
କରୁଥିଲ କୋଳାକୁଳ !

ଏ କି ସେ ଉତ୍କଳ  ଯାର ଉତ୍କର୍ଷ ସ୍ୱନ
ଭୟମୀ ଭରାଟ ଥାଟ,
ଜାଣ ଗଡ଼ରବେ  ଜିଣିଲେ ଆହବେ
ଦୂର ଗଉଡ଼ କର୍ଣ୍ଣାଟ ।

ଥିଲ କି ହେ ଦିନ  ଯେବେ ପ୍ରଜାଗଣ
ପିତୃତୁଲ୍ୟ ସୁଶାସନେ,
ଧନ ଜ୍ଞାନ ବଳ  ଅର୍ପିଲେ ସକଳ
ସ୍ୱଧର୍ମ୍ମ ଶ୍ରେୟଃ ସାଧନେ ।

ମିଥ୍ୟା ବୋଲି ଅବା — କେମନ୍ତେ ବୋଲିବା
ଦେଖୁଁ ଏବେ ନିଜ ନେତ୍ରେ,
ଧର ଦର୍ପ ଦମ୍ଭ — ଭୂମ୍ନ ଗର୍ବି-ଧ୍ୱସ୍ତ
ସତେ ନୀଳାଚଳ କ୍ଷେତ୍ରେ ।

ମାରବ ତାଡନା — ଚଳସ ପ୍ରେରଣା
ଏଏ ନିସ୍ପନ୍ଦ ଉଚ୍ଛଳେ,
ଅଅତ ଅଭୂତ— — ଗଉରବ ସ୍ମୃତି
ଜଗାଏ ହୃଦେ ଉଚ୍ଛ୍ୱଳେ ।

ସ୍ମୃତି ବଳେ କୁଣ୍ଠ — ହୋଇ କେତେ ଜାତ
ଜଗତେ ଟେକନ୍ତ ମଥା,
କ୍ଷମା ସେ ବଧାନ — ପୁସ୍ୱଣ ପ୍ରଧାନ
ଉତ୍କଳ ପକ୍ଷେ ଅନ୍ୟଥା ?

ଉଠ ହେ ଜନନୀ ! — ଜଡ଼ତା-ଶିକୁଳ
ଫିଙ୍ଗିଣ ଦୂରେ ବହନ,
ଅମର ଭୁବନୁଁ — ଶ୍ରୀ ଅନଙ୍ଗଦେବ
କରୁଛନ୍ତି ଆମନ୍ତ୍ରଣ ।

କର୍ଣ୍ଣ ଡେରି ଶୁଣ — ସେ ଭବ୍ୟ ଆହ୍ୱାନ
ସ୍ମର ପୂର୍ବ ଯଶ ବାରେ,
ପୂର୍ବ ବଂଶ ନାମେ — ଶ୍ରୀ ଅନଙ୍ଗଶ୍ରେମ
ପୂଜ୍ୟ ସୌର୍ଯ୍ୟ ଉପହାରେ ।



# ପୁରୁଷୋତ୍ତମଦେବ

ଉଦିତ ହଉମ ଶ୍ରୀପୁରୁଷୋତ୍ତମ
"କ୍ଷାତ୍ରକୁଳ ଧୂମକେତୁ"
ତବ ନାମ ଆଜ ଉତ୍କଳ ସମାଜ
ଜାଗାଏ ଗୌରବ ହେତୁ ।

ତୁମ୍ଭ ପଣରକ୍ଷି ସାକ୍ଷୀରୂପେ ବସି
ବକୁଳ ବନ-ଉଦ୍ୟାନେ
କରନ୍ତି ପ୍ରକାଶ ପୂର୍ବ ଇତିହାସ
ସତ୍ୟବାଦୀ ବଂଶୀଧାରେ ।

ଯୁଦ୍ଧ-ଅଭିଯାନ କରେ ଜୟ ଗାନ
ହେ ପ୍ରତାପୀ ଶତ୍ରୁ ଜେତା !
ତବ କାଞ୍ଚି ଜୟ ଭକ୍ତେ ଅଭିନୟ
କରେ ଏବେ ଅଭିନେତା ।

ଗାଏ ଜନଶ୍ରୁତି ଅତୁଳ ବିଭୂତି
ଅନୁପମ ଭକ୍ତି ତବ ,
ଯାର ବଳେ ନିଜେ ରଣେ ହେଲେ ସଜେ
ସୈନିକ ରୂପେ କେଶବ ।

ଅବକାଶ-ଚିନ୍ତା

ସତେ କି ନୃପତି ! ଉତ୍କଳ-ଧରଣୀ
ଥିଲା ଏଡ଼େ ତେଜସ୍ୱିନୀ,
ସତ୍ୟ କି ସକଳ ଅତୀତ ଉଜ୍ଜ୍ୱଳ
ଓଡ଼ିଆ ଗର୍ବ କାହାଣୀ !

ଏକହସ୍ତ ତଳେ ଏକଛାର ବଳେ
ଜିଣିଲା ଯବନେ ଯେ ଦେଶ,
ସ୍ୱାର୍ଥ ଅଭିମାନେ ଆଜି ତା ସନ୍ତାନେ
କରନ୍ତି ସୋଦର-ଦ୍ୱେଷ ।

ଦେଖି ଏ ଦୁର୍ଗତି ହୁଏ କି ପ୍ରତୀତି
ଉଡ଼ାଇ ବିଜୟ-ଧ୍ୱଜା,
ଉତ୍କଳ-ଭୂମିରେ ଦେଶ ଦେଶାନ୍ତରେ
କମ୍ପାଇଲେ ଶତ୍ରୁ-ମଜ୍ଜା ।

କୃଷ୍ଣା ଗୋଦାବରୀ ଉତ୍ତୁଙ୍ଗ ଲହରୀ
ଉତ୍ଫୁଲ୍ଲ ଥିଲା ଯେ ନାଦେ,
ସେ ଶଙ୍ଖ-ମଧୁରୀ ଶିଙ୍ଗା ଭେରୀ ତୂରୀ
ନୀରେ କି ଅବସାଦେ ?

ନ ରହିବ କେହି ଚିର ଦୁଃଖ ସହି
ବିଧିର ସୃଷ୍ଟି-ବିଧାନ,
ବାଜୁ ତେବେ ଡଙ୍କା ଛୁଟୁ ହୁହୁଁ ଦଙ୍କା
ଜାଗୁ ଉତ୍କଳ-ପରାଣ ।



# ଉପେନ୍ଦ୍ରଭଞ୍ଜ

କବିକୁଳ କଞ୍ଜ    ଉପେନ୍ଦ୍ର ଭଞ୍ଜ
ନମେ ତବ ପଦତଳେ,
କାବ୍ୟ-ସୁମାଧୁରୀ    ଭାଷା-ସୁଭୂଷ
ପରକାଶିଲ ଉତ୍କଳେ ।

ଜନ୍ମି ରଜକୁଳେ    ବଇଭବ କୋଳେ
ଅତୁଳ ସୁଖ-ସଦନେ,
ତେଜି ସେ ସମ୍ଭୋଗ    ଆଚରିଲ ଯୋଗ
ବୀଣାପାଣି ଆରାଧନେ ।

ଅତି ମନୋହର    ଶ୍ଳିଷ୍ଟ ଚମତ୍କାର
ଶତ ମାନସୀ ପ୍ରତିମା,
କାବ୍ୟ ଚିତ୍ରପଟେ    ଉଜ୍ଜ୍ୱଳେ ପ୍ରକଟେ
ତୁମ୍ଭ ପ୍ରତିଭା ଗରିମା ।

କଳ୍ପନାର କାଚେ    ତବ ହୃଦ ସ୍ୱଚ୍ଛ
ନବ ବର୍ଣ୍ଣେ ପ୍ରତିଫଳି,
ନବ ଅଳଙ୍କାରେ    ଶୋଭେ କି ରୁଚିରେ
ପୁରାଣ ଘଟଣାବଳୀ ।

ହେ କବିଶେଖର      ଭଞ୍ଜ ବୀରବର !
କୋଟି ଉତ୍କଳ-ସନ୍ତାନେ,
ଆଜି ନବଯୁଗେ      ଧନ୍ୟ ଧନ୍ୟବାଦ
କରୁଛନ୍ତି ତୁମ୍ଭ ନାମେ ।

ଗାଏ ତୁମ୍ଭ ଗୀତ      ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା,
ଖେଳେ ବୋଲେ ଚଷା      ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।

କାଳ ବଳିଆର      ଆଣିଲା ସଂସ୍କାର
ନବ ରୁଚି ନବଜ୍ଞାନ,
କିନ୍ତୁ 'ବୈଦେହୀଶ      ବିଳାସ' ପାଇବ
କାଳେ କାଳେ ଉଚ୍ଚ ସ୍ଥାନ ।

ସୃଜନ ସ୍ୱହସ୍ତେ      ଓଡ଼ିଆଙ୍କ ଭାଷା
ଗଢ଼ିଛ ଓଡ଼ିଆ ଜାତି,
ତବ ଜନ୍ମସ୍ଥାନ      ଓଡ଼ିଶାରୁ ଆନ
ହେବଲେ ଖେଦରେ ଛାତି ।

ତଥାପି ଅନେକ      ସାହିତ୍ୟ-ସେବକ
ଭାବୀ ଉତ୍କଳ ନନ୍ଦନ,
ପୁଣ୍ୟ ତୀର୍ଥମଣି      ଘୁମୁସର ପଦେ
କରିବେ ନତ ବନ୍ଦନ ।



# ସାମନ୍ତ ଚନ୍ଦ୍ରଶେଖର *

ଉତ୍କଳ-ଭାସ୍କର ହେ ଚନ୍ଦ୍ର ଶେଖର !
ଋଷିପ୍ରଭ ମହାମତି,
'ସିଦ୍ଧାନ୍ତ-ଦର୍ପଣେ' ଦେଖି ଦେଖାଇଲ
ଚନ୍ଦ୍ର ତାରା ଗ୍ରହ ଗତି ।

ପାର୍ଥିବ ନେତ୍ରରେ ଉଦ୍ଭାସ ମଣ୍ଡଳେ
କିନ୍ତୁ ଏଥି ନାହିଁ ଦୃଷ୍ଟି,
ଅଙ୍କ୍ୟସୂତ୍ରେ ନତ ନେତ୍ରେ ସଧାରା
ଶଠସ ସ୍ୱଳ୍ପ ସୃଷ୍ଟି ।

ଯଶ ପ୍ରତି ଆଶା ଆହେ ମହାଯଶା
ନ ପୋଷ ହୃଦୟେ କ୍ଷଣେ,
ସତ୍ୟ ଲାଗି ସତ୍ୟ ନିଃସ୍ୱାର୍ଥେ ଖୋଜିଲ
ଆଜୀବନ ତ୍ରିଭୁବନେ ।

ଏଡା ଖଣ୍ଡ ମଧ୍ୟେ ଅଲକ୍ଷିତେ ଧନ
ଯାପିଲ ଧରଣୀ ବକ୍ଷେ,
ଏଡା ଚନ୍ଦ୍ରେ ସୁଧା ଉପହାର ଦେବା
କେହ୍ୱ ନ ଚକ୍ଷୁରେ ଟେରେ ।

---

* ସାମନ୍ତ ଚନ୍ଦ୍ରଶେଖର ଜୀବିତ ଥିବା ସମୟରେ ଲିଖିତ ।

ଶୁକ୍ତିକା ଅନ୍ତରେ ମୌକ୍ତିକ ପରାଏ
ଉତ୍କଳେ ତୁମ୍ଭ ସମ୍ଭବ,
ଅଜ୍ଞାନ ଉତ୍କଳ ନ ଜାଣିଲା ଲବେ
ତୁମ୍ଭ ପ୍ରତିଭା-ବିଭବ ।

ସ୍ୱଦେଶର ଘୋର- ଜଡ଼ତା-ଅନ୍ଧାର
ଭେଦିଲା ପ୍ରଭା-ବିକାଶ,
ତଥାପି ବିଦେଶେ ଚିନ୍ତର ଗ୍ରାହକେ
ଲଭିଲେ କ୍ଷୀଣ ଆଶ୍ୱାସ ।

ନିଜ ବୁଦ୍ଧିବଳେ ବିଜ୍ଞାନ ଆଲୋକ
ପାଇଲ ସୁଦିବ୍ୟ ଚକ୍ଷୁ,
ଧନ୍ୟ ଯୋଗେଶ ! ଭକ୍ତ ତାଙ୍କ ଯଶ
ବୁଝିଲେ ତୁମ୍ଭ ମହତ୍ତ୍ୱ ।

ଅରଣ୍ୟ-ନିବାସୀ ଜ୍ଞାନ ଅଭିଳାଷୀ
ମୁନି ସମାନ ସରଳ,
କେଉଁ ମନ୍ଦ ଗ୍ରହ ଆବୋରିଛି କହ
ଉତ୍କଳର କର୍ମସ୍ଥଳ ?

'ସିଦ୍ଧାନ୍ତ-ଦର୍ପଣେ' ସ୍ୱଦେଶର କୀର୍ତ୍ତି
ଦେଖି ଜଗତ ଏକ ଲକ୍ଷ୍ୟ,
କହ କହ କେବେ ଦୁର୍ଦ୍ଦଶା ଏହାର
ପାଇବ କି ସତେ କ୍ଷୟ !!



# ସ୍ୱର୍ଗୀୟ ପଣ୍ଡିତ ହରିହର ଦାଶଶର୍ମା *

ଆହେ ହରିହର ! ସୁଯୋଗ୍ୟ କୁମର
ଥିଲ ଉତ୍କଳମାତାର,
କି ମଙ୍ଗଳ କ୍ଷଣେ ଉତ୍କଳ-ଭୁବନେ
ହେଲ ତୁମ୍ଭ ଅବତାର !

ସମାଜ-ଦୁର୍ଗତି ସମସ୍ତର ସ୍ୱତ
ବୁଝିଥିଲ ତୁମ୍ଭେ ଏକା,
ସଂସ୍କାର-ବାସନା ସାଧି ପ୍ରାଣେ ସିନା
ତେଣୁ ଦେଇଥିଲ ଦେଖା ।

---

* ଏ ଜଣେ ପୁରୀର ବିଖ୍ୟାତ ପଣ୍ଡିତ ଥିଲେ । ଏହାଙ୍କ ଯତ୍ନରେ ପୁରୀ ସଂସ୍କୃତ ବିଦ୍ୟାଳୟ ସଂସ୍ଥାପିତ । ଭାରତର ନାନା ସ୍ଥାନର ସଭା-ମାନଙ୍କରେ ଏ ନିଜ ଅସାଧାରଣ ବାଗ୍ମିତାର ପରିଚୟ ଦେଇଥିଲେ । ଶେଷ ବୟସ ସମୟରେ ମାନବଲୀଳା ସମ୍ବରଣ କରିବାରୁ ନିଜର ଉଚ୍ଚ କଳ୍ପନାମାନ କାର୍ଯ୍ୟରେ ପରିଣତ କରିପାରିଲେ ନାହିଁ ।

କେତେ ଉଚ୍ଚଭାବ          ଲଭିଥିଲା ଠାବ
ତୁମ୍ଭ ଉଦାର ହୃଦୟେ,
କି କଲା ଦଇବ          କେ ତାହା ସହିବ
ଗଳିଗଲା ଅସମୟେ ।

ମୂକ ହୋଇକରି (୧)          ଆଜଯାଏ ହରି
ଯେବେ ରହିଥାନ୍ତ ବଞ୍ଚି,
ଓଡ଼ିଆଙ୍କ ହାତେ          ଦେଇଥାନ୍ତ ସତେ
ଉନ୍ନତି-ଭଣ୍ଡାର-କଞ୍ଚି ।

ନବ୍ୟ ପ୍ରବର୍ତନ          ରୁଚି ସମ୍ମିଳନ
କରିବ ଏବେ କିଏ ସେ ?
ଉତ୍ସାହ ଉଦ୍ୟମ          ସାହସ ଅଦମ୍ୟ
କାହିଁ ଏ ଉତ୍କଳ ଦେଶେ !

ଚାହିଁଥିଲ ମନେ          ତେଜିବେ ବ୍ରାହ୍ମଣେ
ଯେବେ ଚିର କୁସଂସ୍କାର,
ଅନ୍ୟ ଯେତେ ଜାତି          ଉଠିବେ ଝଟତି
ହେବ ଉନ୍ନତି ପ୍ରସର ।

ନିଦାରୁଣ କାଳ          କିନ୍ତୁ ଏ ସକଳ
ସହି ନ ପାରିଲା କ୍ଷଣେ ;
ବନଫୁଲ ପରି          ଅଚିରେ ଝଡ଼ିଣି
ଝାଉଁଳି ପଡ଼ିଲା ବନେ ।

---

(୧) ମରିବାର ଏକବର୍ଷ ପୂର୍ବରୁ ଏ ମହୋଦୟ ମୂକ ହୋଇଯାଇଥିଲେ ।

## ସ୍ୱର୍ଗୀୟ ପଣ୍ଡିତ ହରିହର ଦାଶଙ୍କ

କିଶୋର ବୟସେ କେତେ ସ୍ୱାର୍ଥତ୍ୟାଗ
କରିଥିଲ ଦେଶ-ହିତେ,
ଏବେ ଦେଶ ଦଶା ଆଉ ଷଣ୍ଣଜନ୍ମା
ନ ପଡ଼େ କି ଦିବ୍ୟ ଚକ୍ଷେ ?

ଉତ୍କଳ ମଣ୍ଡଳେ ନବ୍ୟ ସଭ୍ୟ ଦଳେ
ସର୍ବେ ଆଜ ସ୍ୱାର୍ଥପର,
ଆସ ହରିହର ପଣ୍ଡିତ ପ୍ରବର
ସମାଜ ସଂସ୍କାର କର ।



# କାଠଯୋଡ଼ୀ ତୀରେ ସାୟଂକାଳ

( ୧ )

ଅତି ରମଣୀୟ କାଠଯୋଡ଼ୀ ତୀର,
ଧୀରେ ଧୀରେ ବହେ ଶୀତଳ ସମୀର ।

କଲ୍ଲୋଳମୀ ବହୁ ସଲିଳ ସମ୍ପଦେ,
ପୂଜିବାକୁ ଧାଏଁ ମହାର୍ଣ୍ଣବ ପଦେ ।

ସ୍ତରେ ସ୍ତରେ ଉଠି ଉନ୍ନତ ଲହରୀ,
ପକାଏ ଉଠାଏ ପ୍ରତିକ୍ଷଣେ ତରୀ ।

ପାରହେବା ଲୋକ ମନେ କରି ଭୟ
ଲଗାନ୍ତି ଆପଣା ଇଷ୍ଟଦେବେ ଲୟ ।

ସୁଦକ୍ଷ ନାବିକ ବୁଦ୍ଧି କଉଶଳେ,
ଚଳାଏ ତରଣୀ ନିଜ ବାହୁବଳେ ।

ସାହସେ ଆହୁଲା ମାରେ ତରତର;
ନାକ ପୋଛିବାକୁ ନାହିଁ ଅବସର ।

ସାମାନ୍ୟ ଏ ନଦୀ ଏପରି ଦୁର୍ଗମ,
ଭବ-ସିନ୍ଧୁ ଆହା ନୁହେଁ କି ବିଷମ

## କାଠଯୋଡ଼ୀ ଖରେ ସାୟଂକାଳ

ବିନା ଶ୍ରମ ଯତ୍ନେ କିଏ ହେବ ପାର,
ଦୁସ୍ତର ଅନନ୍ତ ଭବ-ପାରାବାର ?
ନୈତିକ ସାହସ ହୋଇଣ ସାହସୀ
କର୍ତ୍ତବ୍ୟ-ରୂପିଣୀ ତରୀ ଉପରେ ବସି,
ବିବେକ-ଆତ୍ମଳ ଅବିରତେ ମାରି,
ହେବ ଯେବେ ଭବ ମହାସିନ୍ଧୁ ପାର ।
ବ୍ରାହ୍ମଣ ଚଣ୍ଡାଳ ଧନେଶ ଭିଖାରୀ,
ଏକ ନାବେ ବସି ହେଉଛନ୍ତି ପାରି ।
ବିଚାର କାହାର ମନେ ନାହିଁ ଲବେ,
ଧର୍ମନାବେ ସମ ଅଟନ୍ତି ସରବେ ।
ଧନ୍ୟ କାଠଯୋଡ଼ୀ ପ୍ରିୟ ଶୈବଳିନି,
ଧନ୍ୟ ପୂତମୟ ତରଙ୍ଗମାଳିନି !
ତୋର ବଡ଼ ଦୟା ଅକିଞ୍ଚନ ଜନେ,
ଧର୍ମଭାବ ତେଣୁ ଉପୁଜାଉ ମନେ ।

ଅସ୍ତାଚଳେ ଏବେ ପ୍ରବେଶ ତପନ,
ଲୋହିତ ରଞ୍ଜିତ ପ୍ରତୀଚୀ ଗଗନ ।
ଅସ୍ତମିତ ରବି ସ୍ୱର୍ଣ୍ଣସ୍ୱ କର,
ପ୍ରତିବିମ୍ବି ମେଘେ ଦିଶେ କି ସୁନ୍ଦର !
କୃଷ୍ଣ ମେଘେ ପଡ଼ି କନକ କିରଣ,
ସୃଜୁଛି ଆହା କି ବିଚିତ୍ର ବରଣ !
ଏପରି ମହତ ଜନର ପ୍ରଭାବ,
ଜନ୍ମାଏ ଅପର ପ୍ରାଣେ ନିଜ ଭାବ ।

## ଅବକାଶ ଚିନ୍ତା

ମହତ ଜନର ଲଗି ଅଂଗ ସ୍ପୃହା,
ଚେବଥ ତୁଅଇ କ୍ଷୁଦ୍ର ପ୍ରାଣିକାୟା ।

କ୍ଷଣମାତ୍ର ହେଲେ ସଜ୍ଜନ ସଙ୍ଗତି;
ଛୁଟେ ସିନା ସବେ ସଂସାର-ଦୁର୍ଗତି ।

ପାଣ୍ଡୁର ଶ୍ୟାମଳ କଳା ଧଳା ରଙ୍ଗେ,
ଝମେ ନଭସ୍ଥଳ ଶୋଭିଲା କ ରଙ୍ଗେ ।

ଯେତେବେଳେ ଆସେ ଯେଉଁ ରୂପ ମନେ,
ଦିଶଇ ତତ୍‌କ୍ଷଣେ ସେ ଛବି ଗଗନେ ।

ପ୍ରତିଭାତ ହୋଇ ସେ ଛବି ସକଳ,
ସର୍ବତ ଅନ୍ତରେ ଶୋଭେ ଅବିକଳ ।

ଆବର ଶ୍ୟାମଳ ଶୈଳ ପ୍ରତିରୂପ,
ନଭୋଗର୍ଭେ ଦିଶେ ଯଥା ତମ-ସ୍ତୂପ !

ମହତ ଜନର ହୃଦେ ଏହି ମତି,
ଆଭାସେ ସତତ ଶତ ପ୍ରତିକୃତି ।

ପ୍ରେମ-ଭାବେ ଯାର ଅନ୍ତର ପୂରିତ,
ସର୍ବ ପ୍ରାଣୀ-ହୃଦ ତା ହୃଦେ ଅଙ୍କିତ ।

ସର୍ବ-ଅନୁଭୂତି ସର୍ବଭୂତେ ତାର,
ତା ଦୃଷ୍ଟିରେ ବିଶ୍ୱ ଏକ ପରିବାର ।

ସେହି ନିଜେ ବିଶ୍ୱ, ବିଶ୍ୱ ମଧ୍ୟେ ସେହି,
ଅନ୍ୟ ହୋଇ ତାର ନାହିଁ ଆଉ କେହି ।

ଧନ୍ୟ ପ୍ରେମମୟୀ, ତ୍ରିପୁ କଲ୍ଲୋଳିନୀ
ଶତ ଶତ ପ୍ରାଣୀ ଆହ୍ଲାଦ-ଦାୟିନୀ ।

ଧନ୍ୟ ଧନ୍ୟ ତୋର ପବିତ୍ର ଜୀବନ,
ଦେଖାଏ ମହାତ୍ମା-ହୃଦ-ନିଦର୍ଶନ ।

ଚାହୁଁ ଚାହୁଁ ଏବେ ବୁଡ଼ିଗଲେ ରବି,
ତରଙ୍ଗିତ ହେଲା କ୍ରମେ ସବୁ ଛବି ।

କ୍ଷଣ ମଧ୍ୟେ ସେଇ ସୁଦୃଶ୍ୟ ନିଚୟ,
ଅନ୍ଧକାର-ଗର୍ଭେ ଲଭିଲେ ବିଳୟ ।

ଘୋର ତମେ ମୋତେ ଛାଡ଼ିଦେଲ ଏକା,
ଖୋଜିଗଲେ ଆଉ ହେଲେ ନାହିଁ ଦେଖା ।

ଏହିପରି ସବୁ ସଂସାର-ବେଭାର,
ଘୋର ଅନ୍ଧକାରେ ଆସେ ଆଚ୍ଛାଦି ।

ନୁହେଁ କେବେ ତାର ପ୍ରିୟ ବନ୍ଧୁଜନ,
ସଖା ମାତ୍ର ଏକା ଶ୍ରୀହରି ଶରଣ ।



# କାଠଯୋଡ଼ୀ ତୀରେ ସାୟଂକାଳ

( ୧ )

ପଶ୍ଚିମ ଗଗନ କଳରେ    ଉପଗତ ତରଣୀ,
ଖର ଖରତାପୁଁ ମୁକତ    ଏବେ ହେଲା ଧରଣୀ ।

ମୃଦୁଳ ସୁଗନ୍ଧ ପବନ    ବହେ ପ୍ରଦୋଷ ବେଳା,
ମଧୁକାଳେ ଏହା ମଧୁର    ସନ୍ଧ୍ୟା-ବିହାର ବେଳା

କ୍ଷୀଣ-ଅଙ୍ଗୀ କାଠଯୋଡ଼ୀର    ମନୋହର ପୁଲିନେ
ପରମ ଉଲ୍ଲାସ ଅନ୍ତରେ    ଏବେ ଭ୍ରମିଲି ଜନେ ।

ଅଦୂରେ ଶ୍ୟାମଳ ଶଇଳ    ଆହା କି ଶୋଭାବନ୍ତ !
ପ୍ରକୃତିଦେବୀ କି କରିଛି    ନଗ୍ନ ଶୃଙ୍ଗ-ସୀମନ୍ତ !

ସୀମନ୍ତ ମଧ୍ୟରେ ସିନ୍ଦୂର-    ବିନ୍ଦୁ ସମ ବର୍ତ୍ତୁଳ
ଅସ୍ତମିତ ରବିମଣ୍ଡଳ    ଦିଶେ କେଡ଼େ ମଞ୍ଜୁଳ ।

ଜଣୀ ଆଗମନେ ରସିକା-    ରୂପବନ୍ତୀ ପରସ୍ୱେ,
ଦିବ୍ୟ ବେଶ ସାଜ ଛଟିମା    ସିନ୍ଧୁ ସଙ୍ଗମେ ଯାଏ ।

କ୍ରମେ ଶୂନ୍ୟଗଲା ଏ ଛବି,    ରବି ହୋଇଲେ ଲୀନ,
ଆଗତ ପ୍ରଦୋଷ ସମୟ,    ଶେଷ ହୋଇଲା ଦିନ ।

## କାଠଯୋଡ଼ୀ ତଟରେ ସାୟଂକାଳ

ପାଣ୍ଡୁର କିରଣେ ରଞ୍ଜିତ    ହୋଇଅଛି ଗଗନ,
କି ଅବା ଏପରି ଦିଶଇ    ମୃତ-ଛଟା ବଦନ ।

ତନ୍ଦ୍ରାଳ ମୁକ୍ତ କ୍ଷଣକ    ଅନ୍ତେ ହୋଇ ବାହାର,
ଧୂସରିତ କୃଷ୍ଣବରଣ    ଜଳ ସବୁ ପଦାର ।

ଘଟୁଅଛି ନିତି ଏପରି    ଭବେ ଘଟନାଚୟ,
ଆଖି ବୁଜିଦେଲେ ସକଳ    ବିଶ୍ୱ ଅନ୍ଧାରମୟ ।

କ୍ରମେ କ୍ରମେ ଏବେ ହୋଇଲା    ଆସି ମୁହଁ ଅନ୍ଧାର,
କଳନାଦ ରତ ସଧୀରେ    ବହେ ତଟିନୀ-ବାରି ।

ମୃଦୁ ଊର୍ମିପୁଞ୍ଜ ମଞ୍ଜୁଳ    ଦିଶୁଥିଲା କି ରଙ୍ଗେ,
ବାରି ନୁହେ ଏବେ ଯିବାକୁ    ମିଶି ତିମିର ଅଙ୍ଗେ ।

ଏହି ଦଶା ଦିନେ ଲଭିବ    ଖିଳ ବିଶ୍ୱମଣ୍ଡଳ,
ସର୍ବଗ୍ରାସୀ କାଳ-ଅନ୍ଧାରେ    ମଜ୍ଜିଯିବ ସକଳ ।

ଧନ୍ୟ କାଠଯୋଡ଼ୀ ! ତୋ ତଟରେ    ନିତି ଏପରି ଦୃଶ୍ୟ,
ଦେଖି କେଉଁ ମୂଢ଼ ମାନସ    ନ ହୁଅଇ ତବଶ

ଏହିପରି ନିତି ବିଲୋକି    ନବ ଛବି ସକଳ,
କଠିନ ନାସ୍ତିକ ହୃଦୟ    ପ୍ରେମେ ହୁଏ ତରଳ ।

ତୋର ପ୍ରାଣପଣ ସାଗର —    ତଟରେ ଅନେକ ବାର,
ପ୍ରଦୋଷ ସମୟେ ଆନନ୍ଦେ    କରିଅଛି ବିହାର ।

ଏତେ ନବ ଛବି କଦାପି    ଦେଖି ନଥିଲି ଥରେ,
ମୈତ୍ରୀର ଔଦାର୍ଯ୍ୟ ପ୍ରକାଶେ    ତଣ୍ଟିଁ ସଦା ଅନ୍ତରେ ।

ଅବକାଶ ଚିନ୍ତା

ବିଶ୍ୱପତିଙ୍କର ଅନନ୍ତ ଶକ୍ତି ହୃଦେ ପ୍ରକଟେ,
ପରିସ୍ଫୁଟ ହୁଏ ସେ ଭାବ ପୃଥ୍ୱୀ ଗଗନ-ପଟେ ।
ନିତି ନିତି ଦେଖି ତୋ ତୀରେ ଜୀବ ଛବି ପଟଳ
ଜାଣିଲି ସ୍ୱଭାବେ କାମିନୀ— ହୃଦ ଅତି ଚପଳ ।

ଦେଉ ପଛେ ଯେତେ ମାନିନୀ ଗୁଣବତୀ ଯୁବ(ତୀ)
ନବ ନବ ବେଶ ଭୂଷଣେ ସଦା ବଳାଏ ମତି ।

ସୁଦୃଢ଼ ଗମ୍ଭୀର ନୁହଇ ଯେଣୁ ନାରୀ-ହୃଦୟ;
ତେଣୁ ସିନା ନରେ ଅନ୍ତେ ନାରୀ ଜାତି ଆଶ୍ରୟ ।

ସୁକୋମଳ କ୍ଷୀଣ ବଲ୍ଲରୀ ଲଭି ପାଦପ ସଙ୍ଗ,
ଆହା କି ପରମ ମଞ୍ଜୁଳ ଦିଶେ ଉଭୟ ଅଙ୍ଗ !

ତେବେ କିପାଁ ଏତେ ସ୍ୱତନ୍ତ୍ର ସଭ୍ୟ ନାରୀ- ସମାଜ,
ପତିଗଣ ସଙ୍ଗେ ସର୍ବାଂଶେ ସମ ହେବାକୁ ଆଜ ।

ଋଷିବର ବେଦଙ୍କ ପ୍ରକୃତି ମଧ୍ୟେ ନଷ୍ଟ ଭିନ୍ନତା,
କିଏ ସେ କରିବ ଅନ୍ୟଥା ଯାହା କଲ୍ପିଛି ଧାତା ।

ପ୍ରିୟ କଲ୍ଲୋଳିନୀ ! ତୋ ତୀରେ ଆଜି କାଲି ଲୋକନ,
ପବିତ୍ର ସରଳ ଆଦର୍ଶ— ନାରୀ ଶୁଦ୍ଧ-ଜୀବନ ।

ପତି ପାଦସେବା କରିବା ପାଇଁ ହେ ସ୍ରୋତସ୍ୱତି !
ଅକ୍ଷୁଣ୍ଣ ମାନସେ ସତତ କରୁ ଏକାନ୍ତେ ଗତି ।

ପରଶିବା ମାତ୍ରେ ତୋ ତନୁ ସୁଶୀତଳ ସମୀର,
ଊର୍ମି ଛଳେ ଲାଜ ଭୟରେ କମ୍ପି ଉଠେ ତୋ ନୀର

କୁଳକାମିନୀର ଏପରି ସିନା ମହତୋ ରୀତ,
ଲଜ୍ଜାବତୀ ହୋଇ ଏକାନ୍ତେ କାନ୍ତେ ଆଚରେ ପ୍ରୀତି

ପ୍ରେମ ମଧୁରତା ସ୍ନେହାର୍ଦ୍ର ସ୍ନିଗ୍ଧ ଭାବ ସକଳ,
ତୋ ସ୍ୱଚ୍ଛ ଜୀବନେ ଦେଖଇ ଜ୍ଞାନ ନେତ୍ର କେବଳ ।

## କାଠଯୋଡ଼ୀ ତୀରେ ସାୟଂକାଳ

ନବ ନବ ବେଶ ଭୂଷଣେ ତୁ ଯେ ବଳାଉ ମନ
ଚପଳତା ସତ ନୁହଇ କିନ୍ତୁ ତାହା ଦୂଷଣ ।

ଦୁର୍ବଳ ପ୍ରକୃତି ଏପରି ଯେତେ ନାଶ ପରାଣେ
ସଦ ବ୍ୟବହାରେ ବିମୁଖ ନୁହେ ପ୍ରମୋଦ ତାନେ ।

ଉଚ୍ଚ ମତ ବୃତ୍ତି ସକଳ ଯେବେ ସଂଯମ ଶିକାଣେ
ପୂର୍ଣ୍ଣ ହୁଏ ନର ସଂସାର ପୁରେ ସ୍ୱର୍ଗ ଉଲ୍ଲାସେ ।



# କାଠଯୋଡ଼ା ତୀରେ ଚନ୍ଦ୍ରାଲୋକ ନିଶୀଥ

( ୩ )

ସୁଧାକର-କରଜାଳେ ବିଭୂଷିତା ମହୀ,
ଶାନ୍ତିକେତ ପଦେ ଖଟେ ମନ୍ଦାନିଳ ବହି ।

ମାୟାବିନୀ-ନିଦ୍ରାବଳେ ଜଗତ ମୋହିତ,
ଆହା କି ସୁନ୍ଦର ବେଶେ ପ୍ରକୃତି ଶୋଭିତ !

ନାହିଁ ଏବେ ଦିବସର ଘୋର କଳନାଦ,
କ୍ଷୁଦ୍ର ଚେତା ମାନବର ଜାଗ୍ରତ ବିବାଦ ।

ନାହିଁ ଅଶାନ୍ତିରୂପିଣୀ ମାତ ନିଶାଚରୀ,
ସ୍ୱାର୍ଥପରତାର ଊର୍ଦ୍ଧ ଉଚ୍ଛ୍ୱାସ ଲହରୀ ।

ଆତ୍ମାଭିମାନର ନାହିଁ ଗମ୍ଭୀର ଶବଦ,
ଏକାବେଳେ ସର୍ବ ବିଶ୍ୱମଣ୍ଡଳ ସ୍ତବଧ ।

ସଂସାର ତୁମୁଳ ରଣ କ୍ଷଣେ ତିରୋହିତ,
ଗାଏ କି ସଙ୍କେତ ତେଣୁ ସୁଶାନ୍ତ ସଙ୍ଗୀତ ?

ଅବ୍ୟକ୍ତ ଅନିବାଧ ଅତି ସୁମଧୁର ତାନ;
କିବା ସେ ନିଗୂଢ ତତ୍ତ୍ୱ ସାମବେଦ ଗାନ ।

[ ୩.୪ ]

## କାଠଯୋଡ଼ୀ ତୀରେ ଚନ୍ଦ୍ରାଲୋକ ନିଶୀଥ

ଅସଂଖ୍ୟ ତାରକାପନ୍ତି ଗଗନମଣ୍ଡଳେ,
ଶୁଣନ୍ତି ସେ ମହାଗୀତ ନୀରବ ନିଶ୍ଚଳେ ।

ମୃତ ଜ୍ଞାନହୀନ ମୂର୍ଖ କିଛି ନ ବୁଝଇ,
ତେବେ ହେଲେ ମୋ ଅନ୍ତର ଉଛୁଳି ଉଠଇ ।

ଦେଖି ଶାନ୍ତିମୟ ଦୃଶ୍ୟ ଶୁଣି ଏ ସୁସ୍ୱର,
ଅପୂର୍ବ ସ୍ୱର୍ଗୀୟ ସୁଖେ ପୂରେ ମୋ ଅନ୍ତର ।
ଜାଣିଲି ମାନବ-ହୃଦ ସଙ୍ଗେ ଆଦିକାଳ,
ସ୍ଥାପିଛନ୍ତି ପ୍ରକୃତିର ବିଶେଷ ସମ୍ବନ୍ଧ ।

କିନ୍ତୁ ଦୁରବସ୍ଥା ନର ମୂଢ଼ ନିରନ୍ତର,
ସେ ସଂଯୋଗ ଛେଦିବାକୁ ବଡ଼ ତତପର ।

ନୀଚ ବୃତ୍ତି ସକଳର ହୁଏ ସେଣୁ ଦାସ,
ସୁନ୍ଦର ପ୍ରବୃତ୍ତିଚୟ ଲଭନ୍ତି ବିନାଶ ।
ଧନ୍ୟ ସେହି ଋଷିଗଣ ଆଦି ଆର୍ଯ୍ୟଦଳ,
ଗାଇଲେ ଯେ ଆଦି-ତତ୍ତ୍ୱ ସଙ୍ଗୀତ ସରଳ ।

ଜଡ଼ ବସ୍ତୁ ହୃଦେ ଯେବେ କଲେ ବିଲୋକନ,
ମହାଶକ୍ତି ମହାତେଜଃ ଅନାଦି କାରଣ ।

ଜନମିଥା ସେ ଯୁଗେ ହେଲେ ମୁଁ ପାମର,
ସୁଖେ ସେବା କରିଥାନ୍ତି ପ୍ରକୃତି-ଈଶ୍ୱର ।
ବାହ୍ୟ ଆବରଣ ଫେଡ଼ି ପ୍ରକୃତି ଅଙ୍ଗରେ
ଦିବ୍ୟ ଜ୍ଞାନନେତ୍ରେ ହେଲେ ଦେଖିଥାନ୍ତି ଥରେ ।

ଅପ୍ରାକୃତ ପ୍ରେମ-ରୂପ ସତ୍ୟ ସନାତନ,
ଅନନ୍ତ ବାସନା ହୋଇଥାଆନ୍ତା ପୂରଣ ।
ଧନ୍ୟ କାଠଯୋଡ଼ି ! ଧନ୍ୟ ପ୍ରିୟ ଶୈବଳିନି !
ତାପିତ ହୃଦେ ତୁ ଶାନ୍ତି-ସୁଧା-ସଞ୍ଚରଣୀ ।

ସଂସାରର ଲକ୍ଷ ଘୃଣା-ପ୍ରବଞ୍ଚନା-ଜାଲେ
ପ୍ରପୀଡ଼ିତ ହୁଏ ମୋର ମାନସ ଯେକାଳେ,
ନନ୍ଦନର ତୋ ଶାନ୍ତିର ଆସି କଲେ ବିତରଣ,
କି ମୋହନ ମନ୍ତ୍ରେ କରୁ ସକଳ ହରଣ ।
ଉଠଇ ସ୍ୱର୍ଗୀୟ ଚିନ୍ତା ନାନା ଦିବ୍ୟ ଭାବ,
କଳୁଷିତ ହୃଦେ ମୋର ବୈରାଗ୍ୟ ଉଦ୍ଭବ ।
ତୋର ପଦଯୁଗେ ମୁହିଁ ଚିରକାଳ ଋଣୀ,
ଏହି ଭାବ ଥାଉ ନିତି ହେ ସୁରତରୁଣୀ !



# ଭାର୍ଗବୀ ପ୍ରତି

ଛେଡ଼ି ଅଶାନ୍ତ ନଗର ପ୍ରାଣ
ସ୍ୱଚ୍ଛ ପଲ୍ଲି-ପଥେ କଲୁ ବାସ
ତୋର ବାଙ୍କ ଭୂମି        ହେଲୁ ପଥଶ୍ରମୀ
ଶେଷେ ପିଛ, ସଙ୍ଗେ ଗଲା ତ୍ରାସ, ଲୋ ତଟିନ ! ୧ ।

କାହିଁ କୋମଳ ଶ୍ୟାମଳ ଘାସ
କାହିଁ କୃଷକ କରନ୍ତ ଚାଷ
ତୋର ନେନେ ତଟେ        କାହିଁ ଅବା ଘଟେ
ପୁଣି ବୋଲନ୍ତି ସରଳ ଗପ, ଲୋ ତଟିନ ! ୨ ।

ପଲ୍ଲୀ ପ୍ରାକୃତ ସରଳ କାନ୍ତ
ଉଦ୍‌ବେଗହୀନ ହୃଦୟେ ଶାନ୍ତ
ତୋର ଜଳଧାର—        ଯୋଗେ ସୁଖତର
ହରେ ସହଜେ ସକଳ ଶ୍ରାନ୍ତ, ଲୋ ତଟିନ ! ୩ ।

ନାନାବିଧ ତରୁ ଗୁଳ୍ମ-ଲତା
ଫଳ-ଫୁଲ ପଲ୍ଲବେ ଆନତା
ଆବୋରି ତୋ ତୀରେ        ରାଜେ ବେଢ଼ ଧୀରେ
ପଲ୍ଲୀ ପଟେ କି ଟେକିଛୁ ଛବି, ଲୋ ତଟିନ ! ୪

ଦେଇ ଆଦର୍ଶ ଶୁଦ୍ଧ ଜୀବନ
ତୋଷ କେତେ କେତେ ଜୀବଗଣ
ପର ହିତେ ଏକା ନରଜନ୍ମର ଢକା
ଧନ୍ୟ ଧନ୍ୟ ତୋ ମହତପଣେ, ଲୋ ଚଟିଣ ! ୫ ।

ବର୍ଣ୍ଣିବାକୁ ତୋର ଗୁଣ ଗଣ
ଘୁର ମୋର କ ଅଛି ଶକତ
କଲୁ ସ୍ରୋତସ୍ୱତ ! ସଦା ତୋହ ପ୍ରତ
ଥାଏ ମୋ ମନେ ସ୍ନେହ-ଭକତ, ଲୋ ଚଟିଣ ! ୬ ।

ଦେଖି ନାହିଁ ମୁଁ ମାତୃବଦନ
ପାନ କରି ନାହିଁ ମାତୃସ୍ତନ
ହୋଇଣ ସଦୟ ଦେଇ ନଜ ପୟ
ବଞ୍ଚାଇଲୁ ମୋ ଶିଶୁ ଜୀବନ, ଲୋ ଚଟିଣ ! ୭ ।

ଚିନ୍ତାବିହୀନ ବାଲ୍ୟ ସମୟେ
ବହୁ ଖେଳିଅଛୁ ତୋ ହୃଦୟେ
ମୋର କେତେ ଅନ ଅଛୁ ଭୂ ସମ୍ମାନ
ମନେ ଥିବ ଜୀବ ଯିବାଯାଏ, ଲୋ ଚଟିଣ ! ୮ ।

ମୋର ପିତୃ-ପିତାମହଗଣ
କରି ତୋ ନୀରେ ସ୍ନାନ-ତର୍ପଣ
ଲକ୍ଷ୍ମଣ-ବନ୍ଦିତା ଯାଗେଶ୍ୱରୀ ମାତା (୧)
ପଦେ ପୂଜୁଥିଲେ ଅନୁକ୍ଷଣ, ଲୋ ଚଟିଣ !

(୧) ସ୍ୱର୍ଣ୍ଣବାକୂଳରେ ଯାଗେଶ୍ୱରୀ ଦେବୀଙ୍କ ମନ୍ଦିର ଅଛି । ପ୍ରବାଦ ଅଛି, ଦଣ୍ଡକାରଣ୍ୟରେ ଭ୍ରମଣ କଲାବେଳେ ଲକ୍ଷ୍ମଣ ଏହାଙ୍କୁ ପୂଜା କରିଥିଲେ ।

ସୁକୋମଳ ବାଲ-ଶେଫାଳ ଶେଯେ
ବିଶ୍ରାମିଲେ ତୋ ପୁଳକ ଦେହେ
ସ୍ୱାପଦାପ-ନାଶୀ ତୋର ବାସଲିଷି
ପୂତ କରେ ପ୍ରତି ଗ୍ରୀଷ୍ମେ ଶେଷେ, ଲୋ ଚଟିନ ! ୧୦ ।

ଆଜ ତୋ ପୂଜ୍ୟ ଧ୍ରିଷ୍ଣୁ ଆକୃତି
ଦେଖି ଚିତ୍ତେ କେତେ ପ୍ରବସ୍ମୃତି
ନବସ୍ତବ ଧରି ଉଠେ ଏକ୍ଷ୍ୱପରି
ଅତି ଉଚ୍ଛନ୍ନ କରେ ମୋ ଧୃତି, ଲୋ ଚଟିନ ! ୧୧ ।

ରଙ୍ଗକରେ ଅସ୍ତଶିଙ୍ଖ ହରି
ପରଶନ୍ତେ ତୋ ବକ୍ଷେ ଲହରି
ତୋ ଶୈବାଳଦଳ ଏବେ କି ମଞ୍ଜୁଳ
ହେମ ପ୍ରବାଳ ବକ୍ଷଶ୍ରୀ ଧରି, ଲୋ ଚଟିନ ! ୧୨ ।

ଦେଖି ଏହା ମୋର ହୃଦ ସରିତ
ଆଶା- ସମୀରେ ତରଙ୍ଗାଯିତ
ବିବିଧ ବରଣ କଳ୍ପନା କିରଣ
ଯହିଁ ତହିଁ ଦିବ୍ୟ ସ୍ମୃତି ଶତ, ଲୋ ଚଟିନ ! ୧୩ ।

କେତେ ରୁଚିର ସୂକ୍ଷ୍ମ ସ୍ୱପନ
ଚଳେ ଲଙ୍ଘି ମୋ ମନ-ନୟନ
ସାମାନ୍ୟ ଏ ଭବ ଦୃଷ୍ଟିର ବିଭବ
କରେ ନାହିଁ ମୁଁ ତିଳେ ଗଣନ, ଲୋ ଚଟିନ ! ୧୪ ।

ତେଣୁ ତୋ ପଦେ କରେ ଧନତ
ଗୀତ ଥିବାଯାଏ ସ୍ରୋତସ୍ୱତ !
ଭବ-ଦୂଃଖ ନାଶି                ଭଜ ଗଣି ଗଣି
ଚଟେ ଜନ୍ମାଇବୁ ଏତ୍କ ମତ, ଲୋ ଚଟିକ ! ୧୫ ।

ପିଣ୍ଡ ଚଞ୍ଚୁ ତୋ ପିଙ୍ଗଳା-କାସେ
ଯାଚେଶୁଷ୍ପ ଜନମ ସକାଶେ
ପୁନ୍ନାଗ ବକୁଳ                ନାନା ଜାତି ଫୁଲ
ଝୁଣ୍ଡ ଚଞ୍ଚୁ ଥାଉ ଚରଣପାଶେ, ଲୋ ଚଟିକ ! ୧୬ ।

ଅବଶେଷେ ମୋ ଜୀବନ-ନଦୀ
ମିଶି ତୋ ସଙ୍ଗତେ ନିରବଧି
ଲଭୁ ଚିର ଶାନ୍ତ                ହରୁ ସର୍ବକ୍ଲାନ୍ତ
ଭେଟୁ ଅତଳ କାଳ-ଜଳଧି; ଲୋ ଚଟିକ ! ୧୭ ।



# ଖଣ୍ଡଗିରି ଶିଖରେ

ଏହିକି ସେ ଖଣ୍ଡଗିରି ଯା ଶୋଭାସଙ୍କୁଳ,
ଏହିକି ସେ ଖଣ୍ଡଗିରି ଯାର ଫଳ ଫୁଲ,

ଏହିକି ସେ ଖଣ୍ଡଗିରି ଯାର ବନଲତା
ଏହିକି ସେ ଖଣ୍ଡଗିରି ଯାର ତରୁଲତା

ବହୁମାନ୍ୱଳ ପୂର୍ବେ ବୌଦ୍ଧ ତାପସ-ମାନସ
ଶୋଭଇ ଶଙ୍ଖରେ ଯାର ଏବେ ବୌଦ୍ଧ ଯଶ ।
ବୌଦ୍ଧ-ମନ୍ତ୍ରାବଳୀ ଆଜ ଅମର ଅକ୍ଷରେ,
ଅଶୋକ ଆଦେଶେ ସଜେ ଯା ଶିଳା-ବକ୍ଷରେ ।

କାହାନ୍ତି ସେ ଯୋଗିବୃନ୍ଦ କାହାନ୍ତି ଅଶୋକ ?
କାହା ହୃଦ ଦେଖି ଏହା ନ କରିବ ଶୋକ ?
"ଅହିଂସା ପରମଧର୍ମ" ଏ ମହା ମନ୍ତର,
ଗମ୍ଭୀର ଶବଦେ ଆଜ ନ ଘୋଷେ ଅନ୍ତର

ଶୂନ୍ୟ ଗୁମ୍ଫା ଅଭ୍ୟନ୍ତରେ ପଶିଣ ପବନ,
ମନ୍ତ୍ରନାଦ ସ୍ଥାନେ କରେ ସନ ସନ ସ୍ୱନ ।

ଆହେ ବୃଦ୍ଧ ଖଣ୍ଡଗିରି ପୁରାଣ-ପ୍ରବୀଣ !
ଦେଖିଅଛ ଉତ୍କଳର କେତେ ଶୁଭ ଦିନ ।

ଉତ୍ସାହ, ଉଦ୍ୟମ, ଶକ୍ତି, ପ୍ରତିଭା, ବିଭବ,
ସାହସ, ବିକ୍ରମ, ଧୈର୍ଯ୍ୟ, ଚାତୁରୀ ଗରବ,
ଉତ୍କଳର କେତେ କେତେ ଗୌରବ-କାହାଣୀ,
ଅତୀତ ଘଟଣା ଦେଖି ସବୁ ଅଛୁ ଜାଣି ।
ଏହି ଯେ ସମ୍ମୁଖେ ଶୋଭେ ବିରାଟ ମନ୍ଦିର
ଅନ୍ତରୀକ୍ଷ ମାପିବାକୁ ଟେକିଅଛି ଶିର ।
କାଳବଳେ ହୋଇଅଛି ବିଦୀର୍ଣ୍ଣ ଶରୀର
ତଥାପି ସୁନ୍ଦର ତନୁ ଗମ୍ଭୀର ରୁଚିର ।
ଚଉପାଶେ ଦିଶେ କେତେ ଦେବାଳୟ ଚୟ
କାଳଗର୍ଭେ କେତେ ପୁଣି ଭଜିଲେଣି ଲୟ ।
କି ଅସୀମ ଶକ୍ତି କେତେ ବିପୁଳ ବିଭବେ,
କେତେ ଧର୍ମ ଅନୁରାଗେ ଗଢ଼ା ଏ ସରବେ !
କେଉଁ ମହାଧର୍ମ ଏଥି ସାମ୍ୟ ମୈତ୍ରୀ ଭାବେ
ସମ୍ମିଳିତ ପରସ୍ପର ଅଦ୍ଭୁତ ପ୍ରଭାବେ ।
ଧର୍ମେ ଧର୍ମେ କାହିଁ ଦ୍ୱେଷ ବାଦ ଅହଙ୍କାର,
ଅତୀତ ଉତ୍କଳ ଆହା କି ମହା ଉଦାର !
ଧନ୍ୟ ଲଲାଟେନ୍ଦୁ ! ଧନ୍ୟ କେଶରୀ-ପୁଙ୍ଗବ !
ଉତ୍କଳର ପୁଣ୍ୟଶ୍ଲୋକ ଅମର-ଗୌରବ,
ଶୌର୍ଯ୍ୟ-ବୀର୍ଯ୍ୟ କଳା-କାବ୍ୟ ଧନ-ଜ୍ଞାନ-ମାନ
ଥିଲା ଯାଙ୍କ ସୁଶାସନ ପରହସ ବିଧାନ ।
କହ ତାଙ୍କ କଥା ତାଙ୍କ ରାଜ୍ୟ ସମାଚାର,
ନିର୍ଜୀବ ଉତ୍କଳେ ପ୍ରାଣ କର ହେ ସଞ୍ଚାର ।

( ଅପୂର୍ଣ୍ଣ )



# କଟକର ଶିଳାସେତୁ

ସୁଦୃଢ଼ ସୁନ୍ଦର ଆରେ ଶିଳାସେତୁ !
ରଖୁଛୁ କଟକ ନଗର ତୋ ହେତୁ ।

ପ୍ରକୃତି-ପ୍ରଭାବେ ଦେଖାଇ ଭ୍ରୂକୁଟି,
କାଳବଳେ ଅଙ୍ଗ ଯାଇ ନାହିଁ ଛୁଟି ।

ତରଙ୍ଗ-ପ୍ରହାର ସହୁ ଅନୁକ୍ଷଣେ,
ଶ୍ରମ ହରୁ ନଦୀ ଶୀତଳ ପବନେ ।

ଉଭା ହୋଇଅଛୁ ସୁଗମ୍ଭୀର ଦମ୍ଭେ,
ଗଜେ ବୃଦ୍ଧ ବପୁ ଯେସନ ପ୍ରାରମ୍ଭେ ।

କୋମଳ ଶୈବାଳ ଦଳେ କି ସୁନ୍ଦର,
ତୋର ଶିଳାମୟ ବୃଦ୍ଧ କଳେବର ।

ହେ ପ୍ରାଚୀନ ସେତୁ ! କରୁଛୁ ଦର୍ଶନ ।
କଟକ ନଗର ଉତ୍ଥାନ ପତନ ।

ତୁ ଅଟୁ କଟକ-ଇତିହାସ-ଜ୍ଞାତ,
ଫେଡ଼ି କହ କିଛୁ ଅତୀତର ଗାଥା ।

କେଶରୀ ବଂଶର ଶେଷ ରାଜଗଣ,
କଲେ ଯେବେ ଏହୁ ନଗର ସ୍ଥାପନ ।

କି ଉତ୍ସାହେ କହ ଏ ଉତ୍କଳ ଜାତି,
ଦେଶ-ହିତ ବ୍ରତେ ଉଠିଥିଲେ ମାତି ।

ମହାପରାକ୍ରମୀ ରାଜା ସ୍ୱେରଙ୍ଗ
ଘୋର ରଣପାଶେ କଲେ ଯୁଦ୍ଧରଙ୍ଗ ।

ଦେଖିଛୁ ସେଦିନ ଉତ୍କଳ-ବିକ୍ରମ,
ଉତ୍କଳବାସୀର ପ୍ରାଣାନ୍ତକ ଶ୍ରମ ।

ବାରବାଟୀ ରଣଦୁଆର ବିନଷ୍ଟ,
ଦେଖି ଆଜ ମନେ ନ ପାଉ କି କଷ୍ଟ !

ଆକ୍ରମିଲେ ଯେବେ ଦୁର୍ଦ୍ଧର୍ଷ ଯବନ,
ଝେଲିଲ କମାଣ ଗୋଳା ଅଗଣନ ।

ଦଜ ବଯେ ସବୁ ସହି ଅକାତରେ,
ସହଜେ ପୂରାଇ ନ ଦେଲୁ ନଗରେ ।

ସେ ଆଘାତ-ଚିହ୍ନ ଥିବ ଆଜଯାଏ,
ସ୍ଥାନେ ସ୍ଥାନେ ଘୋର ସୁବପୂଜ କାଏ ।

ଆଜଯାଏ ଯେତେ ଏପରି ଘଟଣା,
ଅନୁଭବେ ସବୁ ଅଛୁ ତୋତେ ଜଣା,

କହ କହ ସେତୁ, ସମସ୍ତ ବିସ୍ତାର
ଶୁଣନ୍ତୁ ଉତ୍କଳ ଯୁବ ନରନାରୀ ।

ହୀନବଳେ ଏବେ ଉତ୍କଳ-ସନ୍ତାନ,
ହରାଇଅଛନ୍ତି ଆତ୍ମଶକ୍ତି ଜ୍ଞାନ ।

ଜାଣିବେ ବା ଶୁଣି ପୂର୍ବ ବଡ଼ପଣ,
ସାଧୁ ଅନୁଷ୍ଠାନେ ଦେବେ ପ୍ରାଣମନ ।



# ବିଂଶ ଶତାବ୍ଦୀର ପ୍ରଥମ ଦିନ
# ବାରବାଟୀ ଦର୍ଶନ

ଊନବିଂଶ ଶତ ଖ୍ରୀଷ୍ଟ ଅବ୍ଦ ଗତେ,
ବିଂଶ ଶତ ଅବ୍ଦ ପ୍ରବେଶ ଜଗତେ ।

ଅନନ୍ତ ସମୟ ସାଗର-ଉଦରେ,
ଶତ ବର୍ଷ ଆହା ପଶିଲା କି ଖରେ !

କେତେ କେତେ ମନେ କେତେ କି ବାସନା
ଅପୂର୍ଣ୍ଣ ରହିଲା, ନାହିଁ ଆଶ୍ୱାସନା ।
ମାଉନପେଷ କାଳ ନ ରହିଲା କ୍ଷଣେ,
ଭବେ ତାର ସ୍ଥିର୍ୟ ନାହିଁ କେହି ଜଣେ ।

କେତେ କାହା ହୃଦେ ଅପାର କଷଣ,
ନ ଭୁଞ୍ଜି ଶୋଣିତ କରନ୍ତ ଶୋଷଣ ।

କାଳଠାରେ ନାହିଁ ଦୟା ମାୟା ଲେଶ,
କରିଯାଏ ଚାଲି ନିଜ କାର୍ଯ୍ୟ ଶେଷ ।

ଆସ ନବ ଯୁଗ ନବୀନ ବରଷ,
ନବ ଜୀବନ ଦେଇ ଅଶେଷ ହରଷ ।

ଶୁଭ-ସ୍ୱର୍ଗଧାମୁଁ ସୁଖ ସମାଚାର,
ଆଣି ଏ ମାନବେ କର ହେ ପ୍ରଚାର ।

ଛଟର ଶତାବ୍ଦୀ ଘୋର ତାପ-ଜାଳ,
ସ୍ୱରଗର ଶାନ୍ତି-ଜଳେ ପଖାଳ ।

ନନ୍ଦନକାନନ ନବ ଫୁଲବାସ;
ଦୂଷିତ ଧରଣୀ ଧାମେ ପରକାଶ ।

ଐକ୍ୟ ଭାବ ବାଅ ମୋର ପିଣ୍ଡେ ଆଣି,
ପତନ ଜାଗ୍ରତେ ମତ୍ତ ଦେଶ ପ୍ରାଣୀ ।

ଆବର ମାଗୁଛୁ ଯୋଡ଼ କର ବେନ,
ଭାରତର ପୂର୍ବ ଯଶଃ ଅପ ଦେନ ।

ଭରତଙ୍କେ ବାନେ ଯେତୁ ମହାରାଜ,
ଆହା ଧନହୀନ ଭିକ୍ଷାନ୍ନେସ ଆଜ ।

ଜର ହେଲେ ଏହା ଦେଖିଣ କରୁଣା,
ନବ ତେଜେ ଥରେ ରକାଶୁ ପୁରୁଣା ।

ହେ କାଳ ! ତୁମ୍ଭେ ତ ସର୍ବ ଶକ୍ତିମନ୍ତ,
କିଏ ଜାଣେ କାହିଁ ତୁମ୍ଭ ଆଦ୍ୟ ଅନ୍ତ

କିଏ ସେ କଳିବ କେତେ ତୁମ୍ଭ ବଳ;
ହୁଏ ଯେଣୁ ଜଳେ ସ୍ଥଳ; ସ୍ଥଳେ ଜଳ ।

ଏଣୁ ସେ ସମ୍ମୁଖେ ବାରବାଟୀ ପଦା,
ଭାଙ୍ଗି ଅଛି ପଡ଼ି ଲକ୍ଷ ଲକ୍ଷ ଗଡ଼ା ।

ଥିଲା ଯେଉଁ ଖାର-ଦହାର-ପ୍ରାଙ୍ଗଣ,
ଭ୍ରମେ ତହିଁ ଆଜ ଶ୍ୱାନ-ଶିବାଗଣ ।

ଶୁଭ୍ର ଶୈଳ ସମ ରଶାଳ ସଉଧ,
ଶିର ଟେକି ବାନେ ଭେଦଣ କଉଦ ।

ଗମ୍ଭୀର ଗରବେ ହୋଇଥିଲା ଠିଆ,
ଦେଖି ଯାହା ଥରୁଥିଲା ଶତ୍ରୁ-ହିଆ ।

## ବିଂଶ ଶତାବ୍ଦୀର ପ୍ରଥମ ଥର ବାରବାଟୀ ଦର୍ଶନ

ଆହା ଏବେ ତହିଁ ସ୍ତୂପାକାରେ ମାଟି,
ତିଳେକ ହୃଦୟ ଯାଏ ଯିବା ଫାଟି !

ଥିଲ ଯହିଁ କାଳେ ଗଭୀର ପରିଖା,
ଟେକିଛି କୋମଳ ଶସ୍ୟ ତହିଁ ଶିଖା ।

କାହିଁ ସେ କମାଣ ଅଶନି ଶବଦ,
ଶୁଣି ଯାହା ଶତ୍ରୁ ଶ୍ରବଣ ସ୍ତବଧ ।

ବୀରମଲ୍ଲ-ତେଜା ବାଜା କାହିଁ ଆଜ ?
କାହିଁ ସେ ଅଦମ୍ୟ କଣ୍ଠ ବାଜିରାଜ ?

ହେ କାଳ ! ତୁମ୍ଭର ଗର୍ଭେ ସବୁ ଲୀନ,
ଶୁଭ୍ରଭା ଉଜ୍ଜ୍ୱଳ ଆଜ ମାନହୀନ ।

ହେ କାଳ ! ତୁମ୍ଭର ଅଟଳ ଆଦେଶେ
ଘୋଟିଛି ଦୁର୍ଗତି ଏ ଉତ୍କଳ ଦେଶେ ।

ଆଲୋ ହେ ତ୍ରାତସ୍ୱଣ୍ଣ ସତ୍ତ୍ୱ ଚତୋପୃଦା !
(ଯା ହେବ ଉତ୍କଳ 'ସୁଜଳା ସୁଫଳା' ।)

ପିଆଇ ଆପଣା ସୁଧା ସମ ପୟ
ବଢ଼ାଇଥିଲୁ ଯେ ବୀର ହୃଦୟ ।

କପରି ଦେଖିଲୁ ତାହାଙ୍କ ନିଧନ ?
ଦେଖି ପୁଣି ସତେ ପାଇଲୁ ଜୀବନ !

ଦେଖିଲୁ କପରି କହ ସେ ଦୁର୍ଦ୍ଦିନ,
ବାରବାଟୀ ଯେବେ ହେଲା ଶ୍ରୀହୀନ !

କସ୍ୱନ କଲ୍ଲୋଳେ କରି ଘୋର ନାଦ,
ରିପୁକୁଳ-ହୃଦେ ଆତଙ୍କ ପ୍ରମାଦ

ଜନ୍ମାଇଲୁ ନାହିଁ କପାଁ ଲୋ ଜନନୀ,
ରହିଲୁ କପରି ସ୍ଥିର ତୋ ଧମନୀ ?

ଧରଣୀ ପ୍ରଳୟ ଗ୍ରାସ ରଣବେଶ,
ଶତ୍ରୁ ଦଳେ କିପାଁ ନ କଲୁ ନିଃଶେଷ ?
ଅବା କିପାଁ ତୋର ଶୋଷଣ କବଳ,
ଚରମିଲ ନାହିଁ ଏହୁ ରଙ୍ଗସ୍ଥଳ ?

ବାରବାଟୀ ଲଭି ତୋ ହୃଦେ ଆଶ୍ରମ,
ଭବୁଁ ଲୁଚିଥିଲା ବାରବାଟୀ ନାମ ।
ଯେ କାଳେ ସ୍ତମ୍ଭିତ ହେଲା ତୋର ଗତି,
ତୁ କାହୁଁ ଲଙ୍ଘିବୁ ସମସ୍ତ ନିୟତି ?
ମହାବଳୀ ଧନ୍ୟ ଧନ୍ୟ ତୁମ୍ଭେ କାଳ !
କେ ଲଙ୍ଘିବ ତୁମ୍ଭ ଶାସନ କରବାଳ ?

ଥିଲ ଯେବେ କିଛି ଉତ୍କଳର ଦୋଷ,
ଦୋଷ ଅନୁମତେ କରିଅଛ ଶେଷ ।
ହୋଇଅଛି ଶାସ୍ତି କଷଣ ଅପାର,
ନ କର ଅଧିକ ଆଉ ଗୁରୁଭାର ।

ଏଣିକି କରୁଣା ଅଟଇ ବିହିତ,
ସାଧ ନବଯୁଗେ ଉତ୍କଳର ହିତ ।
ଉତ୍କଳ-ଜନପଦେ ଦିଅ ନବ ବଳ,
ଉତ୍କଳ-ପାଦପେ ରସମସ୍ତ ଫଳ ।
ଉତ୍କଳ-ଶରୀରେ ପବିତ୍ର ଜୀବନ,
ଉତ୍କଳ-କାନନେ ସ୍ୱର୍ଗୀୟ ସୁମନ,
ଉତ୍କଳ-ଆକାଶେ ନବ ଯଶଃ ରବି
ଉତ୍କଳ-ପ୍ରକୃତି ଧରୁ ନବ ଛବି ।



# ବାଲିଯାତ୍ରା ସନ୍ଧ୍ୟାରେ ମହାନଦୀ ତୀରେ

ସୁନ୍ଦର ଶରଦ ସନ୍ଧ୍ୟା ସୁନୀଳ ଆକାଶେ,
ସୁସମ୍ପୂର୍ଣ୍ଣ ଶଶଧର ଉଜ୍ଜ୍ୱଳେ ବିଭାସେ ।

କୋମଳ ମୟୂଖମାନେ ହସିଉଠେ ମନ୍ଦ,
ସରସ ସଙ୍ଗୀତ-ବନ୍ଧ କମ୍ପେ ରହି ରହି ।

ଖେଳେ ତଥିପରେ ଶତ ଶତ ଜ୍ୟୋତ୍ସ୍ନାଧାରା,
ନାଚେ ନଭ ଗର୍ଭେ ଶଶୀ ସହ ଶତ ତାରା ।

ପୁଲକେ ପୂରିତ ଏବେ ହୁଅଇ ଅନ୍ତର,
ପ୍ରକୃତି କି କରିଅଛି ମୋହନ ମନ୍ତର ?

ଠୂଳ ହୋଇଛନ୍ତି ଏଥି ବନ୍ଧୁ ଶତଜନ
ଏ ଛବି ନିରେଖେ ନାହିଁ କାହାର ନୟନ ।

ନାନା ରଙ୍ଗେ ମାତି ଏବେ ହୋଇଛନ୍ତି ଭୋଳ,
ତେଣୁ ଶୁଭେ ଏଡ଼େ ଘୋର ମୁଖରିତ ଗୋଳ ।

## ଅବକାଶ ଚିନ୍ତା

ବାଜେ ଶଙ୍ଖ, ବାଜେ ଘଣ୍ଟ ପଡ଼େ କରତାଳି,
ମୃଦଙ୍ଗ ମନ୍ଦିର ବାଜେ, ଶୁଭଇ କାହାଳୀ ।

ଧର୍ମ୍ମନୃତ୍ୟେ ହୋଇଛନ୍ତି ମତ୍ତ ବହୁ ଜନ,
ଏ ନୃତ୍ୟରେ କିନ୍ତୁ ଆହା ନାହିଁ ତ ଜୀବନ !

ଶୁଣି ଏହି ସଙ୍କୀର୍ତ୍ତନ ନାଚେ ନାହିଁ ପ୍ରାଣ,
ଜାଗରିତ ନୁହେଁ ହୃଦ ଶୁଣି ଏହି ଗାନ ।

ଅନ୍ତରେ ସଞ୍ଚରେ ନାହିଁ ଲବେ ଧର୍ମଭାବ,
କେ କହିବ ଏ ସଙ୍ଗୀତେ ଅଛି କି ଅଭାବ ?

ଏହି ତ ସେ ମହାନଦୀ ଯାହାର ପୁଳିନେ,
ଏହି ତ ସେ ବାରବାଟୀ ଯହିଁ ଆହା ଦିନେ ।

ବାଜି ତୂରୀ ଭେରୀ ଶିଙ୍ଗା ଘୋର ଘନ ଘୋଷେ,
ଉତ୍ତେଜିଲା ପ୍ରତି ପ୍ରାଣ ସାହସେ ସରୋଷେ ?

ବିପୁଳ ବିକ୍ରମ ସ୍ରୋତେ ପ୍ରତି ହୃଦସ୍ଥଳୀ,
ପ୍ଳାବି ଦେଶାନ୍ତରେ ଦେଲା କେତେ ଆତ୍ମବଳି ।

ସେ ଦିନର ତେଜଃପୁଞ୍ଜ ନିସ୍ତ୍ରାହ ଶକତି,
ସ୍ୱଦେଶ ସ୍ୱଧର୍ମ ପ୍ରତି ଅଟଳ ଭକତି ।

ଭାସି ଯାଇଅଛି ସିନା ସମୟ-ତରଙ୍ଗେ,
ଭାସିଯାଏ ଫେନ ଯଥା ମହାନଦୀ-ଅଙ୍ଗେ ।

ଜଗତର ସାକ୍ଷୀ ତୁମ୍ଭେ ଦେବ ନିଶାପତି,
ନଭେ-ବର୍ତ୍ମେ ନିରନ୍ତର କର ନିତ୍ୟ ଗତି ।

ଜଗତର ନାନା ସ୍ଥାନ କରିଛ ଦର୍ଶନ,
ନାନା ଜାତି ନାନା ଧର୍ମ ଉତ୍ଥାନ ପତନ ।

## ବାଳପାଷା ହଷ୍ୟାରେ ମହାନଦୀ ତୀରେ

ଫଟେ ଯେତ୍ଥ ଥରେ ନନ୍ଥ ଉଠେ ତ ଆବର,
ଶାପ୍ଳନର ଅନ୍ତ ଯଥା ଆସେ ଉଜାଗର ।

ବାରବାଟୀ ଦଶା ଲଭି ଟେକେ ରସାତଳେ
ଉଠିଅଛନ୍ତି କି ସ୍ଥାନ ଅଭିନବ ବଳେ ।

ତେବେ କମ୍ପା ବାରବାଟୀ ଦେବ ଆଶାସ୍ଥାନ ?
ତେବେ କମ୍ପା ବାରବାଟୀ ବଦନ ମଳନ ?

ଚାନ୍ଦନୀ ସୁଧାକର ଦିବ୍ୟ ସୁଧାଂଶୁ,
ଉଠୁ ମହାନଦୀ-ବକ୍ଷେ ଉତ୍ତୁଙ୍ଗ ଲହରୀ ।

ଧୋଇ ବାରବାଟୀ-ମୁଖ କରୁ ସମୁଜ୍ଜ୍ୱଳ
ଶୁଦ୍ଧ ଧର୍ମମତେ ସର୍ବେ ହୁଅନ୍ତୁ ବତ୍ସଳ ।

ସଞ୍ଚରୁ ଏ ସଂକୀର୍ତ୍ତନେ ପବନ ଉଚ୍ଛ୍ୱାସ,
କର୍ମବୀର, ଧର୍ମବୀର ହୁଅନ୍ତୁ ପ୍ରକାଶ ।



# ଟ୍ରେନ ଉପରେ ଚିଲିକା ଦର୍ଶନ

ରହ ରହ କ୍ଷଣେ ବାଷ୍ପୀୟ ଶକଟ,
ଦେଖିବ ଚିଲିକା ସ୍ୱଚ୍ଛ ଜଳପଟ ।

ଚିର ମନେ ଯେଉଁ ନାହିଁ ଅନୁଭବ,
ବାସ୍ତବ ଜଗତେ କି ଏ ହୁଏ ସମ୍ଭବ ?

ନୀଳ ଶୈଳମାଳା ଧୀରେ ଧୀରେ ଯାଏ,
ଲାଗଇ ସ୍ୱପନେ ଦେଖିଲା ପରାଏ ।

ସନ୍ତରନ୍ତି ବକ୍ଷେ ପକ୍ଷୀ ଦଳ ଦଳ,
ଉଲଟିଣ ତଳେ ଦଶନ୍ତ ଯୁଗଳେ ।

ଘୋର ନାଦେ ଯହୁଁ ଉଠିଲେ ସେ ନଭେ,
ଛୁଟେ ଶତ ଖଗ ଚିଲିକା-ଗରଭେ ।

ସତ୍ୟ ବୋଲି ମନେ ନ ହେଉ ପ୍ରତୀତ,
ପଲକେ ସେ ଦୃଶ୍ୟ ହୁଏ ତିରୋହିତ ।

ଦୂରେ ଦେଖାଯାଏ ନଦାରୁଣ ଯାନ,
ଆସେ ପୁଣି ତରୁ ଟିଳା ବ୍ୟବଧାନ ।

ନିମିଷେ ଲୁଚଏ ନିମିଷେ ଦେଖାଏ,
ସ୍ୱପ୍ନଲବ୍ଧ ଛବି ପ୍ରତିମା ପରାଏ ।

କାହିଁ ଘନେ ନୀଳ କାହିଁ ସୁଶ୍ୟାମଳ,
କାହିଁ ବା ଧୂସର କାହିଁବା ଧବଳ ।

## ରେଳ ଉପରେ ଚିଲିକା ଦର୍ଶନ

ନାନା ସ୍ଥାନେ ନାନା ରଙ୍ଗେ ସର୍ଜ୍ଜି ଛାୟା,
ପ୍ରକାଶି ଚିଲିକା ! କରୁ କେତେ ମାୟା ।

ଦେଖ ବୀଣାପାଣି ଶାଶ୍ୱତ ସେବକ
କବି ରାଧାନାଥ ସୁଷମା-ଗ୍ରାହକ,

ଭ୍ରମି ବହୁ ସ୍ଥାନ ବିଶାଳ ଭାରତେ,
ନଦ-ନଦୀ-ମରୁ କାନନ-ପର୍ବତେ,

ଦେଖିଲେ ପ୍ରକୃତି ବିବିଧ ପ୍ରକାଶ
କିନ୍ତୁ ଶୋଭାଲୁବ୍ଧ ଶୁଦ୍ଧ ଅଭିଳାଷ ।
ସୁଖ-ଶାନ୍ତି-ପ୍ରୀତି କାହିଁ ଏକାଧାରେ
ନ ପାଇଲେ ଯଥା ମିଳେ ତୋହଠାରେ ।

ଉତ୍କଳର କୁଞ୍ଜ ସୌନ୍ଦର୍ଯ୍ୟର ଖଣି,
ସାରସ୍ୱତ ନେହେ ବାଞ୍ଛୁ ତହୁଁ ମଣି

ସୁଦକ୍ଷ ବିନାଣି ରଚି ଯେଉଁ ହାର
ଅର୍ପିଲେ ଉତ୍କଳ ଭାରତୀ ଗଳାର,

ଚିରନ୍ତନ ତାହା ରଜତ ଚୁଡର,
ତା ଦେଖି ଭବ୍ୟେ ଲୋଡ଼ିବେ ତୋ ତୀର !

ମୁଁ ଅଧମ ମୋର ଭାବୁକତା ନାହିଁ
ତଥାପି ଏ ପ୍ରାଣ କେ ଜାଣେ କିପାଇଁ

ଅନନ୍ତର ଲୋଡ଼େ ସୌନ୍ଦର୍ଯ୍ୟ ବ୍ୟାକୁଳେ,
ତେଣୁ ଭାବିଥିଲି ଆସି ତୋର କୂଳେ ।

ଦେଖିବି ତୋ ଶୋଭା ବସି ନିକାଞ୍ଚନେ,
କର୍ମ-ବନ୍ଧେ ଥିଲି ମନ କଥା ମନେ,

ଏତେକାଳ ଅନ୍ତେ ଜୁଡ଼ିଥିଲା ଯୋଗ,
ଆହା ସେ ସୁଯୋଗ ହେଲା କାହିଁ ଭୋଗ !

ରକ୍ଷଣ ଜଞ୍ଜାଳ ଛଷ୍ଟ ଜଗତେ,
ସଂସାରୀ ସୋଦର ବାନ୍ଧବ ସଙ୍ଗତେ ।

ଇଚ୍ଛାମତେ କାହୁଁ ଚଳିବ ବା ଜନ ?
ସମାଜେ ନିଜର ନୁହେ ନିଜ ମନ ।

ବସି କେତେଥର ନୀରବ ବିଜନେ
ଦେଖିଛୁ ତୋ ରୂପ କଳ୍ପନା ନୟନେ ।

ତୋ ମାନ ତରଙ୍ଗେ ଖେଳେ ନିରନ୍ତର,
ଅନୁପମ ଦିବ୍ୟ ହିରଣ୍ମୟ କର ।

ଶୁଭ୍ର ଶଙ୍ଖସ୍ତୂପ ତୋର ବକ୍ଷସ୍ଥଳେ,
ନାଚେ ଶତ ଶତ ମୋ କଳ୍ପନା ବଳେ ।

କଳ୍ପନା ଚର୍ଚ୍ଚିତ ତୋ ସୁନ୍ଦର ତନୁ,
କାଳେ କାଳେ ଆଜି ନ ଯିବ ମୋ ମନୁ ।

ଆଜି ଲୋ ଚିଲିକା ! କଳ୍ପନା ପ୍ରଭାବେ
ପୂରଇ ମୋ ମନ ଆଶା କେତେ ଭାବେ ।

ଅତୀତର ସୁଖ ସ୍ମୃତି ସମୁଦୟ,
ହର୍ଷ-ଖେଦେ କରେ ଆକୁଳ ହୃଦୟ ।

ତୋ ମଧୁର ନାମେ ରହିଛି ଜଡ଼ିତ,
ଗଉରବଯୁକ୍ତ ଉତ୍କଳ ଅତୀତ ।

କାହିଁ ଉତ୍କଳର ସେ ସୁକୃତରାଶି ?
ଯାହାର ପ୍ରଭାବେ ଭ୍ରମୁ ବ୍ରହ୍ମରାଶି

ନଭେ ନିରଞ୍ଜନ ଜଗତ-ଈଶ୍ୱର
ଧରଣ ସୈନିକ ନର କଳେବର

ଉତ୍କଳର ଯଶ ପ୍ରତିଷ୍ଠା ରକ୍ଷଣେ
ଖେଳେ ଖେଳେ ଘୋର ସମର-ପ୍ରାଙ୍ଗଣେ ।

## ରେଳ ଉପରେ ଚିଲିକା ଦର୍ଶନ

କାହିଁ ସେ ସୌଭାଗ୍ୟ କାହିଁ ସେ ସୁକୃତ ?
ପବିତ୍ର ଉତ୍କଳ ଆହା କି ବିକୃତ !

ଆର୍ଯ୍ୟ ଧର୍ମ-କ୍ଷେତ୍ର ପୂତ ନୀଳାଚଳ
ହରାଇଛି ସବୁ କର୍ମ-ଧର୍ମ-ବଳ ।

କାହିଁ ମୁଖେ ତେଣୁ ପୂର୍ବ ପୁଣ୍ୟକାନ୍ତି,
ହୃଦୟେ ସ୍ୱର୍ଗୀୟ ଧର୍ମଜାତ ଶାନ୍ତି ।

ଜୀବନେ ପବିତ୍ର ଉତ୍ସାହ ଶକତି,
ଉତ୍କଳର ଆହା କି ଘୋର ଦୁର୍ଗତି !

କାହିଁ ଗଲା ପୂର୍ବ ଓଡ଼ିଆ ବୋଇତ ?
କାହିଁ ସେ ସାଧବ ଉଦ୍ଦାମ ସଙ୍ଗୀତ ?

ଜଳପଥେ କାହିଁ ବିଦେଶ ଗମନ ?
କାହିଁ ପୂର୍ବ ଖ୍ୟାତି କାହିଁ ପୂର୍ବ ଧନ ?

କଥାରେ ରହିଛି ସବୁ ଆଜପାଏ,
ସାଧବାଣୀ ବୋହୂ ବୋଇତ ବନ୍ଦାଏ ।

କଙ୍କରର ଚୋରା ଦୃଢ଼ ରମ୍ୟ ତଟ,
ଦୁର୍ଗମ ଗଭୀର ଅଭେଦ୍ୟ ସଙ୍କଟ ।

ଖେଳାଉ ଥିଲେ ଯେ ଧରି ନିଜ ଦେହେ
ଉତ୍କଳର କେତେ ବୀର ଶିଶୁ ସ୍ନେହେ ।

ଅଛି ସେହି ଗିରି ଅଛି ସେ ବିପିନ,
ଅଛି ଚୋରା ଶିଳା ସୁଦୃଢ଼ ପୁଳିନ,

କିନ୍ତୁ କାହିଁ ଆହା ଏବେ ସେ ବୀରତା ?
ଓଡ଼ିଆ ଜାତିର ପୂର୍ବ ଜାଗ୍ରତା ?



# ଗଞ୍ଜାମ ଜାତୀୟ ସମିତି

( ୧ )

ଅନ୍ଧାର ଉତ୍କଳ-ନଭେ ଏବେ ଶୁଭଦିନେ,
ଉଇଁଛି ଉଜ୍ଜ୍ୱଳ ଆଶା- ତାରକା ଦକ୍ଷିଣେ ।
ନବୋଦିତ ଯୋଗୁଁ ତ୍ରସ୍ତ ଅଳପ ପ୍ରକାଶ
ତଥାପି ତାହାର ପ୍ରତି ପରଣେ ଆଶ୍ୱାସ ।

ଉତ୍କଳ ଜାଗ୍ରତ ସ୍ରୋତ ସୁନିଶ୍ଚିତ ପଥ,
ଦେଖାଇବ ଏହି କ୍ଷୁଦ୍ର ତାରକା ସତତ,
ଓଡ଼ିଆ ଜାତିର ଏହା ହେବ ଧ୍ରୁବତାରା,
ନାଶି ତମଃ ପ୍ରକାଶିବ ଯଶଃ ଜ୍ୟୋତିଧାରା ।

( ୨ )

ଦିନେ ଗଲ ଯାଇଅଛି    ଆହା ସେ ସୁଦିନ !
ସୁଭଗା ଉତ୍କଳ ଦେଶ    ଆଜ ଧନହୀନ ।
ଦିନେ ଯେଉଁ ଧ୍ରୁବତାର    କାନ୍ତି ଯାହା ଜାଳେ,
ଚିଲିକାର ସ୍ୱଚ୍ଛବକ୍ଷେ    ନୀଳ ଉର୍ମିମାଳେ,
ଚଳଇଲ ଶତ ଶତ    ଓଡ଼ିଆ ବୋଇତ
ଜାତୀୟ ସମିତିରୂପେ    ଆଜ ସେ ଉଦିତ ।

( ୩ )

ଧନ୍ୟ ହେ ଗଞ୍ଜାମବାସୀ    ଓଡ଼ିଆ ସକଳ !
ଧନ୍ୟ ତୁମ୍ଭ କଉଶଳ    ଧନ୍ୟ ତୁମ୍ଭ ବଳ ।
ରାଧ କୃଷ୍ଣ ପ୍ରେମ କଥା    ମଧୁର ସଙ୍ଗୀତେ,
ଚନ୍ତୀମୁଖେ ବଳଦେବ    ଯହିଁ ଶୁଣିଛନ୍ତି
ଯହିଁ ମହାକବି ଭଞ୍ଜ    ଶ୍ରୀରାମ ଚରିତ,
ଗାଇଲେ ପ୍ରଥମ କାବ୍ୟ    ରସମୟ ଗୀତ ।
ରାମକୃଷ୍ଣ ପଦ ଲାଗି (୧)    ଯାର ଧୂଳି ପୂତ
ତୁମ୍ଭେମାନେ ସେ ଗଞ୍ଜାମ-    ଉପଯୁକ୍ତ ସୁତ ।

---

(୧) କବି କୃଷ୍ଣ ସିଂହ ଗଞ୍ଜାମ ଅଧିବାସୀ ଥିଲେ । ବଳରାମ ଦାସ ଋଷିକୁଲ୍ୟା ନଦୀକୂଳରେ କେତେକ ଦିନ ଆଶ୍ରମ କରିଥିବାର ତାଙ୍କ 'ରାମାୟଣ'ରୁ ଦେଖାଯାଏ ।

( ୪ )

ଦେଖାଇଲ ଯେ ଉତ୍ସାହ ଉଦ୍ୟମ ଶକତ,
ମାତୃଭାଷା ମାତୃଭୂମି ଅଟଳ ଭକତ ।
ଦେଲ ଯେ ଜାତୀୟ ଭାବ ଦୃଢ଼ ପରିଚୟ,
ଚିରଦିନ ଗାଇବେ ତା ଉତ୍କଳ-ତନୟ;
ଉତ୍କଳର ଇତିହାସେ ପାଇବ ତା ସ୍ଥାନ,
ଭାବୀ ବଂଶ ଦେଖାଇବେ ସାଦର ସମ୍ମାନ ।
ଜାତୀୟ ଜୀବନେ ଏହି ପ୍ରଧାନ ଘଟଣା,
ସ୍ଥାନେ ସ୍ଥାନେ ଓଡ଼ିଆଏ କରିବେ ବନ୍ଦନା ।

( ୫ )

ସୁସଭ୍ୟ ଇଂରେଜ- ରାଜ-ପିତୃ ସୁଶାସନେ
ଶତ ବର୍ଷ ଅନ୍ତେ ଏବେ ଉତ୍କଳ ଭୁବନେ,
ଫଳଲ ପାଶ୍ଚାତ୍ୟ ଶିକ୍ଷା ସୁମଙ୍ଗଳ ଫଳ,
ସମବେତ ଉଦ୍ୟମର ଅଦଭୁତ ବଳ ।
ସ୍ୱଦେଶ ସ୍ୱଜାତି ହିତେ ସାଧୁ ସ୍ୱାର୍ଥତ୍ୟାଗ,
ସ୍ୱସମାଜ ସ୍ୱଧରମେ ଗାଢ଼ ଅନୁରାଗ ।
ସୁସାହସେ ଦେଖାଇଲ ଯେ ଉଚ୍ଚ ଆଦର୍ଶ,
ଅନୁସରନ୍ତୁ ଉତ୍କଳେ ସର୍ବେ ପ୍ରତି ବର୍ଷ ।



# ବ୍ରାହ୍ମଣ ସମିତି ଛାତ୍ରାବାସରେ ସମବେତ ଛାତ୍ରମାନଙ୍କ ପ୍ରତି

କଣ୍ୱଚ୍ଛନ୍ତ କଚ ଯା'ଙ୍କୁ ତପୋବନ,
କର ଘର ତାଙ୍କୁ ସେ ନାମ ଭଜନ ।
ଅଶାନ୍ତି ଅନୈକ୍ୟ ହିଂସା ଦ୍ୱେଷ ରୋଷ,
ଆଳସ୍ୟ କ୍ଷୁଦ୍ରତା ବୃଥା ଅସନ୍ତୋଷ ।
ବ୍ରହ୍ମବର୍ଚ୍ଚ ବଳେ ନ ପଶୁ ଏ ସ୍ଥଳେ;
ଜ୍ଞାନ ଉଦ୍ଭାସିତ ତେଜ ଏ ଉଜ୍ଜ୍ୱଳେ ।
ପୁଣ୍ୟ ମାଳାତଳେ ପୁଣ୍ୟତମ ସ୍ଥାନ,
ହୋଇ ଲଭୁ ସଦା ଲୋକରେ ସମ୍ମାନ ।
କର୍ମୀ ଧର୍ମୀ ଯୋଗୀ ପୁରୁଷ ପ୍ରସୂତ,
ବୋଲି ଦେଉଦର ପ୍ରସରୁ ବିଭୂତି ।
ଶ୍ରେଷ୍ଠବଂଶେ ତୁମ୍ଭେ ଲଭିଛ ଜନମ,
ବିଧିରେ ସମାଜେ ଆସନ ପ୍ରଥମ ।

ବାଣୀ-ଉପାସନା ତୁମ୍ଭ ଜାତିଧର୍ମ;
ସତ୍ୟାନୁସନ୍ଧାନ ପ୍ରିୟ ନିତ୍ୟକର୍ମ ।

ସ୍ୱାର୍ଥତ୍ୟାଗ ତୁମ୍ଭ ବଂଶର ଗାରିମା,
ସତତ ସୌଜନ୍ୟ ତନୟ ବଡ଼ିମା !

କୁଳ ଗଉରବ ବଂଶ ବଡ଼ପଣ,
ରକ୍ଷିବାକୁ ଯଦି ଅଛୁ ଯେବେ ମନ ।

ଗଢ଼ ଏଥି ଦୃଢ଼େ ଜୀବନ-ବୋଇତ,
କର ଆୟୋଜନ ଭବିଷ୍ୟତ ହିତ ।

ସ୍ୱରତ ଅର୍ଣ୍ଣବେ କି ଘୋର ତୋଫାନ,
ଦେଖି ଯଦି ଆଗୁଁ ହୁଅ ସାବଧାନ ।

ତବେ ଅଁଗ୍ରେଜ ପବନ କରାଳ,
ଉଠାଇ ଉତ୍ତାଳ ଶ୍ରମ ଉର୍ମିଜାଳ ।

କେତେ ଦ୍ୱୀପ ସ୍ତମ୍ଭ ନିମଗନ ଜଳେ,
କେତେ ଶତ ଶୈଳ ମିଶିଲେଣି ତଳେ ।

ସ୍ୱରତ କାଷ୍ଠପୃ-ଜୀବନ ତରଣୀ,
ପାଏ ନାହିଁ ଏବେ ସହଜ ସରଣୀ ।

କାଷ୍ଠପୁତ୍ତା-ପୋତେ ଜୀବନ-ବୋଇତ,
ଯୋଡ଼ିବା ତ ପ୍ରତି ଜନର ଉଚିତ ।

ପଡ଼ିବ ହେବାକୁ ଏ ତୋଫାନେ ପାର,
ହେବଟି କି ଯାଇ ପାରଗ କାଣ୍ଡାରୀ ?

ସେହିପରି ବଳ କର ଆୟୋଜନ,
ଆଗ ତୁଁ ସେପରି କର ଆୟୋଜନ ।

ବ୍ରାହ୍ମଣ ସମିତି ଗୃହାବାସରେ

ଭାରତବାସୀର ଧର୍ମବଳ ସାର,
ଧର୍ମ ହନା ଆଜ ଏତେ ଗୁରଖାର ।

ଧର୍ମେ ପଣ୍ଡ ଆଗେ ତୁମ୍ଭ ଅଧିକାର,
ସତ୍ୟ ଶୁଦ୍ଧ ଧର୍ମ କର ହେ ପ୍ରଚାର ।

ଦେଖାଅ ଜୀବନେ ଅଦ୍ଭୁତ ଶକତି;
କର୍ମେ ଅନାସକ୍ତ ଧର୍ମେ ଦୃଢ଼ ମତି ।

ପୂତ 'କର୍ମଭୂମି' ଏ ଭାରତ ଧାମେ,
ଆର୍ଯ୍ୟ ଅପମାନ କର କମ୍ପା ନାମେ ?

ପ୍ରେମେ ଆଲିଙ୍ଗନ କର ସର୍ବଜନେ,
ଉଛୁଳାଅ ପ୍ରେମ ଉଚ୍ଛ୍ୱାସ ଜୀବନେ ।

ତୁମ୍ଭ ଆଦରଣେ ଅନ୍ୟ ଯେତେ ଜାତି,
ଉଠିବେ ପଲକେ ସାଧୁ କାର୍ଯ୍ୟେ ମାତି ।

ମାନ ବଡ଼ପଣ ସିନା ଭାଗ୍ୟାଧୀନ,
ସେଥିଲାଗି ମନ ନ କର ମଳିନ ।

ସତ୍ୟ, ଶମ, ଦମ, ଶଉଚ, ତିତିକ୍ଷା,
ଏ ଆଦି ସକଳ ତୁମ୍ଭ କୁଳ-ଦୀକ୍ଷା ।

ଆଚରଣ ତାହା ଜୀବନେ କରତେ,
ବ୍ରହ୍ମତ୍ୱର ତେଜ ପ୍ରକାଶ ଜଗତେ ।

ଲୋକହିତେ ପ୍ରାଣ-ପ୍ରଦାନ-ପ୍ରବଣ-
ଦଧୀଚି ଶୋଣିତ କରିଛ ଧାରଣ ।

ଛାଡ଼ି ସ୍ୱାର୍ଥବଳ ଦେଖାଅ ହେ ତ୍ୟାଗ,
ଭାରତ ଜ ଉଦ୍ଧ-ମହାଯାଗେ ଲାଗ ।

ବୀରେନ୍ଦ୍ର ଅଗ୍ରଣୀ କୃପ, ଦ୍ରୋଣାଚାର୍ଯ୍ୟ
ଭୀଷ୍ମ ପୂର୍ବ୍ବଜଣେ ନ କଲେ କି କାର୍ଯ୍ୟ !

ପରଶୁ ପ୍ରଭାବେ ଦେବ ନିରଞ୍ଜନ
କରିଣ ଦୁରନ୍ତ ନୃପତି ନିଧନ ।

ବିଶ୍ୱବ୍ରତେ କଲେ ଶୋଣିତ ତର୍ପଣ,
ସେ କଥା କି ଆଜି ନ ହୁଏ ସ୍ମରଣ ?

ନିଜ ସୁଖ ଲଗି ଜାତି ମୁହିଁ ସ୍ୱନ୍ଦ୍,
ବିଶ୍ୱବ୍ରତେ ସ୍ୱନ୍ଦ୍ ପ୍ରତି ଭକ୍ତିବନ୍ଦ୍ ।

ଦେଖାଅ ଏ ସତ୍ୟ ଆପଣା ଚରଣେ,
ଦିଅ ଏହି ମନ୍ତ୍ର ସର୍ବ୍ବ କର୍ଣ୍ଣ କାନେ ।

ସର୍ବ୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ,
ସାଧ ବିଶ୍ୱବ୍ରତ ତେଜି ଅଭିମାନ ।



# କାମ

କାମଦେବ, ସୃଷ୍ଟି ସ୍ଥିତି ସଂହାର ନିଦାନ
ତୁମର ପ୍ରଭାବେ ଫୁଟେ ପୁଷ୍ପରାଜି ବନେ,
ମଞ୍ଜୁ ଗୁଞ୍ଜେ ଅଳି, ଗାଏ କୋକିଳ ସୁତାନ,
ସରସ ଉଲ୍ଲାସ ଜନ୍ମେ ଜଗତ ଜୀବନେ ।

ଯାଦଃପତି ବକ୍ଷସ୍ଥ, ମେଘେ ବିଜୁଳି ଜଡ଼ିତ,
ଉଠେ ଉର୍ମି ସିନ୍ଧୁକଣ୍ଠେ ଇନ୍ଦୁ ଆଲିଙ୍ଗନେ,
ଅଙ୍ଗେ ଅଙ୍ଗ, ପ୍ରାଣେ ପ୍ରାଣ ଦୁଇ ମିଳିତ,
ସହଜ ପବିତ୍ର ପ୍ରେମ, ତୁମରି ପ୍ରେରଣେ ।

ସୁମଧୁର-ମଧୁରାଜ୍ୟ-ଦେବ ରତିପତି !
ତବ ମୃଦୁ ଆସ୍ୱାଦନେ ପୁଲକେ ହୃଦୟ ।
ଦାରୁଣ ତାଡ଼ନା ମୂଢ଼ ଉପାସକ ପ୍ରତି
ଆମରଣ ଦୁଃଖ-ଶୋକ-ଅନୁତାପମୟ ।

ତୁମ୍ଭ ମହାଭାବେ ଜ୍ଞାନୀ କରେ ଅନୁଭୂତ
ଶୁଦ୍ଧ ଦିବ୍ୟ ବିଶ୍ୱପ୍ରେମ-ଜଡ଼ ପ୍ରତିକୃତ ।



# କ୍ରୋଧ

ମାନବ ଦୁରନ୍ତ ରିପୁ ଅନଳ ପ୍ରତିମ
ସାଧୁମୁଖେ କ୍ରୋଧ ! ସଦା ତବ ନିନ୍ଦାବାଦ,
ତୁମ୍ଭ ଆବର୍ତ୍ତେ ଘଟେ ଅଶାନ୍ତ ଅସୀମ,
ସମାଜ ଶାସନେ ଗୋଟେ ଘୋର ପରମାଦ !

ମହାକାଳରୂପୀ ଦେବ ! ଯେବେ ପରିତ୍ରାଣେ
ସତ୍ୟର ସପକ୍ଷେ ତବ ଶ୍ରମକାନ୍ତ କାୟା
ନାଶେ ପାପୀ ଭୟେ ନାଚେ ଧାର୍ମିକ ଉଲ୍ଲାସେ,
ସେ ମୂର୍ତ୍ତି ସମ୍ମୁଖେ ନମେ କ୍ଷୀଣ ଭବମାୟା ।

ଜର୍ଜରିତ ଅତ୍ୟାଚାର ଅନ୍ୟାୟ ଦୂଷଣେ
ପ୍ରଚଣ୍ଡ ପ୍ରଭାବେ ପ୍ରେର (୧) ହିଂଶକୋଟି ପ୍ରାଣେ
ସତ୍ୟ-ଧର୍ମ-ନ୍ୟାୟ ସଖା ରୁଦ୍ରରୂପୀ କ୍ରୋଧ !
ନମେ ତବ ପଦେ, କର ପାପ ପ୍ରତିଶୋଧ ।



(୧) ପ୍ରେର—ପ୍ରେରଣା କର (inspiring)

# ରେଭେନ୍‌ସା କଲେଜରୁ ବିଦାୟ

ସତେ ଆଜ ଜନନୀ ! ଏ ଅଧମ ତନୟ
ସଂସାର-ଘଟନା ବଳେ
ଭାସି ଶୋକ-ଦୁଃଖ-ଜଳେ
ଗୁଣ୍ଡଳ ଭ୍ରମର ସ୍ୱରୁ ଅଙ୍କ ମଧୁମୟ,
ନିଃସହାୟେ ଲୋଡ଼େ ଏବେ ସଂସାରେ ଆଶ୍ରୟ ।

ସଂସାର ଭୀଷଣ ସ୍ଥାନ
ନାହିଁ ଜ୍ଞାନ, ନାହିଁ ଧ୍ୟାନ
ଅଜ୍ଞାନେ ସକଳେ ଏଥି ସତତ ଚଞ୍ଚଳ,
ତୋ କୋଳ ସମାନ ନାହିଁ ଶାନ୍ତିମୟ ସ୍ଥଳ ।

କେତେ ନବ୍ୟ ଗ୍ରନ୍ଥରାଶି
ମୋ ହୃଦ-ତରଙ୍ଗେ ଭାସି
ଯାଉଥିଲ ଥିଲ ଯେବେ ତୋର କୋଳେ ଶୋଭେ,
ସେ ସବୁ ରହିବ କିକ ଏବେ ଭବଗେହେ ?

ତୋ ମନୋହର ଉଦ୍ୟାନେ
ନିକୁଞ୍ଜେ ଏକଧାରେ
ଚନ୍ଦ୍ରାଲୋକେ ନନ୍ଦରଣ ପୁଷ୍ପ ବନ୍ଧୁଗଣେ,
ଦେଖିଛୁ ଅପୂର୍ବ କେତେ ଚିତ୍ର ନବେନେ ନବେନେ ।

ତେବେ ଏ ଯେ ନରଦେହ
ଥିଲେ କଣ ଥାନ୍ତେ ସ୍ନେହ
ସ୍ୱପ୍ନେ ଜବେ ଦେଖି ନାହିଁ ତାଙ୍କ ସୁଧାମୁଖ,
ଆଜନମ ଜାତ୍ରୁ ମୋର ଚିର ସଖା ଦୁଃଖ ।

କିନ୍ତୁ ମୋ ମନ-ନୟନ
କର ମାତ ! ଉନ୍ମୀଳନ
ଚଖାଇଛ ମୋତେ ଯେଉଁ ସାମାନ୍ୟ ଅମୃତ,
ଆମରଣ ତହିଁ ଯୋଗେ ହେବ କୃତ୍ୟକୃତ୍ୟ ।

ଥିଲେ ଯହିଁ ତହିଁ ମାତ !
ଅଜ୍ଞାତ କି ଅବା ଖ୍ୟାତ
ଜାଗ୍ରତ ଥିବ ମୋ ମନେ ତୁମ୍ଭ କଥା ନିତ,
ହୁଏ ଯେତେ ବର୍ଷୀୟାନ୍
ଥିବ ତୁମ୍ଭ ପଦେ ଧ୍ୟାନ
ତୁମ୍ଭ ହିତେ ଜନମ ଗୋ ! ଲଭିବଇ ପ୍ରୀତ ।

### ରେଭେନ୍‌ସା କଲେଜକୁ ବିଦାୟ

ପୂର୍ବେ ଉଇଁ ଦିବାକର
କ୍ରମେ ଉଠେ ଯେତେ ଦୂର
ବଢ଼ଇ ମମତା ତେତେ ଶୈଶବ ସଦନେ ।
ଅସ୍ତାଚଳ ଶିରଦେଶେ
ପରବେଣି ଜୀବନଶେଷେ
ଭରଣେ ପୁଷ୍କର କରେ ପୂର୍ବାଶା ଚରଣେ ।
ଶିଖାଇଛ ଯେଉଁ ଶିକ୍ଷା
ଦେଇଅଛ ଯେଉଁ ଦୀକ୍ଷା
ନିରନ୍ତର ପ୍ରତିଫଳୁ ତାହା ମୋ ଜୀବନେ
ଏହି ଭିକ୍ଷା ଅକିଞ୍ଚନ କରେ ଶ୍ରୀଚରଣେ ।



# ମୋ ନାନୀ

ଆବାଲ୍ୟ ବିଧବା ଆହା ! କେବେ ମାତ୍ର ବାରେ
ଭୋଗୀ ନାହିଁ ଭବ୍ୟ ଶୁଭ ଦାମ୍ପତ୍ୟ-ପ୍ରଣୟ,
ପର ସେବାବ୍ରତେ ନିଜ ଜୀବନ ସଞ୍ଚୟ
ବ୍ୟୟ କରିବାକୁ ତବ ଜନ୍ମ ଏ ସଂସାରେ ।

ସଦା ସମଭାବ ତବ ଭିତରେ ବାହାରେ,
ପର ଲାଗି ଆଲୋଡ଼ିତ ସତତ ହୃଦୟ,
ଆଜୀବନ ତେଜି ନିଜ ସୁଖ ସମୁଚ୍ଚୟ,
ସୁଧା ସମ ମାତୃଭାବ ମିଳେ ତୁମଠାରେ ।

ସଦାଶୟା ସ୍ନେହମୟୀ ପରମପାବନୀ,
ଜୀବନ ମହତ ଲକ୍ଷ୍ୟ ସାଧୁଛ ଗୁପତେ,
ତୁମ ଶାନ୍ତ ଆଚରଣେ ସକଳ କାମିନୀ,
ଓହ୍ଲାଇ ଆସନ୍ତା ସ୍ୱର୍ଗ ଏ ମର୍ତ୍ତ ଜଗତେ ।

ତୁମର ନିଷ୍କାମ ସ୍ନେହ ସଦା ଥିବ ମାନ,
ଯହିଁ ଥିଲେ ସ୍ମରୁଥିବ ନିତି "ନାନୀ, ନାନୀ" ।



# ଛବିଶ ବର୍ଷ ପ୍ରବେଶ

ଅଲକ୍ଷିତେ ନିଶବଦେ ଆହା କି ବେଗରେ
ବହି ଯାଉଅଛି କାଳ-ନିରପେକ୍ଷ ନଦୀ !
ଅସଂଖ୍ୟ କଳ୍ପନା-କଣ ରଚିଛି ଅନ୍ତରେ
ବିକଶିତ ହୋଇ ନାହିଁ ଗୋଟିଏ ଅବଧି ।

ପଚିଶ ନିଷ୍ଫଳ ବର୍ଷ ହେଲା ଏବେ ଗତ
ପଛକୁ ଚାହିଁଲେ ହୃଦ ଆହା କି ବିକଳ !
ଅଛିତ କେବଳ ମୋର ରୁକ୍ଷ ସଇକତ,
ଦିଶେ ନାହିଁ କାହିଁ ଏକ ଶ୍ୟାମ ଦୂର୍ବାଦଳ !

ଏ ଦଦଗ୍ଧ ନାବ ଆଜି ଜୀବନ-ସନ୍ଧିରେ
ଯାଞ୍ଚିବି ବା କେତେ ଧନ ସମ୍ପଦ ସମ୍ମାନ,
ମଧ୍ୟାହ୍ନେ ପ୍ରଦୋଷ ଚନ୍ଦ୍ରା ଫୁଟାଇ ମୋ ଚିତ୍ତେ,
ମୋ ଆଶା ମୁକୁଳଗଣ ବସନ୍ତେ ମଳିନ ।

ଧର୍ମ ଅନୁକୂଳ ଯେବେ ମୋ କାମନାଚୟ,
ସାଧନେ ଶକତି ଦିଅ ପ୍ରଭୁ ଦୟାମୟ !



## ବିଷାଦ ସମୟରେ ଲିଖିତ କତିପୟ ପଂକ୍ତି

ପ୍ରଣୟର ମୃଦୁହାସ ଲୋଚନ,
ସୁଖ ଦୁଃଖ ଆହ୍ଲାଦ ଯାତନା,
ଜୀବନେ ମୁଁ ଭୋଗିଛି ଅନେକ,
ନାହିଁ ଆଉ ଅଧିକେ କାମନା !

ମୋ ଜୀବନ-ବୀଣାଯନ୍ତ୍ର ତାର,
ସ୍ୱରହୀନ ବଇତମ ଅନ୍ତ
ଏବେ କ୍ରମେ ହୋଉଛି ଆଉ,
ଛେକ ଆଦ୍ୟ ମୋହିନୀ ଶକତ ।

ମଧୁକାଳ ଆଶା-ଫୁଲଗଜ
ନଦାଘର ତପନ କରଣେ,
ଝାଉଁଳିଛି କ ବଷାଦେ ଆଜ
ଗନ୍ଧହୀନ ଜୀବନ-କାନନେ ।

## ବିଷାଦ ସମୟରେ ଲିଖିତ କତିପୟ ପଂକ୍ତି

ସୁନ୍ଦରର ମୃଦୁ ଗନ୍ଧବହ
ବହଇଛୁ ନିଜ ଶୀତଳତା,
ଭୀମ ଝଞ୍ଜା ପବନ ପ୍ରବାହ
ନାଶେ ଏବେ ହୃଦ-ସରସତା ।

ଭ୍ରମି ଭ୍ରମି ଅବସନ୍ନ କାୟା
ବିଷମ ଏ ବନ୍ଧୁର ବାଟେ,
ଦେଖିବଇଁ ଯେବେ ସ୍ନିଗ୍ଧ ଛାୟା
ବିଶ୍ରାମିବ ତନ୍ବୀ ଜଳଘାଟେ ।

ଶୁଣି ଖଗ ମଧୁର କାକଳୀ
ଶାନ୍ତି ବାଣୀ ରଖିବ ସମ୍ବାଦ,
ପକ୍ଷୀଗୀତେ ଦେବ କରତାଳି
କେହି ମୋର ନ ଥିବେ ବିବାଦ

ତରୁଲତା ନବ କିଶଳୟେ
ବିରଚିଣ କୋମଳ ଆସନ,
ଶୋଇବି ମୁଁ ବିତାନ ହୃଦୟେ
ଶୁଣିବାକୁ ବାୟୁ ସନ ସନ ।



# ଚନ୍ଦ୍ର

( ୧ )

ଆରେ ପୂର୍ଣ୍ଣ ନିଶାମଣି ! ଯେ କାଳେ ତୁ ନିଶିରାଣୀ
ସଙ୍ଗେ କରୁ ପ୍ରିୟ ସମ୍ଭାଷଣ,
କାହୁଁ କମ୍ପା ତୋ ଉତ୍ପତ୍ତି କଳ୍ପ କେଉଁ ମହାମନ୍ତ
ଏ ତତ୍ତ୍ୱ ସକଳ ସଦା ଭାବଇ ମୋ ମନ,
ଦେଖିଲେ ଯେ କାଳେ ତୋର ବିମଳ ବଦନ ।

( ୨ )

କେ କହେ ତୋର ଶରୀର ଧରିଛୁ ବହୁ ଭୂଧର,
ବହୁ ଶତ ନିବିଡ଼ କାନନ,
ନାହିଁ ତୋହର ପବନ, ଅଟ୍ ତୁ ଧରା ସମାନ,
ଅତି ସୁପ୍ରକାଣ୍ଡ ଏକ ବସ୍ତୁ ଅଚେତନ;
ମାତ୍ର ଏ ବିଚାର କେବେ ନ କରେ ମୋ ମନ ।

( ୩ )

ଯଥାର୍ଥ ଅଟୁ ତୁ କହ ? କହରେ ରଜନୀ-କ୍ଷଣ
ନିସ୍ତବ୍ଧେ କି କରୁଛୁ ସାଧନ ?
ହସୁଛୁ ଅତି ଆନନ୍ଦେ, ଏ ନିଶୀଥେ ମନ୍ଦେ ମନ୍ଦେ
ଅଂଶୁମାନେ ଭ୍ରମନ୍ତି ଣ ସମସ୍ତ ଭୁବନ,
ଏ ମହାଲକ୍ଷ୍ୟ କି କେବେ ଜାଣିବ ଏ ଜନ ?

( ୪ )

ଏ ସ୍ଥୂଳ ପାର୍ଥିବ ଜନ କି ସ୍ଥୂଳ ଏହାର ଜ୍ଞାନ,
ଭୁଞ୍ଜି ପୁଣି ସୁରଲୋକବାସୀ,
ତୋ ନିଗୂଢ଼ ତତ୍ତ୍ୱମାନ, ବୁଝିବ କି ଅଜ୍ଞାନ,
ଶାନ୍ତମୟୀ ନିଶିଗଣୀ ଯା ପାଦର ଦାସୀ,
ଅନୁଗତ ଯାଅ ତାର ଗ୍ରହ ଗଣି ଗଣି ।

( ୫ )

ନିତ୍ୟ ହୁଏ ଅନୁମିତ, ଗାଉ ତୁ ଛନ୍ଦ-ସଙ୍ଗୀତ;
ପ୍ରକାଶିବା ପାଇଁ ଏ ଜଗତେ,
କର୍ତ୍ତାଙ୍କର ଅବସ୍ଥିତି ଜଳେ ଯେ ତୋର ଉତ୍ପତ୍ତି
ନିର୍ଜୀବ ବୋଲିଣ ତୋତେ ବୋଲିବ କେମନ୍ତେ ?
ରହୁ ଏ ମୋ ମୂଢ଼ ମନ ତୋ ଛନ୍ଦ-ସଙ୍ଗୀତେ ।



# ଏକ ଅସରା ବର୍ଷାର ଅବ୍ୟବହିତ ପରେ ନରାଜ ଦର୍ଶନ

ସତ୍ୟ ଶାନ୍ତି ସୁଖ ସଦା ମାନବ-ଜୀବନ
ଖୋଜଇ ବ୍ୟାକୁଳେ ବ୍ୟସ୍ତ ସଂସାର ଗହଳେ,
ମିଳଲେ ଏପରି ସ୍ଥାନ କେବେ ଭାଗ୍ୟଫଳେ
ଅପସରେ କ୍ଷଣେ ଭବ ଦାରୁଣ କଷଣ ।

ସଦ୍ୟସ୍ନାତ ଏହୁ ରୂପ ଶୁଦ୍ଧ ଘନଜଳେ
ଅସ୍ତମିତ ରବି କରେ ଦ୍ୱିଗୁଣ ଉଲ୍ଲାସେ
ଛଗ୍ନଳ ଶ୍ୟାମଳ ଶସ୍ୟ କ୍ଷେତ୍ର ଚଉପାଶେ,
ଛଣଦ ସଜଳ ନଦୀ ବକ୍ଷେ ପ୍ରତିଫଳେ ।

ଶଇଳ ଶିଖରେ ଶୋଭେ ଶୁଭ୍ର ଶିବାଳୟେ,
ସମଗ୍ର ଶ୍ୟାମଳ ଦୃଶ୍ୟ ମଧ୍ୟେ କି ରୁଚିର !
ନୀଳ ମେଘେ ଯଥା ପୂର୍ଣ୍ଣ ଚନ୍ଦ୍ରମା ଉଦୟ
ଶିବ ସଙ୍ଗବଶେ ଶାନ୍ତି ଅଧିକ ଗମ୍ଭୀର ।

ଦେଖ ଦେଖ ବନ୍ଧୁଗଣ ! ପୂରାଇ ନୟନ,
ଏ ଯୋଗ ଜୀବନେ ଘଟେ ଅତି ଅଳ୍ପକ୍ଷଣ ।



# ଗ୍ରୀଷ୍ମେ ଝୁଣ୍ଟାଗଛ

ହେ ତରୁବର ! କାହିଁ ସେ କଳେବର ?
ଅଳପଦାନ ତଳେ ଏଡ଼େ ସୁନ୍ଦର !

ମନୋଜ୍ଞ କଣଳଦୃଦଳେ ଶୋଭିତ,
ମୋହିତ କରିଥିଲୁ ଭାବୁକ ଚିତ୍ତ ।

ନବୀନ ଯୁବାଜନ ସମ ପ୍ରଫୁଲ୍ଲ,
ଦିଶୁଥିଲୁ ରେ ଦ୍ରୁମ କେଡ଼େ ମଞ୍ଜୁଳ !

ଏବେ କପାଁଇ ତେଜ ସେ ବାହ୍ୟ ଦେହ,
ଏ ଘନଘ୍ରାନ କେବେଶ କରୁଛୁ ସ୍ନେହ ?

ଗ୍ରୀଷ୍ମ ଶରରେ ସ୍ପର୍ଶିରେ ହୋଇଛୁ ଛିଡ଼ା,
ପୂର୍ବପର ପବନେ ନାହିଁ ତୋ ବୀଡ଼ା ।

କଙ୍କାଳ ମାତ୍ର ଅଛି ତୋ ଅବଶିଷ୍ଟ,
ନ ଜାଣଇ ଦେଲ୍ଲି କ ଦଶା ହେଷ୍ଟ ।

ନିଦାରୁଣ ନିଦାଘ ହୋଇ ଉଗାର,
କଳ କଷ୍ଟସ ବସ୍ତୁ ଦେଲୁ କି ସାର ?

ତୋ ପୂର୍ବତନୁଶୋଭା ସୁମରି ମନେ,
ଏ ରୂପ ଦେଖି ଅଶ୍ରୁ ଆସଇ ନୟନେ;
କ୍ଷଣ-ଭଙ୍ଗୁର ପିନା ନର ଯୌବନ
ତ୍ରୁଟିତ କୁସୁମେ ବାସ ଯେସନ ।

ଦେଖିଣ ଭବେ ଜନ୍ତୁ ଏପରି ଗତି,
ଆଚରେ ଯୁବାଜନ କେତେ ଅନୀତି ।
ହେ ବୃକ୍ଷରାଜ ! କଲି ଯେଉଁ ବରୁର,
ନୁହେ ତୋର ସେପରି ହୀନ ଆଚୁର ।

ତୋ ଯୁବାକାଳେ ସାଧି ପ୍ରାଣୀ-ମଙ୍ଗଳ,
କରିଛୁ ରେ ପାଦପ ! ଜନ୍ମ ସଫଳ ।
ଦେଇ କୋମଳ ଛାୟା ସୁପକ୍ୱ ଫଳ,
କରିଛୁ କେତେ ଦଗ୍ଧ ପ୍ରାଣ ଶୀତଳ ।

କାଟିଲୁ ଯୁବାକାଳ ପରୋପକାରେ,
ଧନ୍ୟ ଧନ୍ୟ ଜୀବନ ତୋର ସଂସାରେ !
ଏବେ ମାୟା ମମତା ସବୁ ଉହାରି,
ନୀରବେ ଏକ ଲକ୍ଷ୍ୟେ ଭଜୁ ଶ୍ରୀହରି ।

ଧରିଣ ଯତି-ଦୀକ୍ଷା ସାଧୁଛୁ ଯୋଗ,
ପରମବ୍ରହ୍ମେ ଚିତ୍ତ କରି ସଂଯୋଗ ।
ପ୍ରଖର ରବି-କରେ ଟେକିଛୁ ମଥା,
ତପ-ପ୍ରଭାବେ ହୃଦେ ନ ଲାଗେ ବ୍ୟଥା ।

ଚଉପାଶେ ଦାବାଗ୍ନି ପ୍ରଚଣ୍ଡେ ଜଳେ,
ଅନଳକୁଣ୍ଡ ଯଥା ତପସ୍ୟା ସ୍ଥଳେ ।
କଳ୍ପଯୋଗୀ ପରାୟେ ଦିଶେ ଶରୀର,
ରହିଛି ଅସ୍ଥି-ଚର୍ମ, ନାହିଁ ରୁଧିର ।

ଦେଖିଣ ଏ ନୀରସ ସ୍ଥବିର ତନୁ,
ଭଗ୍ନ ଭକତି ଭାବ ଉପୁଜେ ମନୁ ।

ପଡ଼ଇ ସ୍ମୃତି-ପଥେ ଅତୀତ କଥା,
ଭାରତର ଗୌରବ ଆଶ୍ରମ ପ୍ରଥା ।

ସମାଜ ସୁରକ୍ଷଣେ ଅପୂର୍ବ ବିଧି,
କାହିଁ ଗଲା ଏବେ ସେ ଅମୂଲ୍ୟ ନିଧି ।

ମୁକତି ଲଭେ ସେହୁ ଧର୍ମ-ନିଶ୍ରେଣି
ସତେ କି କେବେ ଫେରି ଆସିବ ପୁଣି ?

ଗୃହସ୍ଥାଶ୍ରମ ଏକା ଏ ଯୁଗେ ସାର,
ନ ତୁଟେ ମଲପାଏ ମାୟା-ସଂସାର ।

ଗୃହସ୍ଥାଶ୍ରମେ ପୁଣି ନାହିଁ ସେ ନୀତି,
ଧର୍ମ-କର୍ମ-ସାଧନେ ସରଳ ପ୍ରୀତି ।

ସ୍ୱାର୍ଥସାଧନେ ରତ ସର୍ବେ ନରତେ,
କେତେ କାଳ ଏପରି ହେବ ଭାରତେ ।



# ଗୋଟିଏ କାଙ୍କଣ ଗଛ

ନବ ଦୂର୍ବାଦଳ ଶେଯ ଧରାଧାତ୍ରୀ କୋଳେ
ବଢ଼ି ଥିଲୁ ତେଜପୁଞ୍ଜେ ଆହା କେତେ ଖେଳେ !
ଦେଲା ପ୍ରକୃତି-ଜନନୀ ଲେଡ଼୍ ଯେବେ ଯାହା,
ନ ଥିଲା ତୋର ଏ ଭବେ କେହି ଆଉ ସାହା ।
ନଭଶିଖେ ଲେଟୁଥିଲୁ ସୁଖେ ଜନ୍ମଦେଶେ,
ସ୍ୱାଧୀନତାବଶେ ଶୋଭୁଥିଲୁ ବୃକ୍ଷବେଶେ ।
ଧରୁ ଗଣି ଗଣି ଫଳ ଗଲା ସବୁ ନାଶ,
ତଳେହେଲେ ମନେ ତୋର ନ ହୁଅଇ ତ୍ରାସ ।
କନ୍ତୁ ଫଳ-ଅଭିଳାଷୀ ଦୁରଶୟ ନର;
ଲଗାନ୍ତେ ତୋ ଦିବ୍ୟ ଶୁଦ୍ଧ କଳେବରେ କର,
ଝାଉଁଳି ପଡ଼ିଲୁ ସିନା ପାପର ପରଶେ !
ସ୍ୱାଧୀନତା ହରାଇଣ ରକ୍ଷକୁ ବରସେ !
ରଞ୍ଜା ଟଞ୍ଜା ହେଲା ତୋର ଅଙ୍ଗବୃଦ୍ଧି ଲାଗି
କହ ତ ସଂଯୋଗେ କମ୍ପା ହେଲୁ ଦୁଃଖଭାଗୀ ?
ଅନ୍ୟର ଆଶ୍ରୟ ପାଇ ଜଗେ ଶିର ଟେକ,
ବଡ଼ପଣ ଅଭିଳାଷେ ନର ଅବିବେକୀ ।
ସ୍ୱାଧୀନତାପ୍ରିୟେ ! ଧର ଅପର ଚରଣ,
ଭାଗ୍ୟ ଅରଜନୁଁ ଶ୍ରେୟ ମଣିଲୁ ମରଣ ।



# କୋକିଳ

ମଧ୍ୟାହ୍ନ ତପନ-କର ପ୍ରଚଣ୍ଡ ପ୍ରଖର
ଅବସନ୍ନ ତରୁଲତା ପଶୁ-ପକ୍ଷୀ-ନର,
ଏବେ ଶ୍ରମବାଧା ପାଇ
ପ୍ରବେଶିଲ ଛାୟାପ୍ରଦ ଘନ ବନେ ଯାଇ ।୧।

ଆହା କେଡ଼େ ଶାନ୍ତିମୟ ଏହୁ ବନସ୍ଥଳୀ !
ଶୁଭୁନାହିଁ ସୁଦ୍ଧା ଏଥି ବିହଙ୍ଗ-କାକଳୀ,
ବହେ ନିର୍ଝରୀ ସୁନ୍ଦରୀ,
ନୀରବ ଗମ୍ଭୀରେ ନିଜ ଗତି ଅନୁସରି ।୨।

ସୁଶ୍ୟାମଳ ତୃଣବାସେ ଆଚ୍ଛାଦିତ ମହୀ
ସୁଶୀତଳ ସମୀରଣ ବହେ ରହି ରହି
ଆହା କିଏ ସେ ଏକାଳେ,
ମୋ ଶ୍ରୁତିପଥରେ ସୁଧାମୟ ବାଣୀ ଢାଳେ ।୩।

ସଂସାର-ସମରେ ଦଗ୍ଧ ମୋ ବ୍ୟସ୍ତ ଜୀବନ
ପରମ ଉଲ୍ଲାସ-ରସେ ହେଲା ନିମଗନ,

ଆହା ସେ ମଧୁର ଗୀତ
ମୋ ତାପିତ ହୃଦେ ଜାତ କଲା ଦିବ୍ୟ ପ୍ରୀତ । ୪ ।

ନିରେଖିଲି ଚଉଦିଗେ ସାବଧାନ ନେଇ
କାହାକୁ ଦେଖିଲି ନାହିଁ ତାଳେ କିବା ପଇ

ବହେ ସେ ସଙ୍ଗୀତ-ସୁଧା
ପୁଲକ ଉଠେ କି ସଙ୍ଗେ . ନିଖିଳ ବସୁଧା । ୫ ।

ମନେ ବିଚାରିଲି ଶାନ୍ତିଦେବୀ ରାଜପଣେ
କରନ୍ତି ସଙ୍ଗୀତ ସ୍ୱର୍ଗ-ଅପସରାଗଣେ

ରହି ଅଦୃଶ୍ୟେ ଗୋପନେ
ବୁଝିବେ ଏହାର ଅର୍ଥ କାହୁଁ ମର୍ତ୍ତ୍ୟଜନେ ? ୬ ।

କ୍ଷୁଦ୍ର ପକ୍ଷୀ ଏକ ତରୁଶାଖାରୁ ଏକାଳେ
ଉଡ଼ି ପଶିଗଲା ଲତାକୁଞ୍ଜ ଅନ୍ତରାଳେ,

ବାଣୀସ୍ରୋତ ପରମାଦ
ଏବେ ତାହା ପଛେ ପଛେ ବନ୍ଧିଗଲା ପଦ ! ୭ ।

ସେ ଲତାମଣ୍ଡପୁ ପୁଣି ବାହାରିଲା ତାନ
ଜାଣିଲି ସେ କ୍ଷୁଦ୍ରପକ୍ଷୀ କରୁଅଛି ଗାନ,

ଧନ୍ୟ ଧନ୍ୟରେ ବିହଙ୍ଗ,
କି ହେବ ବା ହେଲେ ତୋର ଅସୁନ୍ଦର ଅଙ୍ଗ ? ୮ ।

ଗୁଣ ଥିଲେ ରୂପରେ କି ଅଛି ପ୍ରୟୋଜନ ?
ରୂପ ଅଟଇ କେବଳ ବାହ୍ୟ ଆଭରଣ,
ଧନ୍ୟ ଧନ୍ୟ ରେ ବିହଙ୍ଗ
କି ହେବ ବା ହେଲେ ତୋର ଅସୁନ୍ଦର ଅଙ୍ଗ ? । ୯ ।

ଭାରତ ପ୍ରାଚୀନ ଆର୍ଯ୍ୟ ମୁନିଗଣ ପରି
ମହାଲକ୍ଷ୍ୟ ସାଧି ଗୃହେ ସାଧୁବ୍ରତ ଧରି,
ତେଣୁ ତେଜି ଆଡ଼ମ୍ବର,
ଉଚ୍ଚାରୁ ନିଭୃତେ ବସି ଏ ମହାମନ୍ତ୍ର । ୧୦ ।

ସେ ମହାପୁରୁଷେ ଯଥା ବସି ବନସ୍ଥଳେ
ପ୍ରକାଶିଲେ ଦିବ୍ୟତତ୍ତ୍ୱ ଧରଣୀ-ମଣ୍ଡଳେ,
ତଥା କରୁ ଦିବ୍ୟନାଦ
ଶୁଣି ଯାହା ଛୁଟେ ନର-ହୃଦ ଅବସାଦ । ୧୧ ।

ଏ ଯୁଗର ପ୍ରାଣୀ ନୋହୁ ଜାଣିଲି ରେ ପକ୍ଷୀ ।
ପ୍ରାଚୀନ ମହତ ଭାବ ଅଛୁ ତେଣୁ ରକ୍ଷି,
ନାହିଁ ତେବେ ଅହଙ୍କାର,
ତୋ ନିବାସ ଉପଯୋଗୀ ନୁହେ ଏ ସଂସାର । ୧୨ ।

କେତେ କ୍ଷୁଦ୍ର ଦେହେ କେତେ ଗୁରୁତର ଭାବ
ଲାଗଇ ଆଶ୍ଚର୍ଯ୍ୟ ମୋତେ ଦେଖି ତୋ ପ୍ରଭାବ,
ଆରେ ପ୍ରବୀଣ ବିହଙ୍ଗ,
ଲଭିବାକୁ ମୋର ଇଚ୍ଛା ତୋର ସାଧୁସଙ୍ଗ । ୧୩ ।

ଅଜ୍ଞାନ ତମିରେ ଅନ୍ଧ ଭାରତ ସନ୍ତାନ
ହରାଇଛନ୍ତି ଜାତୀୟ ମାନ ଅଭିମାନ
ଆରେ ପ୍ରିୟ ପକ୍ଷୀବର,
ଗାଅନାହିଁ ପୂର୍ବସ୍ମୃତି ହୃଦରେ ଅନ୍ତର । ୧୪ ।

ଜାଣିବ କି ହେ ପାଠକ ଏ ବିହଙ୍ଗ ନାମ,
ଜାଣିବ କି କାହିଁ ଏହା ସୁଖମୟ ଧାମ ?
ନାମ ଏହାର କୋକିଳ,
ବସନ୍ତ-ରାଜ୍ୟ-ନିବାସୀ 'ସୁରକ୍ଷଣଶୀଳ' । ୧୫ ।



* ପ୍ରାଚୀନ ଉତ୍ସବ ସକଳର ରକ୍ଷକ ।

# ଅନାଥା କଳିକା

ନବୀନ ମଲ୍ଲିକା ବୃନ୍ତୁ କୋମଳ କଳିକା,
ପ୍ରକୃତି-ଜନନୀ କୋଳେ ସରଳା ବାଳିକା,
ଭୋଗିନାହିଁ ଭବ-ଦୁଃଖ ଝଡ଼ ଝଞ୍ଜାବାତ
ଅଷ୍ଟଦମିନାହିଁ ବାଳା ଜୀବନ-ପ୍ରଭାତ,
ତରୁଣ ଛଟକ ଭାବ ଅପାଙ୍ଗ-ଚାହାଣୀ,
ଚତୁର ସୁହାସ ଆଜ ନାହିଁ କଛୁ ଜାଣି ।
ଦବେଟି ହସଇ ଶୁଣି ଷଦଙ୍ଗନ-ଗୀତ,
ବୃନ୍ତାସନେ ଧୀରେ ଧୀରେ ଦୋଳାଏ ମରୁତ ।
ସ୍ୱର୍ଗୀୟ ସରଳ ଭାବ ପବନ ମାଧୁର୍ଯ୍ୟ,
ଏ ନବ କୋରକେ ଅଛୁ ଅପ୍ରକାଶ୍ୟ ପୂର ।
ଶୈଶବ ସମୟ ତାର ଅଜ୍ଞାନ ସମୟ
ଏ କାଳେ ଭ୍ରମର ସଙ୍ଗେ ହେଲା ପରିଣୟ ।
ପର ପୁଣି ପର କନ୍ୟା ହୁଏ କର୍ମ୍ମା ବନ୍ଦୀ,
ସାମାନ୍ୟ କଳିକା କାହୁଁ ଜାଣିବ ସେ ସନ୍ଧି ?

ଯୌବନ ସରସେ ନାହିଁ ଲାବଣ୍ୟ-ତରଙ୍ଗ
ସରସ ବସନ୍ତେ ସ୍ଫୁଟ ହୋଇନାହିଁ ଅଙ୍ଗ,
ଅନ୍ତର-ନିହିତ ମଧୁ ଦେଇନାହିଁ ଦେଖା,
ସୁବର୍ଣ୍ଣ ପତ୍ରରେ ଧର୍ମ ହୋଇନାହିଁ ଲେଖା,
ପ୍ରଣୟୀ ଭ୍ରମର ତେଣୁ କେବେ କେବେ ଆସେ
ଭ୍ରମଇ ଏକାନ୍ତେ ବାଳକଳିକା ସକାଶେ ।
ଗୁଣୁ ଗୁଣୁ ସ୍ୱରେ ଅତି ଅପ୍ରକଟ ଭାବେ
ନିତ ମିତ ଉପଦେଶ କହଇ ତା କାନେ ।
ତାହାର ଶୈଶବ ତନ୍ଦ୍ର କେବେ ନ ପରଶେ,
ଭବିଷ୍ୟର ସୁଖ ଚିତ୍ର ଅଙ୍କଇ ମାନସେ;
କରେ ଅନୁକ୍ଷଣ ସ୍ୱର୍ଗ ପ୍ରମୋଦ କଳ୍ପନା,
ନ ଜାଣି ସମୟେ ହେବ ଆସି କି ଘଟଣା ।
ଆହା କି ବିଚିତ୍ର ଭବେ ବିଧାତା ବିଧିର,
ଆହ୍ଲାଦ ସଙ୍ଗତେ ଥାଏ କଷଣ ଅପାର ।
ବସନ୍ତ ପ୍ରଦୋଷେ ଯେବେ ଫୁଟିଲା ସେ କଳି,
ପାନ୍ଥ ପଦେ ଦଳିହୋଇ ନାଶ ଗଲା ଜଳି ।
ଫୁଲ ପ୍ରକଟିତ ବାସେ ପ୍ରୟୋଜନ କିସ ?
ହୋଇଲା ସରସ ମଧୁ ଏବେ ପିନା ବିଷ !
ମଧୁ ପିଇବାକୁ ଏଥି ନାହିଁ ତ ମଧୁପ,
ରସିକ ନ ଥିଲେ କିଏ ଆଦରେ ଏ ରୂପ ?
ବନ-ନିବାସିନୀ ମଲ୍ଲୀ ଏ ନବ ଯୌବନେ
ଏକାକିନୀ ଅନାଇଛି ଅନନ୍ତ ଗଗନେ ।

ନୀରବେ ଶିଶିର ଅଶ୍ରୁ ଗଳଇ ନୟନୁଁ,
କମ୍ପେ ଅଧରର ଆଭା ନିରାଶ୍ରୟ ତନୁ ।
ଶୁଣନ୍ତେ ବାନ୍ଧବ କ ସେ କରଇ ବିଳାପ,
ପାଷାଣ ମାନବ-ହୃଦ ଜାଣେ କ ସେ ତାପ ?
ସହୃଦୟେ କେହି ଥରେ ନ ପକାଏ ଦୃଷ୍ଟି,
ଧରାଧାମେ ଅକାରଣ ହେଲା କି ତା ସୃଷ୍ଟି ?
ବୃଥା ଶୋକ ପରିହର ମଲ୍ଲିକା-ସୁନ୍ଦରୀ !
ଧୈର୍ଯ୍ୟଧର ଏବେ ତୁମ ଅଦୃଷ୍ଟ ସୁମରି ।
ସୁମନ ସମାଜ ହୃଦେ ନାହିଁ ଦୟା ଲେଶ,
ନ ଶୁଣନ୍ତି ତୋ ବିଳାପ ନ ଜାଣନ୍ତି କ୍ଲେଶ ।
ପ୍ରଣୟର ସ୍ଥାନ ନୁହେ ଏ ସଂସାର ଏକା,
ପ୍ରେମେ ପ୍ରଣୟୀ ସଙ୍ଗରେ ହେବ ସ୍ୱର୍ଗେ ଦେଖା ।
ଏହି ଦିବ୍ୟ ସାନ୍ତ୍ୱନାରେ ଆଶ୍ୱାସିଣ ମନେ,
କ୍ଷଣେ ଏଥି ରହି ଚାଲ ଅମର ଭୁବନେ ।



# ଶିବରାତ୍ରି

କଣ ଅଛି ଉପବାସ ପଜିବ ଶଙ୍କର,
ଜାଗର ଜାଳଣ ହେବ ନନ୍ଦୀ ଉଜାଗର ?
କାହିଁଗଲେ ଦେଖିବ ସେ ସତ୍ୟ ଶିବ ରୂପ,
ନାଶିବ କି ପାପ ଜାଳ ଘୋର ତମ ସ୍ତୂପ ?
ଉଜାଗର ରହିବାକୁ କାହିଁ ମୋର ବଳ
କି ଦ୍ରବ୍ୟେ ପୂଜିବ ଅବା ସେ ପଦଯୁଗଳ ?
ଏ ଜଡ଼ ଜଗତେ କାହିଁ ଚିଦାନନ୍ଦ ତନୁ,
ବାହ୍ୟାଲୋକେ ଅନ୍ଧକାର ଯିବ କାହିଁ ମନୁ ?
ରାତକର ଉଜାଗରେ କସ ପ୍ରୟୋଜନ ?
ନିଦ୍ରାବିମୋହିତ ମୋର ସମସ୍ତ ଜୀବନ !
କାହିଁ ପାରିଜାତ କାହିଁ ଜାହ୍ନବୀର ଜଳ,
କାହିଁ ବା ଅମର ଧାମ ହେମ ଶତଦଳ,
ଉପକରଣର ଲେଶ ନାହିଁ ଯେବେ ଭବେ,
ବ୍ରତ ଅନୁଷ୍ଠାନ କାହୁଁ କରିବେ ମାନବେ ?
ସନ୍ଦେହେ ବ୍ୟାକୁଳ ଏ ମୋ ଦୁର୍ବଳ ପରାଣ,
ନିରାଶ ବିଷାଦେ ଏବେ ମଗ୍ନ ମୋର ଜ୍ଞାନ,

ଅଶାନ୍ତ ଆବେଗରେ ହୃଦ ହୁଏ ଆଲୋଡ଼ିତ,
ଘୋର ଅବିଶ୍ୱାସ ତମେ ଚିତ୍ତ ବିଜଡ଼ିତ ।

ପ୍ରକୃତିର ସ୍ୱଚ୍ଛବେଶ ନ ଦେଖେ ନୟନ,
ଧୂମ ମରୁ ସମ ଲାଗେ ସମସ୍ତ ଭୁବନ ।

ଅନ୍ତରୁ ନୀରବେ ଏବେ ହେଲା ଦିବ୍ୟବାଣୀ,
କମ୍ପା ଅବିଶ୍ୱାସେ ଜଡ଼ ହେଉ ମୂଢ଼ ପ୍ରାଣୀ ?

ଜଡ଼ ବୋଲି ଯାହା ତୋତେ ହୁଅଇ ପ୍ରତୀତ,
ନ ଜାଣୁ ତହିଁ କି ଶକ୍ତି ରହିଛି ନିହିତ !

ଶକ୍ତି ବିନା ସତ୍ତା କେବେ ନୁହଇ ସମ୍ଭବ,
ତେଣୁ ସଦା ଶିବମୟ ଦେଖ ସର୍ବ ଭବ ।

ଦୂର ଦେବାଳୟେ ଯିବା ନାହିଁ ପ୍ରୟୋଜନ,
ନିଜ ଅଭ୍ୟନ୍ତର ଦେଖ ଫେରାଇଣ ନୟନ,

ହୃଦ-କପିଳାସେ ତୋର ବହେ ପ୍ରେମ-ଝର
ବିଜେ କରିଛନ୍ତି ଯହିଁ ସ୍ୱୟମ୍ଭୁ ଶଙ୍କର;

ଶୁଚିମନ୍ତ ହୋଇ ନିତି ଜ୍ଞାନ ଦୀପ ଜାଳି,
ଶୁଦ୍ଧ-ଭକ୍ତି-ରସ ଦିଅ ସେ ଶ୍ରୀପଦେ ଢାଳି,

ଉଜାଗର ରହି କର ତାଙ୍କ ପ୍ରିୟ କର୍ମ,
ପାଇବାକୁ ବାଞ୍ଛା ଯେବେ ଶିବରାତ୍ରି-ଧର୍ମ ।

ସମସ୍ତ ଜୀବନ କର ଏକ ଶିବରାତ୍ରି,
ଅନ୍ଧାରେ ନ ହୁଡ଼ ପଥ ହେ ସ୍ୱରଗ-ଯାତ୍ରୀ !



# ପଥିକ

ମୁଁ ତ ଚାଲୁଅଛୁ ମୋ କର୍ମ ଆଦର
କଏ ମୋତେ ଥରେ ଥରେ,
ରହ ରହ କ୍ଷଣେ ପଥିକ ବୋଲଣ
ଆଶ୍ୱାସି ଡାକେ ସାଦରେ !

ଏଣିକି ତେଣିକି ଚାହିଁଇ ନ ଦେଖି
କେହି କାହିଁ ନ ଦିଶଇ,
ମୁହୂର୍ତ୍ତକ ଅନ୍ତେ ପୁଣି ସେହି ମତେ
କଏ ସେ କାହୁଁ ଭାଷଇ ।

ମୁଁ ତ ଚାଲୁଅଛୁ ମୋ କର୍ମ ଆଦର
କଏ ମଧ୍ୟେ ଥରେ ଥରେ,
ଅତି ମନୋରମା ପୀରତି-ପ୍ରତିମା
ଜଗି ହୁଏ ମୋ ପଥରେ !

କାହିଁ କେବେ ଯଦି ଏ ରୂପ-ମାଧୁରୀ
ଆସ୍ୱାଦ ଚୋଷୁଛି ପ୍ରାଣ
ଭାବୁଁ ଏହିପରି ପଲକେ ସେ ଶିଶୁ
ହୁଏ କାହିଁ ଅନ୍ତର୍ଦ୍ଧାନ ।

ମୋ ପଥ ତ ମରୁ, ନାହିଁ ଲତା ତରୁ,
ନାହିଁ ବାୟୁ ନାହିଁ ଜଳ;
ତେବେ ବେଳେ ବେଳେ କାହୁଁ ବହିଆସେ
ଏ ଶୀତଳ ପରିମଳ ?

ଏ ଗନ୍ଧ କାହାର ଅତି ଚମତ୍କାର
ନିମିଷେ ହରୁଛି ମନ,
ନାହିଁ ସେ ସୁବାସ ନିଶ୍ୱାସ ପ୍ରଶ୍ୱାସ
ନିରୋଧେ ଝଞ୍ଜା ପବନ

କାହୁଁ ଏ ଆଶ୍ୱାସ, କାହୁଁ ଏ ସୁବାସ,
କାହାର ଏ ରୂପକାନ୍ତି,
ଏ ବିଜନ ସ୍ଥଳେ ପ୍ରାଣେ ଏକାବେଳେ
ଦିଏ ସ୍ନିଗ୍ଧ ଶାନ୍ତି ଭ୍ରାନ୍ତି ।

ଅସରନ୍ତି ପାଠ ଏ ଦୁର୍ଗମ ବାଟ
ରୁହିଁଲେ ବୁଢ଼େ ଚେତନା
କିଏ ବା ଭୁଲନ୍ତା ନ ଲଭିଲେ ଏହି
ସ୍ୱର୍ଗୀୟ ସ୍ନେହ ସାନ୍ତ୍ୱନା !

ନିରସ ଅନ୍ତରେ ନିର୍ଜନ ପ୍ରାନ୍ତରେ
କିଏ ଧରନ୍ତା ଜୀବନ,
ଯେବେ ମୂର୍ତ୍ତିମନ୍ତ ପୂର୍ବ ପ୍ରୀତି ସ୍ମୃତି
ନ ଦିଅନ୍ତା ଦରଶନ ?

ପବିତ୍ର ବାସନା କରନ୍ତେ ପ୍ରେରଣା
ହୃଦେ ଆସେ ନବ ବଳ;
କର୍ମପଥ ଶ୍ରମ ହରିବାକୁ ଆଶା
କି ବିଚିତ୍ର କଉଶଳ !

ଚିତ୍ତ ଆଶ୍ୱାସନା ପବିତ୍ର ବାସନା
ଶ୍ରଦ୍ଧା ସୁଧା ସ୍ନେହାନନା,
କର୍ମ ମହାପଥେ କରୁଛନ୍ତି ପାନ୍ଥେ
ସ୍ଥାନେ ସ୍ଥାନେ ଅଭ୍ୟର୍ଥନା ।

ତେବେ କର୍ମପଥେ ବ୍ୟର୍ଥ ମନୋରଥେ
ଘାରି ମୁଁ ହେବି କିପାଇଁ ?
ଏହି କିଏ କହେ ବାହ୍ୟେ କି ଅନ୍ତରେ
ଆଶ୍ୱାସିଣ 'ନାହିଁ, ନାହିଁ'



## ଗିରି-ଶିଖେ ଲଗ୍ନ ରହି ଚାଲିବି ମୁକର

ଯେତେ ଦୂର ଯାଏ ସ୍ଥଳ
ଚଉପାଶେ ଖାଲି ବାଲି,
ନାହିଁ କାହିଁ ଶ୍ୟାମଶସ୍ୟ ନବଦୁର୍ବାଦଳ,
ନାହିଁ ଲତା ନାହିଁ ତରୁ,
କେବଳ ଭୀଷଣ ମରୁ,
ଦିଶେ ନାହିଁ କାହିଁ ଜଳ ଫୁଲ ଅବା ଫଳ ।

ସୁନୀଳ ସୁନ୍ଦର ଗିରି
ଧରି ଅନୁପମ ଶିରୀ
ଦିଶୁଥିଲା ଅଳ୍ପ ଦୂରେ ଚକ୍ରବାଳ ମୂଳେ,
ଉଜ୍ଜ୍ୱଳ ତାରକାରାଶି
ଦିବ୍ୟ ଆଲୋକେ ଉଦ୍ଭାସି
ନିରନ୍ତର ଶୋଭୁଥିଲା ତାର ସ୍ୱଚ୍ଛ ଚୂଳେ ।

ଭ୍ରମଣ ପ୍ରଥମ କ୍ଷଣେ
ଭାବି ନ ଥିଲି ମୁଁ ମନେ
ହେବ ବୋଲି ଏତେ ଦୂର ଏ ବିଷମ ପଥ,

କ୍ରମେ ବଢ଼ିଯାଏ କାଳ
କ୍ରମେ ଘୁଞ୍ଚେ ଚକ୍ରବାଳ
ଶିଥିଳ ହେଁକରେ ଚଳେ ମୋର ମନୋରଥ ।

ଆଜି କେତେଦିନ ଅନ୍ତେ
ଏ ଦୁସ୍ତର ବାଲିବନ୍ତେ
ନ ଚଳ ରହିବ ପାଦ ସିନା ଥକା ମାରି
ନ ଦେଖିବ ଜନ ଆଖି,
ଘୋର ତନ୍ଦ୍ରାରେ ଏକାକୀ
ବୁଜିଯିବ ମନେ ପ୍ରାଣ ବୃଥା ଘାରି ଘାରି

ଗଲେ ପଛେ ଯାଉ ଜୀବ
ଯାହା ହେବ ଦେଖାଯିବ
ହେଲେ ହେଉ ଯେତେ ଦୂର ଏ ଦୁର୍ଗମ ପଥ,
କହ କେଉଁ ମୂଢ଼ ଜନ
କରି ଥରେ ବିଲୋକନ
ଏ ଅପୂର୍ବ ଦିବ୍ୟ ଦୃଶ୍ୟ ରହିବ ବିରତ ?

ଅବସନ୍ନ ହେଲ କାୟା
ଆଶ୍ରିତ ଏ ଗିରି ଗୁହା,
ବଳିଶେଷ ଶୋଭିବ[illegible] ଯାଇ ଅଟେ ବାଟ,

ତାରକିତ ଗିରି ଶୃଙ୍ଗେ
ନଚେଶି ନୟନ ଭୃଙ୍ଗେ
ଫେଡ଼ିବ ପରମ ସୁଖେ ହୃଦୟ-କବାଟ ।

ଗିରି-ଶିଖେ ଲକ୍ଷ ରଶ୍ମି ଝଲକ ମୁକର

ସୁଦୂର ସାଗର-ଗୀତ
ଶ୍ରବଣେ ସ୍ୱର୍ଗୀୟ ପ୍ରୀତ
ଲଭିଣ ମୋ ପ୍ରାଣ-ପକ୍ଷୀ ଉଡ଼ିଯିବ ଧୀରେ;

ଅନୁସରି ସେହି ଗାନ
କରି ମନେ ଏକଧ୍ୟାନ
ଅବଶେଷେ ବସିବ ସେ ଗିରି ଉଚ୍ଚ ଶିରେ ।

ଦେଖି ଚନ୍ଦ୍ର-ରଶ୍ମି ଅଙ୍ଗ
ଲଭିବାକୁ ତାର ସଙ୍ଗ
ଧାଇଁ ଧାଇଁ ପଥେ ଶଶା ଛୁଟିଲା ପବଣ;

କେତେ ଦୂରେ ନିଶାପତି
କାହିଁ ବା ଶଶକ ଗତି
ପାଇଲା ସେ ଅନ୍ତେ ପରା ସେହି ବକ୍ଷେ ସ୍ଥାନ !

ଶତ ଶଶୀ ବଳ ଶୋଭା
କି ବିଚିତ୍ର ମନୋଲୋଭା
କିପରି ଏହାର ଆଶା ଛାଡ଼ିବ ମୁଁ ନର,

ଗଲେ ପଛେ ଯାଉ ଜୀବ
ଯାହା ହେବ ଦେଖାଯିବ
ଗିରି-ଶିଖେ ଲକ୍ଷ ରଶ୍ମି ଝଲକ ମୁକୁର



# ନୀରବ

( ୧ )

ନୀରବେ ପ୍ରସରେ କ୍ଷଣେ ଦିବ୍ୟ ଜ୍ୟୋତି ଧାର,
ନୀରବେ ଆକାଶେ ଉଦେ ରବି-ଶଶୀ-ତାର,
ନୀରବେ ବଢ଼ଇ ତରୁଲତା ମହୀଧର,
ନୀରବ ନିଖିଳ ବିଶ୍ୱ ନିଗୂଢ଼ ମନ୍ତର ।

( ୨ )

ସଦା-କାଳ-ପାରାବାର-ଅନନ୍ତ ଗରଭେ
ମିଶଇ ସମୟ-ସ୍ରୋତ ସତତ ନୀରବେ,
ନୀରବେ ଜଗତ କରେ ନିଜ କକ୍ଷେ ଗତି,
ନୀରବ ନିହିତ ବିଶ୍ୱ ନିଗୂଢ଼ ଶକତି ।

( ୩ )

ନୀରବେ ପ୍ରେମିକ ନେତ୍ରେ ଅଶ୍ରୁ ଢଳ ଢଳ,
ନୀରବେ ସରସୀ-କକ୍ଷେ ହସେ ଶତଦଳ,
ନୀରବେ ନିରାଶହୃଦେ ବହେ ଦୀର୍ଘଶ୍ୱାସ,
ସୁଖେ ଦୁଃଖେ ପରାଣର ନୀରବ ଆଶ୍ୱାସ ।

( ୪ )

ତେବେ କାହା ଚଞ୍ଚଳ ବେଗେ ଚପଳ ଚିତ୍କାର,
କାହାଁ ମାନବ କରେ ଏତେ ଅସ୍ଥିର ?
ଶୁଣ ଅନ୍ତସ୍ଥ, ଶୁଣ ଆପଣା ଅନ୍ତର,
ଶୁଣି ଶିଖ ସାଧ ସଦା ନୀରବ ମନ୍ତର ।



# ନିତ୍ୟଧାମ ନୀଳାଚଳ

ନୀଳଚକ୍ର ତଳେ କେ କରିବ ବାସ
କେ ଦେଖିବ ନୀଳାଚଳେ ନିତ୍ୟରାସ;
ବୋଲି ହରି ହରି
କେ ପ୍ରେମ ଭିଖାରି
ଚରଣ-ଧୂଳିକେ ଟେକିବ ନିଶ୍ୱାସ ? । ୧

ସେଠି, ନାହିଁ ଯାର ନିଜ ପର ଜ୍ଞାନ,
ଚାଏ ମିଛ ଯାର ସ୍ନେହ ସନମାନ
ବିଶ୍ୱ ଭୁଲେ ଯା'ର
ଆହାର ବିହାର
କରେ ବିଶ୍ୱ ହିତେ ଯେ ଜୀବନ ଦାନ । ୨ ।

ସେଠି, କରେ ଯେଉଁ ସତ୍ୟ ଆଚରଣ,
ସତ୍ୟ ଆରାଧନା, ସତ୍ୟ ସମ୍ଭାଷଣ,
ଭିତର ବାହାର
ଯାର ସତ୍ୟ ସାର,
ସୁଖେ ଦୁଃଖେ ସଦା ସତ୍ୟ ଯା'ଶରଣ । ୩ ।

ନାହିଁ ଜାତି ଭେଦ, ନାହିଁ ଧର୍ମଭେଦ,
ସାମ୍ୟମୈତ୍ର୍ୟମନ୍ତ୍ର ଗାଏ ଯାର ବେଦ;
କେ କରିବ ଭବେ
ଦେବତା ମାନବେ,
ନୀଳାଚଳେ ତାର ପ୍ରବେଶ ନିଷେଧ ? । ୪ ।

# ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ

(ଜଣେ ଆଜୀବନ ସହକର୍ମୀଙ୍କ ପ୍ରତି)

କାହା'ଗେ ଗାଇବ ପରାଣ-ସଙ୍ଗୀତ
କା ପାଶେ ବାଇବ ଅନ୍ତର-ବୀଣା,
କା କାନେ କହିବ ମରମ ବେଦନା
ମନକଥା ମନେ ରହିଲା ହିନା !

ଜୀବନ ପ୍ରଭାତେ ଆପଣାର ବୋଲି
କରିଥିଲି ଯାକୁ ପରାଣ-ସଖା,
ସେ ତ ନ ଜାଣିଲା ମୋ ଅନ୍ତର ଗତି
ଦେଲା ମୋ ପରାଣେ ଦାରୁଣ ଧକ୍କା ।

ଯା ମୁଖ ଅନାଇ ଅନ୍ତିମ ସଙ୍କେତ
ଦେଇ ଲଭିଥାନ୍ତି ଶେଷ ସାନ୍ତ୍ୱନା,
ମୋ ନେତ୍ର-ଲୋତକେ ସତ୍ୟ ସରଳତା
ନ ଦେଖି ଦେଖେ ସେ ମିଛ ଛଳନା ।

ଯାର ଗଉରବେ ମୋ ଭାଗ୍ୟ ବିଭବ
ଯାର କୃତିରୁ ଏ ପ୍ରାଣ ଉଲ୍ଲାସେ,
ମୋର ଉପଯୋଗେ ସେ ଯେବେ କାତର
ଏ ଜୀବନ ଆଜ କି ସୁଖ ଆଶେ ?

ଜୀବନ [illegible] ଖାଲି ନିରାଶାର ବାଲି,
ମରୁ-ମରୀଚିକା ଯେସନେ ପ୍ରୀତି,
ତେବେ କି ଆଶାରେ କହ ଏ ସଂସାରେ
ପର ଲାଗି ନର ମରୁଛି ନିତି ?

ପ୍ରେମ ପଥ ସତେ          ସନ୍ତ ସୁଖ ପାଏ
  ପ୍ରେମ ନ ଜାଣଇ  କେବେ ଶୋଚନା,
ପ୍ରିୟଜନେ ନୂତନ          ପ୍ରେମିକ ସମ୍ମୁଖ
  ହେଲେ ହେଜ ଯେତେ ଗୁରୁ ଗଞ୍ଜନା ।

ମୋ ପ୍ରେମ କ ସତେ          କେବଳ ଛଳନା
  ନେଉଡ଼େ  ଅଳହିରେ  ଆପଣା ସୁଖ ?
କରୁଛି କ ମୂର୍ଖ          ଆତ୍ମ-ପ୍ରବଞ୍ଚନା
  ତେଣୁ ମୋ ମନେ ଏ ଦାରୁଣ ଦୁଃଖ ।

ଲଭୁଅଛି ଏବେ          ଆତ୍ମପରିଚୟ
  ଲଭୁଅଛି  ମୋର ହୃଦ  କାଳିମା,
କର ପ୍ରାଣସଖା          ତୀବ୍ର କଷାଘାତ
  ପରଖ  ଏ  ହୃଦ  ସଦନ  ସୀମା ।

ବିଷାକ୍ତ ନୟନେ ମୋ          ସରଳ ପ୍ରାଣେ
  ଦେଖ  ଯେବେ  ସଖା  କପଟ-ଜାଲ,
ଆଖି ପୋଛି ଦେଖ  ମୋ ହୃଦେ ତୋ ହୃଦ,
  ଆତ୍ମପରିଚୟେ  ନ  ଢଅ  ଗାଳ ।

ଗାଳ ଗଞ୍ଜନାକୁ          ନାହିଁ ମୋର ଛଳ
  ଭୁମ  ଅନୁତାପ  ଏକା  ଶୋଚନା,
ପାଅ ଯେବେ ସୁଖ          ସେ କଣ୍ଠ ବଚନେ
  ଦେବ ତା ମୋ  ହୃଦେ ମଧୁ ମୂର୍ଚ୍ଛନା ।

ଫୁଲ ପରି ପ୍ରେମ ଝାଉଁଳେ କି କେବେ
ପ୍ରେମ ଯେ ଅନନ୍ତ ଅକ୍ଷୟ ଧାବ୍ୟ,
ଦୂର କଲେ ମତେ ହେବ କି ଅନ୍ତର
ତୁମେ ଯେ ମୋ ପ୍ରାଣ-ପ୍ରଣୟ-କାବ୍ୟ ।

ଏ ଜୀବନେ ପ୍ରେମ ନୁହେ ଅବସାନ
ଅନ୍ୟ ସ୍ଥାନେ ପୁଣି ହେବ ତ ଦେଖା,
ଶୁଣ ନେହେ ଚନ୍ଦ୍ରି ଦେଖିବ ମୋ ହୃଦେ
ପ୍ରେମ ରସଣିତ ଅମୃତ ଲେଖା ।

ପ୍ରେମେ ଅବଗାହି ନିଜ ପରିଚୟ
ପାଇଅଛି ମୁଁ ଏ କ୍ଷୁଦ୍ର ଜୀବନେ,
ମୋ ହୃଦ-କଲ୍ଲୋଳ ଉନ୍ନୁଳେ ଉଲ୍ଲାସେ
ଜଳେ ସ୍ଥଳେ ଫଳେ ଫୁଲେ ଗଗନେ ।

ଶତ ଆବର୍ଜନା ସହସ୍ର ତାଡ଼ନା
କିବା ଶତ ସ୍ନିଗ୍ଧ ସୁମନ-ହାର,
ଏ ପ୍ରେମ-କଲ୍ଲୋଳେ ସମାନ ସକଳେ
ପରମ ସାଦର ସ୍ନେହ ସମ୍ଭାର ।

ନିଜକୁ ଭୁଲି ମୁଁ ପାଇଅଛି ସଖା
ନିଜ ପରିଚୟ ନିଜ ତୃପତି,
ଭବ କଣ୍ଟାଘାତେ ଜନମିଛି ମୋର
କଠୋର ପ୍ରହାର ସହା ଶକତି ।

ଗାଢ଼ ଆଲିଙ୍ଗନ ସୁଗୁରୁ ଚୁମ୍ବନ
ଅଶ୍ରୁଧାର ଯେଉଁ ପ୍ରେମ ବ୍ୟଞ୍ଜନା,
ଲୋଲିତ ଲୋଚନ ନିଷ୍ଠୁର ବଚନ
ଉତ୍କଣ୍ଠ କଷ୍ଟେଣ ଭାବ ଲାଞ୍ଛନା ।

ଏ ବେନି ଜୀବନ ହେଲା ଅନୁଭବ
ଅନେକ ଦିବସେ ଭ୍ରମ ସଙ୍କେତେ,
କେତେ ସୁଖ ଦୁଃଖ ସୁହାସ ଲୋତକ
ନିହିତଲା ଏହି ଅଙ୍ଗ ରୂପରେ ।

ତବ କୋପାନଳେ ଅପରାଧ ହୋଇ
ନିନ୍ଦିଲୁ ଦେ'ଗୁଣେ ଏ ମୋ ଚରଣ,
ବୁଝିଲି ଜଗତେ ଶେଷ ତୋଷ ନେଇ
ପ୍ରେମମଧୁକର ପ୍ରେମ ପ୍ରଦାନ ।

ତାଙ୍କ ପ୍ରେମ-ରହସ୍ୟ ନାହିଁ ଅସୁନ୍ଦର
ଅସତ୍ୟ ଅନ୍ୟାୟ ଅଶୁଭ ଭୟ,
ହେ ମୋର ଭାବନା ମୋ ପ୍ରାଣ-ପ୍ରବାହ
ଭେଟିଅଛି ଅଜ ସେ ପ୍ରେମସିନ୍ଧୁ ।



# କାହିଁ ଅଛ ?

କାହିଁ ଅଛ ନାଥ ଶରଣ ଦେବତା
ଦେଖାଦିଅ ମତେ ଥରେ ହେ,
ଭବ-ପାରାବାରେ କର୍ମ ପ୍ରହାରେ
ଏ ହୃଦୟ ମୋର ଥରେ ହେ ।

ତୁମେ ସବୁ ପ୍ରଭୁ ମୋ ଅନ୍ତରଯାମୀ
ଜାଣୁନାହିଁ ତ ଅନ୍ତରେ ହେ,
ଭକ୍ତିଥିଲେ ଲୁଚି ଦିଅ ବେଗେ ସୂଚି
ଦେଖାଦେବ କି ମନ୍ତ୍ରରେ ହେ ।

ସାର ବସ୍ତୁ ଭବ ପ୍ରକାଶିଛ ହରି !
ବେଦ ବଦେ ସଙ୍ଗୀତରେ ହେ,
ଲୁଚି ରେଖ କାହିଁ ଏବେ ଜାଣୁ ନାହିଁ
ବାହାରେ କବା ଭିତରେ ହେ ।

ହେ ଦିବ୍ୟ-ଅଞ୍ଜନ ପ୍ରଭୁ ନିରଞ୍ଜନ !
ଦିଅ ଏ ନେତ୍ରରେ ବାରେ ହେ,
ତବ ଜ୍ୟୋତିରେଖା ହେଉ ମଧ୍ୟେ ଦେଖା
ଆଜ ଅମା-ଅନ୍ଧକାରେ ହେ ।



# ଆହା ଚାଲିଗଲେ !

କି ମୋହନିଦ୍ରା ମୋତେ ଘୋଟିଥିଲା ।
କେଉଁ ଏ ପାପ ଆଖି ନ ଫିଟିଲା । • ।

ପାଖରେ ମୋର ବସି
ସ୍ୱର୍ଗ ମୋହନବଂଶୀ
ବଜାଇ କି ବେଗେ ସେ ସ୍ୱଳିଗଲା ।

ଡାକିଲି କେତେ ଥର
ହେବାକୁ ଉଜାଗର,
ପଦେ ହେଲେ ଉତ୍ତର ନ ଆସିଲା ।

ମୋ କକ୍ଷ ଅନ୍ଧକୂପ
ସେ ପ୍ରଦୀପସ୍ୱ ରୂପ
ଆଲୋକ କାହିଁ କ୍ଷଣେ ଲିଭିଗଲା ।

ନ ମେଳାଇ ନୟନ
ପଥେ ପଡ଼ିବା ଧନ
ଏ ଭାଗ୍ୟହୀନ ନେତ୍ର ନ ଦେଖିଲା ।



# ପିତୃପକ୍ଷ ତର୍ପଣ

ଆସିଅଛୁ ପିତୃପକ୍ଷ କରୁଛୁ ତର୍ପଣ
ମନ୍ତ୍ରପାଠ ତିଳୋଦକେ ଭରେଁ ସମର୍ପଣ ।

ପିତୃ ପିତାମହଗଣ ବୈଦିକ ବିଧାନେ,
ଦେବଗଣେ ଋଷିଗଣେ ପୂଜେ ଜଳଦାନେ ।

ଅଧିକ କହିବ କିବା ଏଥି କାରାବାସେ,
ଏ ଆଶ୍ୱାସ ସଙ୍ଗେ ମନେ ସଂଶୟ ମୋ ଆସେ ।

ମୁଁ ଯେ କାରାଗାରେ ବନ୍ଦୀ, ବନ୍ଦୀର ତର୍ପଣ
କରନ୍ତି କି ପିତୃଲୋକେ ସାଦରେ ଗ୍ରହଣ ?

ବନ୍ଦୀଶାଳେ ଦତ୍ତ ଜଳ ତିଳ ଉପହାର
କରନ୍ତି କି ପିତୃଲୋକେ ଆଦରେ ଆହାର

ବନ୍ଦୀ ଉଚ୍ଚାରିତ ସ୍ୱାହା ସ୍ୱଧା ବଷଟ୍‌କାର
ଢାଳଇ କି ପିତୃଲୋକେ ଶୁଦ୍ଧ ସୁଧାଧାର ?

ବନ୍ଦୀ ପର ଅପରାଧୀ କଳୁଷିତ ପ୍ରାଣ,
ପିତୃ ଦେବଗଣେ ଗ୍ରାହ୍ୟ କପରି ତା ଦାନ ?

ଅକାରଣ ତେବେ କି ମୋ ଉଦକ-ଅଞ୍ଜଳି,
ଏ ତିଳ ତଣ୍ଡୁଳ ମାତ୍ର କାକ-ଶ୍ୱାନ-ବଳି ?

କରୁଛି କି ପଣ୍ଡଶ୍ରମ ଊଷର କର୍ଷଣ,
ଭାରତୋର କଷ୍ଟସାଧ୍ୟ ବୃଥା ଆୟୋଜନ ?

ଏଭଣା ସଂଶୟେ ପ୍ରାଣ ବ୍ୟାକୁଳ ହଟେଷେ,
କେ ଏଥି ତୋଷିବ ମନ ଦେଇ ଉପଦେଶ ?

ମୁଁ କି ଦୋଷୀ ? ପଚାରିଲେ ଅନ୍ତରେ ଅନାଇଁ
ଅନ୍ତରୁ ଉତ୍ତର ଆସେ ନାହିଁ ନାହିଁ ନାହିଁ ।

ନୁହେ ନରହନ୍ତା କିବା ପରଧନହାରୀ,
ପରଶି ନାହିଁ ଏ ତନୁ କେବେ ପର ନାରୀ ।

ଜ୍ଞାତସାରେ ଦେଇନାହିଁ ପର ପ୍ରାଣେ ପୀଡ଼ା
ଅପରାଧେ ଅନ୍ୟ ପାଶେ ହୋଇନାହିଁ ଛିଡ଼ା ।

ହରି ନାହିଁ କେବେ ଶସ୍ୟ ବଳେ ପର କ୍ଷେତ୍ରୁଁ,
କାଟି ନାହିଁ ସାଧାରଣ ଜଳାଶୟ ସେତୁ ।

କରି ନାହିଁ ଶାନ୍ତିଭଙ୍ଗ କାହିଁ ଆୟୋଜନ,
ଦେଇ ନାହିଁ ଜାତି-ଧର୍ମ-ବିଦ୍ୱେଷ-ଭାଷଣ ।

କରି ନାହିଁ ପରନିନ୍ଦା ଈର୍ଷା ସହକାରେ,
ଅପରାଧେ କଳୁଷିତ ତେବେ କି ପ୍ରକାରେ ?

ହୁଅନ୍ତି ମତରେ ସେ ରାଜମାତ-ଅପରାଧୀ,
ରାଜାପ୍ରତି ମନେହେଲେ କେବେ ନାହିଁ ବାଧି

ରାଜା ପ୍ରଜାଙ୍କର ଶାନ୍ତି ଶୁଭ ଅଭିଳାଷେ,
ପ୍ରତ୍ୟହ ପ୍ରାର୍ଥନା ମୋର ବିଭୁପଦ ପାଶେ ।

କାହିଁ ରାଜଧର୍ମ ଆଜ ପବନ ପ୍ରଭାତେ,
ମରନ୍ତି ଯେ ଦେଶେ ପ୍ରଜା ଦୁର୍ଭିକ୍ଷ ଆଘାତେ ?

ସୀତା ଦମୟନ୍ତୀ ଯେଉଁ ଦେଶେ ଜାତ କୁଳାଙ୍ଗନା,
ଲଭନ୍ତି ଯେ ଦେଶେ ଆଜ ଘୋର ଲାଞ୍ଛନା ।

ପ୍ରଜା ଲାଗି ସବୁ ତ୍ୟାଗ ସହିଁ ରାଜମାତ,
ମହାରାଜା ରାମଚନ୍ଦ୍ର ଲେଡ଼ ପ୍ରଜାପ୍ରୀତି ।

ଠେଲିଥିଲେ ପ୍ରାଣପ୍ରିୟା ସୀତା ବନବାସେ,
ଏକ୍ଷକ ସେ ଦେଶ ଯହିଁ ପ୍ରଜାସ୍ୱତ୍ୱ ଅଂଶେ,

ଜ୍ୟେଷ୍ଠ ସୁତ ଅସମଞ୍ଜ ସଗର ରାଜନ
ଅକାତରେ କରିଥିଲେ ଦେଶୁଁ ବିସର୍ଜନ ?

ରାଜପଦ ଅର୍ଥ ଯହିଁ ପରଜା-ରଞ୍ଜନ,
ସେହି ପ୍ରଜା ତହିଁ ଏବେ କି ଗୁରୁଗଞ୍ଜନ ?

ରାଜଧର୍ମ କ୍ଷାତ୍ରଧର୍ମ କ୍ଷତୁଁ କରେ ତ୍ରାଣ,
ରାଜମାନ୍ତ ଶ୍ରେଷ୍ଠେ ଯେବେ କ୍ଷତ ପ୍ରଜାଗଣ ।

ଘୋର ଅପଚାର ଯେବେ ରାଜମାନ୍ତ ନାମେ,
ସତ୍ୟ ରାଜମାନ୍ତ କାହିଁ ଏ ଭାରତ ଧାମେ ?

ପ୍ରଜା ଲାଗି ରାଜା, ପ୍ରଜା ହିତେ ରାଜମାନ୍ତ,
ପ୍ରଜା ଇଚ୍ଛା ଅଭିମତ ରାଜ୍ୟ ମୂଳଭିତ୍ତି ।

ସାର୍ବଭୌମ ଜନାଗନ ଏ ଶାସନ ବିଧି,
ଲଭିଛି ସର୍ବତ୍ର ଆଜ ବିଶେଷ ପ୍ରସିଦ୍ଧି ।

ଭାରତ ଶାସନେ ଜନ୍ମୁ ବ୍ୟବସ୍ଥା ସ୍ୱତନ୍ତ୍ର
ଏ ରାଜେ ଅମାତ୍ୟସଂସ୍ଥା ରାଜମନ୍ତ ଯନ୍ତ୍ର ।

କାହିଁ ଏଥି ରାଜା ? ଏ ଯେ ନୌକର ସାନ୍ତ୍ୱ,
ପ୍ରଜା ସୁଖ ଶାନ୍ତି ନାମେ ବୃଥାଧର୍ମଦ୍ୱାନ୍ତ ।

ପ୍ରଜାସ୍ୱତ୍ୱ ପ୍ରଜାମତ ଛଳନା କେବଳ,
ପ୍ରେଷ୍ୟ ଗୋଷ୍ଠୀ ଇଚ୍ଛାଧୀନ ଏ ଶାସନକଳ ।

ସ୍ୱାଧୀନତା ମାନବର ଜନ୍ମ ଅଧିକାର
ସ୍ୱାଧୀନ ଭାଷଣ ଆଜ ସ୍ୱାଧୀନ ବିହାର,

## ପିତୃପକ୍ଷ ତର୍ପଣ

ସ୍ୱାଧୀନ ଜୀବନ ସୃଷ୍ଟି ସ୍ୱାଧୀନ ସମିତ,
ସ୍ତର ସ୍ତମ୍ଭେ ମାନବର ସମାଜ ସଂସ୍ଥିତ ।

ଭାରତେ ଅମାତ୍ୟସଂସ୍ଥା ରାଜନୀତି ଆଜ
ଉପାଡ଼ି ଏ ସ୍ତର ସ୍ତମ୍ଭ ଭାଙ୍ଗିଛି ସମାଜ

ଦେବଭୂମି କର୍ମଭୂମି ଧର୍ମଭୂମି ସାର
ଭାରତରେ ନାହିଁ ନର ଜନ୍ମ ଅଧିକାର ।

ଆର୍ଯ୍ୟଋଷି ପ୍ରତିଷ୍ଠିତ ଦେଶ ଭାରତ
ନିସ୍ତେଜ ନିସ୍ତବ୍ଧ ଆଜ ପରପଦାନତ ।

ଦେଖି ଏ ଦୁର୍ଗତି ମୋର ପିତୃ ପିତାମହ
ଅନ୍ତରୀକ୍ଷେ ଦେବଗଣ ଋଷିଗଣ ସହ

ବିକଳେ କାନ୍ଦନ୍ତି, ମୋର ହୃଦେ ଏ ପ୍ରଶ୍ନ,
ମାନବ କିପରି ହେବେ ଏ ଶାସନନୀତି ?

ରାଜନୀତି ଉଲ୍ଲଙ୍ଘନେ ନାହିଁ ମୋର ଦୋଷ
ଏଥି ମୋର ପିତୃଗଣ ଲଭନ୍ତୁ ସନ୍ତୋଷ ।

ନୁହେ ଯେଉଁ ନୀତି ପ୍ରଜାମତ ଅନୁକୂଳ
ଯାର ନିଷ୍ପେଷଣେ ପ୍ରଜା ବିବ୍ରତ ବ୍ୟାକୁଳ,

ଯାର ବ୍ୟୂହେ ଏକ ଦେଶେ ଅନ୍ୟ ଅଧିଗତ,
ଏକ ଜାତି ଅନ୍ୟ ଜାତି ଶିର ପଦାନତ,

ଯାର ତଳେ ତ୍ରିଂଶ କୋଟି ଭାରତ ସନ୍ତାନ
ନିଜ ବାସେ ପରବାସୀ ନିଜ ଦେଶେ ଶ୍ୱାନ,

ଯାର ଫଳେ ଉପବାସୀ ମୋର ଦେଶବାସୀ
ଭାରତ ଜନନୀ ମୋର ପରଦ୍ୱାରେ ଦାସୀ,

ବୁଦ୍ଧ ସେ ଗୀତ ମୋ ପିତୃ ଦେବର୍ଷିସମ୍ମତ,
ବୁଝିଁ ତାହା ଆର୍ଯ୍ୟଧର୍ମ ନ୍ୟାସ୍ତ ସୁସଙ୍ଗତ ।

ଅପରାଧ ବୁଦ୍ଧ ନଶ୍ତେ ସେ ଗୀତ ଲଙ୍ଘନ,
ଭାରତର ଧର୍ମ ଯାର ଉଚ୍ଛେଦ ସାଧନ ।

ଆସ ବଣ୍ଣୁଦେବା, ଆସ ମହର୍ଷିନିବହ
ଆସ କୁରୁକୁଳ ବୃଦ୍ଧ ଶ୍ରେଷ୍ଠ ପିତାମହ !

ଆସ ବର୍ହିଷଦ ଆଦ ସର୍ବ ପିତୃଗଣ,
ଆସ ସର୍ବ ବସୁ ଯମ ଅନଳ ପବନ;

ଆସ ବନସ୍ପତି ଗିରି ସରିତ ସାଗର,
ଖେଚର ଭୂଚର ଯକ୍ଷ ପିଶାଚ କିନ୍ନର,

ଅଖିଳ ବ୍ରହ୍ମାଣ୍ଡବାସୀ ସର୍ବ ଚରାଚର,
ଦେବତା ଅସୁର ନାଗ ରକ୍ଷ ସିଦ୍ଧନର

ଆସ ମୋର ପିତୃ ମାତୃ ମାତାମହଗଣ,
ଘେନ ସର୍ବେ ଏଥି ମୋର ଭକ୍ତି ଆବାହନ ।

ଘେନ ମୋର ଜଳାଞ୍ଜଳି ଘେନ ନମସ୍କାର,
ଦିବ୍ୟ ଅବଧାନେ ସର୍ବେ କର ହେ ବିଗ୍ଭର ।

ନ୍ୟାସ୍ତର ମର୍ମ ଭୁଲେ ଭୁଲ କହ ପେଣ୍ଡ୍,
ଯେ କାରଣେ ଲଗିଛି ମୋ ହାତେ ଲୁହାବେଣ୍ଡ଼

ଯେ ବ୍ୟାପାରେ ଭୋଗେ ମୁହିଁ ଆଜ କାରାଗାର
କହ ତହିଁ ଅପରାଧ ଯଥାର୍ଥ କାହାର ?

ମୁଁ କ ଏକା ଶତ ଶତ ଭାରତ ସନ୍ତାନ,
ହେଉଛନ୍ତି ଅକାତରେ କାରା ଅପମାନ ।

ପିତୃପକ୍ଷ ତର୍ପଣ

ତଥାପି ଅଦ୍ୟାପି କେତେ ଦାରୁଣ ଯାତନା
ତେଜି ଜୀବନର ସୁଖ ସମ୍ଭୋଗ ବାସନା ।

ଶୋଣିତ-ପିପାସୁ ଘୋର ପାଶବ ସଭ୍ୟତା
ନାଶିବାକୁ ପ୍ରକୃତରେ ଯେ ଅହିଂସା ବାରତା;

ଜଗତବାସୀଙ୍କୁ ଦେଇ ଶାନ୍ତି ସୁଧା ପଥ
ଦେଖାଇବା ଜୀବନରେ ଯାର ମୁଖ୍ୟବ୍ରତ,

ଶମ ଦମ ସତ୍ୟ ଶୁଦ୍ଧ ତ୍ୟାଗପୂତ ପ୍ରାଣ
ମାନବ-ଗୌରବ ଗାନ୍ଧି ଭାରତ-ସନ୍ତାନ,

ସ୍ୱର୍ଦ୍ଦେଶ ଲାଗି ଏବେ ବନ୍ଦୀ କାରାଗାରେ, !
କାହା ଦୋଷ ଏଥି ? କହ ଉଚିତ ଉତ୍ତରେ ।

ରାଜଭକ୍ତ ଭାରତରେ ଚିର ଶାସ୍ତ୍ରବିଧି,
ନୃପତି ଭାରତ-ନେତ ଦେବ-ପ୍ରତିନିଧି

ଲୁଟିଛି ଭାରତେ ଯେବେ ଆଜ ଏ ବିଶ୍ୱାସ,
କୋଟି କୋଟି ପ୍ରାଣେ ଘୋର ନିରାଶା ନିଶ୍ୱାସ,

କାହାର ଏ ଅପରାଧ ? କେ ଏଥିର ହେତୁ !
ଭାଙ୍ଗିଛି କେ ଶାସନର ସନାତନ ସେତୁ ?

ଯେ ଅମାତ୍ୟ-ସଂସ୍ଥା ମାତ ଅନର୍ଥର ମୂଳ,
ଯାହାର ପ୍ରଭାବେ ପ୍ରଜା ବ୍ୟଥିତ ବ୍ୟାକୁଳ,

ରକ୍ତ-ମାଂସ ଦେହ ଧରି ଆଜ କେତେ ଜନ,
ଭାରତେ ରହିବ ନର ସେ ମାତ ଅଧୀନ ?

ଯେ ବିଧାନେ ସର୍ବେସର୍ବା ରାଜପ୍ରେଷ୍ୟଗଣ,
ପ୍ରଜାକୁଳ ସହେ ଯହିଁ ନିତ୍ୟ ନିଷ୍ପେଷଣ ।

ଶାସନ ବୋଇଲେ ଯହିଁ କେବଳ ପ୍ରଜାଙ୍କ
ପାଳନର ଅର୍ଥେ ପ୍ରଜା ବୁଝେ କରଙ୍କର,

ସମ୍ପଦ ଶେଠତା ଯହିଁ ପାଏ ସମ୍ବର୍ଦ୍ଧନା,
ଦରିଦ୍ର ନିସ୍ୱତ୍ୱ ପ୍ରଜା ଭୋଗେ ନିର୍ଯ୍ୟାତନା,

ମାନବ-କର୍ତ୍ତବ୍ୟ ଜ୍ଞାନ ଥିବ ଯାର ଲେଶ
ଅନୁଭବେ ଅନ୍ତରେ ଯେ 'ମୋ ଜାତି ମୋ ଦେଶ'

ଅହିଂସାର ଶାନ୍ତି-ପଥେ ଏଥି ପ୍ରତିବାଦ
କରେ ଯେବେ ହେବ ତାର କିବା ଅପରାଧ ?

ଏହି ଅପରାଧେ ଗାନ୍ଧି ଏବେ କାରାଗାରେ,
ଏହି ଅପରାଧେ ଦଣ୍ଡ ଘଟିଛି ମୋଠାରେ ।

ଭୋଗୁଛନ୍ତି ଦଣ୍ଡ କେତେ ଗୃହସ୍ଥ ସନ୍ନ୍ୟାସୀ
ଏଥି କାହା ଦୋଷ କହ ତ୍ରିଲୋକ-ନିବାସୀ ?

ପ୍ରେଷ୍ୟପ୍ରତିଷ୍ଠିତ ହେଲେ ଶାସନପଦ୍ଧତି,
ଲଭେ ପ୍ରଜାକୁଳ ନାନା ବିଷମ ଦୁର୍ଗତି,

ପ୍ରଜାସାଧାରଣ ମତ ଯେବେ ଉପେକ୍ଷିତ
ଅଶାନ୍ତି ଅନଳ ହୁଏ ହୃଦୟେ ସଞ୍ଚିତ,

ଦମନ-ପବନେ ଥରେ ଜଳିଲେ ପାବକ
ମାନେ ନାହିଁ ବେଢ଼ି ଶୂଳ କୃପାଣ ସାୟକ ।

ଉଠେ ସେ ଦାବାଗ୍ନି ସମେ ମହାରୁଦ୍ରବେଶେ,
ଭୀଷଣ ବିପ୍ଳବ ବାତ୍ୟା ବହେ ସାରା ଦେଶେ ।

ବରଷେ ଶୋଣିତଧାର ଭାସେ ରସାତଳ,
ଅବଶେଷେ ପ୍ରଜା ପଦେ ନମେ ରାଜବଳ ।

[

ମାନବ-ଜଗତେ ଏକ୍ସ ଗଳ୍ପ ପୁରାତନ,
ଦୁଏ ଇତିହାସ ଯାର ଶତ ନିଦର୍ଶନ ।

ନ ଉଠ୍ ଏ ଭାରତେ ସେ ହିଂସାନଳ ଶିଖା,
ନ ଆସୁ ଲୋକାନ୍ତ ହତ୍ୟା ଶାନ୍ତି-ବିଶ୍ଳେଷିକା ।

ଅହିଂସାର ଆଦ୍ୟ ସ୍ଥାନ ଏ ଋଷି ଆଶ୍ରମ,
ଶିଖାଇ ଜଗତେ ପୁଣି ଅହିଂସା ନିୟମ ।

ଏଥିଲାଗି ଗାନ୍ଧି କଲେ ଅହିଂସା ପ୍ରଚାର,
ଚଉଦିଗେ ବ୍ୟାପିଲା ସେ ଶୁଭ ସମାଚାର ।

ଅହିଂସାର ମହାମନ୍ତ୍ରେ କୋଟି ନରନାରୀ
ଜାଗିଲେ ଭାରତେ ବୃଦ୍ଧ ତ୍ୟାଗୀ ବ୍ରହ୍ମଚାରୀ ।

ପୁରପଲ୍ଲୀ ଗିରି ବନେ ଉଠେ ଶାନ୍ତି ତାନ,
ନବ ଆଶା ନବୋତ୍ସାହେ ଜାଗେ କୋଟି ପ୍ରାଣ

ଅହିଂସା ବ୍ରହ୍ମାସ୍ତ୍ରେ ଶିବ ଶ୍ରେଷ୍ୟବଳ ନାଶ,
ମିଳିବ ସ୍ୱରାଜ୍ୟ—ଦୃଢ଼ ହେଲା ଏ ବିଶ୍ୱାସ ।

ଗାନ୍ଧିଙ୍କର ହେଲା ଏହା ମହା ଅପରାଧ,
ଗଣିଲେ ଅମାତ୍ୟଗଣ ଶାସନ-ପ୍ରମାଦ ।

ଯାନ ବଡ଼ ଆଜ ଯେତେ ଶାନ୍ତି-ସେନାଗଣ,
ଉଡ଼ାଇଲେ ଗ୍ରାମେ ନଗ୍ରେ ଅହିଂସା-କେତନ

ଶିଖାଇଲେ ବୁଝାଇଲେ ଲୋକେ ଆତ୍ମବଳ,
ଶ୍ରେଷ୍ୟଗଣ ନେଇ ହେଲେ ସେ ସକଳେ ଜେଲ ।

ସେହ୍ନି ଖଳ ବୋଲି ମୋର ଏବେ କାରାବାସ,
ଏଥିରେ ମୋର କି ଦୋଷ ? କର ହେ ପ୍ରକାଶ

ହେ ଦ୍ୟୁଲୋକବାସୀ ଦେବ ପିତୃଋଷିଗଣ,
ସର୍ବଭୂତ ଚରାଚର, ଘେନ ମୋ ତର୍ପଣ ।

ଅପରାଧେ କଳୁଷିତ ଯେବେ ମୋ ଅନ୍ତର,
ସଦୟେ ସ୍ମରିଣ କର, ମୁଁ ଅତି କାତର ।

ନାହିଁ ଯେବେ ଦୋଷ ମୋର ବନ୍ଧୁ ତେବେ ତୃପ୍ତି,
ଏ ତର୍ପଣ କାଳେ ମୋତେ ଦିଅ ଦିବ୍ୟ ଦୃଷ୍ଟି ।

ଛୁଟୁ ମୋ ମାନବ-ମୋହ, ଘୁଞ୍ଚୁ ମୋ ସଂଶୟ
ତବ ପୁଣ୍ୟ ଦିବ୍ୟାଲୋକେ ଆଲୋକୁ ହୃଦୟ ।

ଏଣୁ ଯେ ଦେଖଇ ମୁଁ ସର୍ବେ ଅନ୍ତରୀକ୍ଷେ ଠୁଳ,
ଦିଶନ୍ତି ଉଦ୍‌ବିଗ୍ନ ବ୍ୟସ୍ତ ବ୍ୟଥିତ ବ୍ୟାକୁଳ ।

ଆସ ନାହିଁ କିପାଁ ଏଥି ଆବାହନ ସ୍ଥାନେ,
ଘଟିଛି କି ବ୍ୟତିକ୍ରମ ତର୍ପଣ ବିଧାନେ ?

କାରାଗାରେ କରିବ ମୁଁ କିବା ଆୟୋଜନ ?
ଆନ୍ତରିକ ଶ୍ରଦ୍ଧା ମୋର କର ହେ ଗ୍ରହଣ ।

ପର ଭୂମେ ପିତୃକାର୍ଯ୍ୟ ନୁହେ ସୁବିହିତ,
ଓହ୍ଲାଇବା ପାଇଁ ତେଣୁ ହୁଅ କି ଶଙ୍କିତ ?

ଦେଖି ନିଜ ବଂଶେ ଜାତ ଭାରତ-ନିବାସୀ,
ନିଜ ଦେଶେ ପରଦେଶୀ ସ୍ୱଗୃହେ ପ୍ରବାସୀ ।

ହେ ଭାରତପୂଜ୍ୟ ପୂର୍ବ ପିତୃ-ପିତାମହ,
ଦେଖେଁ ତବ ନେତ୍ରୁ ଅଶ୍ରୁ ବହେ ଅହରହ ।

ଚରଣ-ଅଯୋଗ୍ୟ ଜନ ପାଶୁଁ ରହି ଦୂରେ,
ବୃଦ୍ଧଦେହୀ ନଏ କିନ୍ତୁ ଯେସନ ଆତୁରେ,

ବଡ଼ାଇ ଅନିଚ୍ଛା ପଦ କର ସଙ୍କୁଚିତେ,
ଦେଖୁଛ ମୋ ତିଳୋଦକ ନେଇଛ କୁଣ୍ଠିତେ ।

ଅସ୍ପୃଶ୍ୟ ମୁଁ ପରାଧୀନ ଏ ଦୁଃଖ ଭାବନା
ଦିଏ ହୃଦେ ଅନୁକ୍ଷଣ ଅସହ୍ୟ ବେଦନା ।

ତବ ତଡ଼ା ଦେବାକପ୍ୟେ ନୁହେଁ ଅଧିକାରୀ;
ତବ ପ୍ରତିଷ୍ଠିତ ରାଜ୍ୟେ ମୁଁ ହୀନ ଭିକାରୀ ।

ତବ ମରି ତନୁ ଯହିଁ ମିଶିଛି ମାଟିରେ,
ପଡ଼ିଅଛି ଅସ୍ଥି ତବ ଯେଉଁ ନଦୀମାରେ ।

ସେ ପୁଣ୍ୟ ଶ୍ମଶାନ ନୁହେ ମୋର ଅଧିକାରେ,
ଅମାବୃତ ସ୍ନାନ ମୁହିଁ ଭାଗୀରଥି ଧାରେ !

ଜାତି ଧର୍ମ ନିର୍ବିଶେଷେ ଭାରତ ତନୟ,
ହେଭନ୍ତି ସରବେ ଏହି ଦଶା ବିପର୍ଯ୍ୟୟ ।

ପିତୃପ୍ରତିଷ୍ଠିତ ରାଜ୍ୟେ ଯେହୁ ପରାଧୀନ,
ଜଗତେ ତା ତହୁଁ ବଳ ନାହିଁ କେହି ହୀନ ।

ପିତୃରାଜ୍ୟେ ନାହିଁ ଯାର ପୂର୍ଣ୍ଣ ଅଧିକାର,
ସେ ଅଧମ ସୁତ ଶିରେ ସହସ୍ର ଧିକ୍କାର ।

ସର୍ବସ୍ୱାନ୍ତ ପରାଧୀନ ହୋଇ ପିତୃଗଣ
ଅକିଞ୍ଚନ ଭବେ ଯେବେ ତେଜନ୍ତି ଜୀବନ ।

ସେହି ଏକା ସୁସନ୍ତାନ କୁଳର ଗୌରବ,
ଆଣେ ଯେ ଫେରାଇ ପୁଣି ଅତୀତ ବିଭବ,

ସେ ଏକା ଦାୟାଦ ନାମ କରଇ ସାର୍ଥକ,
ଯା ଯୋଗେ ତରନ୍ତି ପିତୃ ଦାସତ୍ୱ ନରକ ।

ଜନନୀ ଜନ୍ମଭୂମି ସ୍ୱର୍ଗୁଁ ଗରୀୟସୀ,
ଗାଇଲେ ଯେ ପୁଣ୍ୟଶ୍ଳୋକ ସୁକଣ୍ଠ ମହର୍ଷି ।

ନ ବୁଝେ ମହତ୍ତ୍ୱ ତାର ତବ ଭୁଲେ ଭବ,
ନ କରେ ସେ ଦେଶ ପ୍ରେମ ପ୍ରାଣେ ଅନୁଭବ ।

ସେଥିଲାଗି ମନେ ପର କରୁଛ ଶୋଚନା,
ଦେଖି ଏ ପବିତ୍ରଭୂମି ଦୁଃସହ ଲାଞ୍ଛନା ।

ଶରଣ୍ୟ ବରେଣ୍ୟ ଦେବଋଷି ପିତୃଗଣେ,
ତର୍ପଣ କରେ ଯେ କାରା ଆବଦ୍ଧ ପ୍ରାଙ୍ଗଣେ ।

କଲ୍ପନାର ଦୃଶ୍ୟ ନେତ୍ରେ ଦେଖେଁ ଯେ ଆକାଶେ,
ତବ ଶୋକାକୁଳ ଛବି ସୁସ୍ପଷ୍ଟ ପ୍ରକାଶେ ।

କି ଦୁଃଖ ଆବେଗେ ମୋର ବିଦୀର୍ଣ୍ଣ ହୃଦୟ,
ମୁଁ କି ସେ ସ୍ୱାଧୀନ ଆର୍ଯ୍ୟ ମହର୍ଷି ତନୟ;

ଯାହାର ସ୍ୱାଧୀନ ଚିନ୍ତା ଦିଗ ଦିଗନ୍ତରେ
ବିସ୍ତାରିଲା ଜ୍ଞାନାଲୋକ ଧରଣୀ ପୃଷ୍ଠରେ ?

ଗଙ୍ଗା ଗୋଦାବରୀ ଆଦି ପବିତ୍ର ସରିତେ,
ଏ କାରା କନ୍ଦରେ ଆଣି କଳ୍ପେ ମୁଁ ଯେ ଚିତ୍ତେ ।

ଅଛି କି ସେ ନଦୀ ନଦେ ସ୍ୱର୍ଗୀୟ କରଣି,
ଅଛି କି ସେଥିରେ ମୋର ସ୍ୱଚ୍ଛନ୍ଦ ସରଣି ?

ବିଶ୍ୱବାସୀ ତବତରେ କରି ଆମନ୍ତ୍ରଣ,
ମୁଁ ଯେ ଏଥି କରେ ଜଳ ଅଞ୍ଜଳି ଅର୍ପଣ ।

ସେ ସାରା ବିଶ୍ୱରେ ମୋତେ ଅଛି କାହିଁ ସ୍ଥାନ ?
ସର୍ବସ୍ୱ ମୋ ଭାଗ୍ୟ ଦ୍ୱାର ପୀଡ଼ା ଅପମାନ ।

## ପିତୃପକ୍ଷ ତର୍ପଣ

ଏ ଦାରୁଣ ଚିନ୍ତାଗ୍ନି ଦଏ ଯେ ଯନ୍ତ୍ରଣା;
ତାହା କହେ ସ୍ୱର୍ଗବାସୀ ତୁମ୍ଭଙ୍କୁ ଅଜଣା ?

ଜାଣୁଅଛ ଯେତେକ ମୋର ଅନ୍ତର କଷଣ,
ଅନୁଗ୍ରହେ କର ତବ ଆଶିଷ ବର୍ଷଣ ।

ତୁମ୍ଭର ସୁକୃତବଳେ ଏତେକାଳ ଆଜ,
ଭାରତ-ସନ୍ତାନ ହୃଦେ ଅଙ୍କୁରେ ସ୍ୱରାଜ୍ୟ ।

ଆସୁ ସ୍ୱର୍ଗରାଜ୍ୟୁଁ ତବ ପବିତ୍ର ପ୍ରେରଣା,
ଝରୁ ଶୁଭ ଆଶୀର୍ବାଦ ଅମୃତ ଝରଣା,
ପଡ଼ୁ ଏ ଭାରତ-ପ୍ରାଣେ ସ୍ୱର୍ଗୀୟ କିରଣ
ନନ୍ଦନକାନନୁ ବହୁ ସ୍ନିଗ୍ଧ ସମୀରଣ;

ସ୍ୱରାଜ୍ୟ ଅଙ୍କୁର କ୍ରମେ ହେଉ କଳ୍ପତରୁ,
ଭାରତ ଅଖଣ୍ଡ ଶାଖା ଫୁଲ ଫଳ ଧରୁ;
ଭାରତ-ପ୍ରଭାବେ ହେଉ ସାର୍ଥ ଋଷିବାଣୀ
ମଧୁମୟ ଭାବେ ମଜ୍ଜି ହେଉ ବିଶ୍ୱପ୍ରାଣୀ ।
ସର୍ବ ସିନ୍ଧୁ ସ୍ରୋତେ କ୍ଷରୁ ମଧୁମୟ ନୀର
ବହୁ ମଧୁମୟ ଗନ୍ଧ ଶୀତଳ ସମୀର ।

ମଧୁମୟ ରସେ ପୁଷ୍ଟ ହେଉ ବନସ୍ପତି,
ମଧୁମୟ ରମ୍ୟେ ଶୋଭୁ ସର୍ବ ବସୁମତୀ ।

ହେଉ ମଧୁମୟ ଉଷା ପ୍ରଦୋଷ ରଜନୀ,
ନଭୋଦେଶେ ମଧୁମୟ ରବି ଦିନମଣି ।

ମଧୁମୟ ଚିତ୍ତେ ହେଉ ବିଶ୍ୱ ଶନାଦ୍ଧତ,
ଉଠୁ ବିଶ୍ୱପ୍ରାଣେ ମଧୁ ଅମୃତ-ସଙ୍ଗୀତ ।



# ବନ୍ଦୀର ବିରହ ବ୍ୟଥା

ମଧୁର ବସନ୍ତ ସମସ୍ତ ଦିନ ହେଲାଣି ଶେଷ,
ଛାଡ଼ି ପୂର୍ବ ଏବେ ତପନ ଯିବେ ପଶ୍ଚିମଦେଶ ।

ବିଦାୟର ତେଣୁ ଲାଗିଛି ଆୟୋଜନ ବିସ୍ତର,
ନାନାରଙ୍ଗ ଚନ୍ଦ୍ରାତପେ ଆଚ୍ଛାଦିତ ଅମ୍ବର ।

ଦଳେ ଦଳେ ପକ୍ଷୀ ଗାଅନ୍ତି ଉଚ୍ଚେ କରୁଣ ଗାନ,
ତରୁ ଶିର ଛୁମ୍ବି ବିସ୍ତାରି ପାଦେ କରେ ପ୍ରଣାମ ।

ତାଙ୍କ ଶିରେ ସୂର୍ଯ୍ୟ ଦିଅନ୍ତି ହେମକିରଣୀ ପାଟ,
ଅନୁରକ୍ତ ଭୃତ୍ୟ ମସ୍ତକେ ଯଥା ବାନ୍ଧେ ସମ୍ରାଟ ।

ଅସ୍ତାଚଳ ଉଚ୍ଚ ଆସନେ ବସି ହସନ୍ତି ରବି,
ପ୍ରାଚୀ ଅନୁରାଗେ ରଞ୍ଜିତ ଗୂଢ଼ ବଦନ ଛବି ।

ପ୍ରାଚୀ ଅଭିମୁଖେ ଲମ୍ବାଇ ସ୍ନିଗ୍ଧ କନକ କର,
କୋମଳ ଆଶ୍ୱାସେ ଦେଖାନ୍ତି ନିଜ ସ୍ନେହ ଆଦର ।

ସମୀରଣ ମୃଦୁ ମର୍ମରେ ପ୍ରେମ ଅସ୍ପଷ୍ଟଗିର,
କହନ୍ତି "ଅଚିରେ ଫେରିବ ଧନ ! ନୁହ କାତର ।"

ଅନୁରାଗ ରଙ୍ଗ ପ୍ରକାଶେ କ୍ଷଣେ ପ୍ରାଚୀ-କପୋଳେ,
ତା ମଧ୍ୟରେ କିନ୍ତୁ ବିରହ-ଦୁଃଖ-କାଳିମା ଦୋଳେ ।

ରବି ଲାସ୍ୟହାସ୍ୟେ ପ୍ରକଟେ ଗୂଢ଼ ବିଷାଦରେଖା,
ଅନୁଭବୀ ନେତ୍ରେ କେବଳ ସିନା ଯାଏ ସେ ଦେଖା ।

ଆହା, ପ୍ରିୟଜନ ବିରହ କି ଦାରୁଣ କଷଣ ?
ପ୍ରୀତିପାଶେ ବନ୍ଧା ଜଗତେ ସର୍ବ ଜଡ଼ ଚେତନ ।

# ବନ୍ଦୀର ଶରତ ବ୍ୟଥା

ଏ ଶରତ ଦୃଶ୍ୟ ଦିଅଇ ବନ୍ଦୀ ପରାଣେ ବ୍ୟଥା,
ପଲକେ ପଲକେ ପଡ଼ଇ ମନେ କେତେ ନ କଥା ।

ସମ୍ଭାଳ ଟିକଏ ସିପାହି ଶବ୍ଦ ନ ଦିଅ ଦ୍ୱାରେ,
ପ୍ରଣୟୀ ପ୍ରଜ୍ୱଳ ଦେଖିବ କ୍ଷଣେ ରକ୍ତ ବାହାରେ ।

ପ୍ରଣୟ-ପୀୟୂଷେ ମିଶିଛି କିପାଁ ବିରହ-ବିଷ
ବିଶ୍ୱବାସୀ ଭୁଞ୍ଜେ ଦିବସ ଏ କି ବିଧି ଆଶିଷ ?

ସୁନ୍ଦର ସରୋଜ ଚରଣେ କିପାଁ ଜଡ଼ିତ ଅସ୍ତ୍ର,
ବିପରୀତ ସୃଷ୍ଟି ରହସ୍ୟ କିଏ ପାରିବ କହି ?

ପ୍ରିୟଜନ ଛାଡ଼ି ପ୍ରିୟସ୍ଥାନ ମୁଁ ରୁଦ୍ଧ ବନ୍ଦୀ ଏଠାରେ,
ବିରହ-ବିଷମ ବକ୍ଷେ ମୋ ମନ ପରାଣ ଯାରେ ।

ବିଶ୍ୱ ପ୍ରକୃତିରେ ଦେଖିବେ ସମ ହୃଦ-ବେଦନା,
ଛାପିତ ଅନ୍ତରେ ଆସିବ ଅବା କ୍ଷଣେ ସାନ୍ତ୍ୱନା ।

ରହ ଆଉ ଦଣ୍ଡେ ସିପାହି କିପାଁ କର ଜଞ୍ଜାଳ ?
କକ୍ଷେ ଅବରୋଧ ସମସ୍ତ ପରା ଗୋଧୂଳିକାଳ !

ଦେଖ ରଙ୍ଗ ରଙ୍ଗ ହୁଅଇ ଲଭ ଏବେ ଗଗନେ,
ଆଉ ଟିକଏ ମୁଁ ବୁଲିବି ଏଥି କାରା-ପ୍ରାଙ୍ଗଣେ ।

ଯମଦୂତ ହୃଦେ କରୁଣା କାହୁଁ ବସିବ ତଳେ ?
ଅଧିକ ନ କହ ମର୍ଯ୍ୟାଦା ଜଗି ଚଳିବ ଧଳେ ।



# ବନ୍ଦୀର ସାନ୍ଧ୍ୟ ଉକ୍ତି

ସତ୍ୟ ସ୍ୱାଧୀନତା ଲାଗି ଯାର କାରାବାସ,
ତା ଲାଗି ଏ ପୁଣ୍ୟକ୍ଷଣେ କରେଁ ମୁଁ ବିଶ୍ୱାସ ।

ପଶ୍ଚିମ ଭୂଖଣ୍ଡରେ ଆଜ ଯବନ ମହର୍ଷି,
ଶାନ୍ତ ଦାନ୍ତ ମହାଯୋଗୀ ଆଦ୍ୟ ତତ୍ତ୍ୱଦର୍ଶୀ,

ଆତ୍ମାର ଅମର ତତ୍ତ୍ୱ ପ୍ରଚାର ଲୋକରେ,
ସତ୍ୟସନ୍ଧ ସକ୍ରେଟିସ୍ ଯେବେ ଅକାତରେ,

ପାଷଣ୍ଡ ଶାସନ-ଦଣ୍ଡେ ଦେଖାଇଲେ ଶିର,
ମୁଖେ ଯେବେ ବିଷପାତ୍ର ଲଗାଇଲେ ବୀର ।

ଆଥେନସ ଆକାଶେ ଏକ ଅସ୍ତମିତ ରବି,
ଦେଖାଇଲା ହାସ୍ୟାଭସେ ନବାନନ୍ଦ ଛବି ।

ବୁଡ଼ି ନାହିଁ ଏବେ ସୂର୍ଯ୍ୟ, ଆସି ନାହିଁ କାଳ,
ନ ପିଅ ମହର୍ଷି, ଆଉ ମୁହୂର୍ତ୍ତେ ସମ୍ଭାଳ ।

ସଜଳନେତ୍ରେ ନିବେଦନ କଲେ ଶିଷ୍ୟଦଳ,
ମମତା ଉପେକ୍ଷି ମୁନି ପିଇଲେ ଗରଳ ।

ଗଲା ସେ ଅମର ଆତ୍ମା ଛାଡ଼ି ନରକାୟା,
ଆଚ୍ଛାଦିଲା ତଦନ୍ତରେ ବିଷାଦର ଛାୟା ।

ଜାଣି ନ ଥିଲା ଯେ ହୃଦ ଭୟ ପଳାୟନ,
ମରଣେ ଯେ ଦେଖୁଥିଲା ଅମର ଜୀବନ,

ଚଳିଗଲା ହସିଁ ହସିଁ ତେଜି ମର୍ତ୍ତ୍ୟବାସ,
ବୀର ଗୁଣଗାଥା ଏବେ ଗାଏ ଇତିହାସ ।

## ବନ୍ଦୀର ସାନ୍ଧ୍ୟ-ଭକ୍ତି

ଦେଖିଛତ ସେ ଘଟନା ଘୋର ଦୀନନାଥ,
ସତ୍ୟ ସ୍ୱାଧୀନତା ପ୍ରତି ଶାସନ ବଜ୍ରାଘାତ ।

ଶାନ୍ତ ସୁଶାସନ ନାମେ ପଶୁ ଅତ୍ୟାଚାର,
ସତ୍ୟ ସ୍ୱାଧୀନତା ଶିରେ ଉତ୍କଟ ପ୍ରହାର ।

କେତେ କାରାଗାରେ କେତେ ଘୋର ନିର୍ଯ୍ୟାତନ,
କେତେ ସାଧୁହତ୍ୟା କେତେ ବୀର ନିଷ୍ପେଷଣ ।

ଝଡ଼ର କଦର୍ଥନେ କେତେ ହୃଦ ଖଣ୍ଡ ଖଣ୍ଡ,
କେତେ ଦେବଦୂତେ ବୃଥା ଅମାନୁଷ ଦଣ୍ଡ,

ମାନବ ସଭ୍ୟତା ମୁଖେ କଳଙ୍କ କାଳିମା
ଦେଖିଛ ସବୁତ, ତାର ନାହିଁ ପରିସୀମା ।

କହ ଦେବ ହେଲା କିବା ପରିଣାମ ତାର,
ଜଗତରେ କାହା କାର୍ଯ୍ୟ ଲଭିଲା ପ୍ରସାର ?

ଉଡ଼ୁଅଛି ଅବଶେଷେ ସତ୍ୟର ନିଶାଣ,
ବାଜୁଅଛି ସ୍ୱାଧୀନତା ବିଜୟ ବିଷାଣ ।

ହୋଇଅଛି ରାଜଶକ୍ତି ମ୍ଳାନ କାଳଗ୍ରାସେ,
ପାଉଅଛି ଅପଯଶ ଲେଖା ଇତିହାସେ ।

ଏ ସକଳ ଗ୍ରହରାଜ କରିଛ ସାକ୍ଷାତ,
ସେନ ଦେବ ମୋର ସାନ୍ଧ୍ୟ ଭକ୍ତି ପ୍ରଣିପାତ ।

ବିଜନ ପ୍ରକୋଷ୍ଠ ଏବେ କରିବ ଆଶ୍ରୟ,
ସ୍ମୃତିରେ ସେବିବ ତହିଁ ବସନ୍ତ-ମଳୟ ।



# ବନ୍ଦୀର ସ୍ୱଦେଶ ଚିନ୍ତା

କାହାରେ ବହଇ କେତେ ସୁଶୀତଳ
ମଧୁର ମଳୟ ମୃଦୁ ମରୁତ,
ନବ ମଲ୍ଲୀକଳି ମୃଦୁ କି ହସଇ
ଭ୍ରମର ଦୋଏ ପ୍ରେମେ ତା ବୃନ୍ତ ।

କବାଟ ଫାଙ୍କରେ ପଶିଲେ ବାଙ୍କରେ
ଥରେ ଥରେ ଆସେ ଚଞ୍ଚଳ ପବନ
ସେ କି ଗୁପ୍ତଚର, କାହାର ଖବର
ଦେଇ ଲୁଚି ଚାଲିଯାଏ ବହନ ।

ସେ ସ୍ନିଗ୍ଧ ପରଶେ ନିମିଷ ସଂସ୍ପର୍ଶେ
ତାପିତ ପ୍ରାଣ ମୋ ପୂରେ ପୁଲକେ,
କେତେ ସୁଖସ୍ମୃତି ଜାଗେ ଏ ଅନ୍ତରେ
କେତେ ସ୍ୱପ୍ନଛବି ନାଚେ ପଲକେ ।

ମନେ ଏବେ ଆସେ ତରୁଣ ବୟସେ
ବୁଲୁଥିଲି ଯେବେ ଭାର୍ଗବୀ ତୀରେ,
ପୁନାଗ ବକୁଳ- ସୌରଭ ସଂକୁଳ
ସୁବାସ ଶୀତଳ ସଞ୍ଜ ସମୀରେ ।

କ୍ଷୀଣଜ୍ୟୋତ୍ସ୍ନା ସାରେ ଖେଳେ ଧୀରେ ଧୀରେ
ସୁମଞ୍ଜୁଳା ଲଘୁ ଲହରମାଳା,
ଦକ୍ଷିଣ ଦିଗକୁ କୁଞ୍ଚିତ କୁନ୍ତଳ
ମେଲାଇ ଦେଇଛି କି ପଲ୍ଲୀବାଳା ।

ଗ୍ରାମ ସୀମନ୍ତେ      ଚହଲଇ ପାଣି
ଝଲସରେ ଯେବେ ନକ୍ଷତ୍ର ଭାତି,
ମାଳମଣି ଦାମ      ପ୍ରାଏ ସେ ଲହରୀ
ଶତ୍ରେ ଦୂର କ୍ଷଣେ ଯାଏ ପ୍ରସରି ।

ଗାଈଆଳ ପିଲା      ଗୋଠୁଁ ବାହୁଡ଼ାଇ
ଅଣୁଆଏ ଗାଈ ବେଣୁ ବଜାଇ,
ହାଟକାମ ସାରି      ଫେରନ୍ତି ବେପାରୀ
ଭଞ୍ଜି ଚଉପଦୀ ପଦ ପକାଇ ।

ସରେଶ୍ୱରୀ ପାଶେ      ଧୂପ ଦେଇ ବାସେ
ଅସନ୍ତି କୌତୁକେ କୁମାରୀ କୁଳ
କାଏ କରେ କଳି      ଆନ ସଙ୍ଗେ ଖେଳି
କାଏ ବା ଗୋଠାଏ ବଉଳଫୁଲ ।

ସାଉଁଳ କାନ୍ଧରେ      କେବେ ବା ବନ୍ଧରେ
ଭଉଣୀ ଆଗରେ ବୁଲଇ ଭାଇ,
ଶାଶୁଘରେ ନାଏ      ସନ୍ଧ୍ୟା ଦେଖି କହେ
ବୁଲେଣ୍ଡେ ଗୋଡ଼ କାଟି ବୁଲିବା ପାଇଁ ।

ନବ ସଉବମା      କାଖେ ପିଲା ଧେନି
ବୁଲି ନ ପାରଇ ଜଘନ ଭାରେ;
ତା ବୁହିଁ ଚପଳ      ଯୁବା ସଙ୍ଗୀଦଳ
ପରିହାସେ ଏକ ଆନକୁ ଠାରେ ।

କେତେକେ ଅଡ଼ୁ ଉଡ଼ୁ      ଆସନ୍ତି ବାହୁଡ଼
ଝୁଲନ୍ତି ପୁନାଙ୍ଗ ଫଳିତ-ଶାଖେ,

ନଦୀ ତଟେ ତଟେ      ଶାରଦ ପ୍ରକମ୍ପେ
ଚପଳାଙ୍ଗୀ ଖଞ୍ଜି ଚମକ ପାଖେ ।

କାହିଁ ନଦୀକୂଳ      ପିଲ ପୋଖରୀ ଦଳେ
ଗୋଡନ୍ତି ଗୋବର ଦେଖାନ୍ତି ହୁଜା,
ମାଛ ଧରିବାର      କରନ୍ତି ବିଚାର
ଦେଇ କାଦଖିଆ ବାଳ ଢ଼ମ୍ବୁରା ।

ଖୀର ସଡ଼କରେ      ଆଜି ପିଲା କେତେ
ଟେକୁଥାନ୍ତି ଜଙ୍ଘେ ଟେକଣ ଗଧା,
ଗୁଡ଼ଆଦାଣ୍ଡରେ      କେ କାହାକୁ ମାରେ
କଏ ହସି ପୁଣି ଦେଖାଏ କାହା ।

ହଳ ଲେଉଟାଇ      ଆସୁଥାଏ ଭୋଇ
ମୁଣ୍ଡେ ଘାସଗୋଛ ହାତେ ପାଞ୍ଚଣ
ବଳଦ ଜଗାଇ      ଯିଏ କେବେ ଗାଇ
"କାହିଁ ଗୁଡ଼ିଗଲୁ ରେ ଲକ୍ଷ୍ମଣ !"

ବାଟୋଇ ଭିକାରୀ      ବନ୍ଧରୁ ଉଭୁଣ
ଆଶ୍ରୟ ଆଶାରେ ଗ୍ରାମରେ ପଶେ
ହୁଏ ପଢ଼ି ନୀତି      ଜନେ ଭାଗବତ
ଶୁଣିବାକୁ ତହିଁ ପିଣ୍ଡାରେ ବସେ ।

ଘଡ଼ିପାଏ ହସେ      ଘରକଥା ମନେ
ଅତିଥି ଆଦର ଦେବ ଅର୍ଚ୍ଚନା,
କାରାଗାର କକ୍ଷେ      କମ୍ପାଳି ଏ ବକ୍ଷେ
ଆଣିବ ଆଜ ସେ ବୃଥା ଭାବନା ?

## ବନ୍ଦୀର ସ୍ୱଦେଶ ଚିନ୍ତା

ହେ ବସନ୍ତବାତ		ମୋ ଦ୍ୱାରେ ଆଘାତ
କର ଭଲ ଆଜ ଥରେ ସଦୟେ,
ଦକ୍ଷିଣ ସାଗରର		ଜଳ ସମାସ୍ତର
ସିଞ୍ଚ ଶାନ୍ତି-ସୁଧା କ୍ଷଣେ ହୃଦରେ ।

ମୋର ପ୍ରିୟପଲ୍ଲୀ		କେତେ ନନ୍ଦସ୍ଥଳ
ଜଣଥିବେ ତବ ଆସିବା ବାଟେ,
ଦେଖିଥିବେ ପଥ		କେତେ କ ବାରତା
ଶୁଣାଅ ମନ ମୋ ଅଛି ଉଛାଟେ ।

କହୁଥିବ ଭେଟ		ମଞ୍ଜୁଷା-ମୁକୁଟ
ମହେନ୍ଦ୍ର ଶଇଳ ସୁବାସ ଫୁଲ,
ତବ ସମାଗମେ		ନାଚିଥିବ ପ୍ରେମେ
ଦୋଇଲାଇ ତରୁ ଭୃଙ୍ଗସଂକୁଳ

ରସନା ନୟନ		ନାସା ରସାୟନ
ସ୍ୱାଦ ଶୋଭା ଗନ୍ଧଭରା ଆଧାର,
ଗଞ୍ଜାମ-ମଣ୍ଡନ		ସୁରମ୍ୟ 'ଉଦ୍ୟାନ'
ଦେଇଥିବ କେତେ କ ଉପହାର ।

ଆମ୍ବ ରମ୍ଭା ବେଲ		ଲେମ୍ବୁ, ନାରିକେଳ
ପଣସ ସପୁରୀ ଖଜୁରୀ ତାଳ,
ବଧିରକ୍ଷା ପାଇଁ		ଆସିଥିବ ତୁହିଁ
'ଉଦ୍ୟାନ'ର ନାନା ଫଳ ରସାଳ ।

ବୃକ୍ଷୋଦକ ଋଷି-		କୁଲ୍ୟାକୁ ପରଶି
ଆସିଥିବ ଯେବେ ହେ ପବମାନ !

ଖରବାପୀଙ୍କର          ରଗିଣୀ ମଧୁର
ଶୁଣିଥିବ ତମ୍ବୁଲ କାନ୍ତ ଗାନ ।

ଆଲିଙ୍ଗନ ଆଶେ          ତବ ତଟପାଶେ
ଚନ୍ଦ୍ରିକା ଆବେଗେ ଥିବ ଅଧୀର,
ମୁକ୍ତାଳକକେଶୀ          ଶ୍ୟାମଳଶୋଭାବରଣି-
ଗିରି ହିମ-ସ୍ଫୀତ ବକ୍ଷ ମେଲଇ ।

ଚଞ୍ଚଳ ହିଲ୍ଲୋଳେ          ଗୁରୁ ଚନ୍ଦ୍ରସ୍ତନେ
ଚୁମ୍ବିଥିବ ଯେବେ ଗାଢ଼େ ସମୀର,
ସୁନ୍ଦର ସର୍ବାଙ୍ଗେ          ଉଠିଥିବ ରଙ୍ଗେ
ଅପୂର୍ବ ଉଲ୍ଲାସ କମ୍ପାଇ ନୀର ।

ପୁଳିନ କାନନେ          ସିନ୍ଧୁର ସନସନେ
ଖେଳି ଯାଉଥିବ ପ୍ରେମ-ଲହରୀ,
ଦୋଳିଯାଉଥିବ          କେତେ କେତେ ନାବ
ଦେଖୁଥିବ ଚନ୍ଦ୍ରଦୂରେ ପୋଲଣ

ମାଛରଙ୍କା ହଂସ          ଚକ୍ରାଙ୍ଗ ସାରସ
ଧାନା ଜାତି ଖଗ ଖେଚର ମାଳ,
ଚିଲିକା ବକ୍ଷରେ          ଦୋଳୁଥିବ ଯଥା
ନୀଳମେଘେ ଧାଡ଼ି ଧାଡ଼ିବଗାଳି

ଫେଣ୍ଡ଼ ମୀନ ଦଳ          ଓଲଟାଇ ଗାତ୍ର
ରଞ୍ଜିଲ୍ଲାବଳକୁ ଚିଲିକା ପୃଷ୍ଠ,
ଶୈଳ ପ୍ରତିଘାତେ          ଶରମେ ଭୁଶରେ
ରୁକ୍ମାଳି ବଢ଼ାଇ ଗତି ଦ୍ୱିଗୁଣ ।

### ମୋର ସ୍ୱଦେଶ ଚିନ୍ତା

ଆସିଥିବ ଭକ୍ତ — ଭ୍ରମେ ପଥ ଦୂର
ସିନ୍ଧୁ ସଇକତେ ଶ୍ରୀକ୍ଷେତ୍ରଧାମ,
ପୁଣ୍ୟ ନୀଳାଚଳେ — ମହୋଦଧି ଜଳେ
ସ୍ନାନ ହୋଇଥିବ ଶୁଚି ଆତ୍ମ ।

ଫଟର ସ୍ୱଚ୍ଛନ୍ଦେ — ଭୃଙ୍ଗ ତାଳିବୃନ୍ଦେ
ଚାଳ ଲଙ୍କାଅମ୍ବ ଗ୍ରୀଷ୍ମା ଧନ୍ୟାରେ
ନୀଳାଚଳପତି — ଚମ୍ପୁରେ ପ୍ରଣତି
କଢ଼ଥିବ ଟେଣି ଦକ୍ଷିଣ ଦ୍ୱାରେ ।

ଶ୍ରୀପଦ ଭୂଷଣୀ — ଶିରରେ ପରଶି
ଲଭିଥିବ ମହାମୋଦ ଅନ୍ତରେ,
ନୀଳଚକ୍ର ଚୂଳ — ପ୍ରେମ ଭକ୍ତିଭୋଳେ
ଦେଖିଥିବ ନେତ୍ର-ଭରି ଥରେ ।

ପୁଣ୍ୟ ଗନ୍ଧବହ, — କର ଅନୁଗ୍ରହ
କହ ପ୍ରିୟ ପୁଷ୍ପ ସୁସମାଚାର,
ନଗର ନିବାସୀ — ପ୍ରଭୁ ବ୍ରହ୍ମର୍ଷି
କରୁଛନ୍ତି ଏବେ କେଉଁ ବିଚାର ?

ଗମ୍ଭୀରରୁ କିବା — ଶ୍ରୀମୁଖ ଆଦେଶ
ପଠାଇଅଛନ୍ତି ଦେବ ମୋ ପାଇଁ
କହ ବେଗେ ବାୟୁ, — କ୍ଷୀଣ ହୁଏ ଆୟୁ
ରହିଥିବି କେତେ କାଳ ଅନାଇଁ ?

ନୀଳାଚଳବାସୀ — ମୋତେ କି ଆଶ୍ୱାସି
କହିଛନ୍ତି କିଛି ଶୁଭ ବାରତା,

ସାଧାରଣ ସନ୍ଥ ସେବକ ମହନ୍ତ
ପକାନ୍ତି କି କେବେ ସ୍ୱରାଜ୍ୟ କଥା ?

ସାରଦରଜନ କ୍ଷେତ୍ର ପ୍ରଦକ୍ଷିଣ
କରୁଥିବ ପୁଣି ଉତ୍ତରଗତି
ଅଟକାଇଥିବେ ପଥରେ ଟିକଏ
ସତ୍ୟବାଦୀ କୁଞ୍ଜେ ତରୁବ୍ରତତି ।

ସୁମଧୁର ତାନେ ତବ ଆବାହନେ
ଗାଉଥିବ ପିକ ସ୍ୱାଗତ ଗୀତ,
ବକୁଳ ତମାଳ ଦେଉଥିବେ ତାଳ
ପୂରି ଉଠିଥିବ ପରମ ପ୍ରୀତି ।

ଦେଉଳେ ପ୍ରବେଶି ଗୋପୀନାଥ ବଂଶୀ-
ରନ୍ଧ୍ରେ ରଚିଥିବ ଅପୂର୍ବ ସ୍ୱନ,
ରାଧିକା ଅଞ୍ଚଳ ଉଡ଼ାଇ ଚଞ୍ଚଳ
କରୁଥିବ ଜାଣି ବେନିଙ୍କ ମନ

ହସି ଉଠିଥିବେ ଯୁଗଳ ମୂରତି
ଖସି ପଡ଼ୁଥିବ ଶ୍ରୀଅଙ୍ଗୁ ଫୁଲ,
ନବଘନ ଶିରେ ଆହା କି ରୁଚିରେ
ହଲୁଥିବ ତାଙ୍କ ମୟୂରଚୂଳ ।

ବଉଳ ସେବତୀ ମରୁଆ ମାଳତୀ
ଚମ୍ପା ନାଗେଶ୍ୱର ଯାଇ ଦଅଣା,
ଚହଟାଇ ବାସ ତବ ଚଉପାଶ
କରୁଥିବେ ଗନ୍ଧବ୍ୟୂହ ରଚନା ।

ବନ୍ଦୀର ସ୍ୱଦେଶ ଚିନ୍ତା

ବିରଜା ବିହାରୀ    ଯୋଗୀ ମନୋହାରୀ
ଶୁଣିଛି କଲ୍ପନ୍ତି ଯହିଁ ବିହାର,
କି ଉପମା ତାରେ    ନନ୍ଦନ ସୁଷମାରେ
ସେହି ସ୍ଥାନ ପଟାନ୍ତର ତାହାର ।

ବସନ୍ତ ମାଧବୀ    କୁଞ୍ଜ କୁଞ୍ଜ ପୂରି
ଫୁଟିଥିବ ଯହିଁ ଉଚ୍ଛୁଳ ଘଟେ,
ଦେବଦତ୍ତ ଧାମ    ମୋ ପ୍ରିୟ ଆଶ୍ରମ
ପଡ଼ୁଛି କି ତବ ନୟନ ପଥେ ?

ମୋ ସଖା ସୋଦର    ପ୍ରିୟ ସହଚର
ଅନ୍ତେବାସୀ ବନ୍ଧୁ ସନ୍ତୋଷୀଗଣ
ରହନ୍ତି କୁଶଳେ    ଧରମ ବଳରେ
କରେଣ କଷନ୍ତି ନୁହେଁ ବଦନ ?

ସନ୍ଧ୍ୟାବାୟୁ କୁଞ୍ଜ    ଫୁଲଅନା ପୁଞ୍ଜ
ଜାଣିଥିଲେ ଏଥି ତବ ସଞ୍ଚାର,
ଅବଶ୍ୟ ମୋ ପାଇଁ    ଥିବେ ପଠିଆଇ
ମୃଦୁ ମଧୁମୟ ଗନ୍ଧ ସମ୍ଭାର ।

ଗନ୍ଧବହରେ ଉଡ଼ି    ଆସିଥିବ ପଡ଼ି
ଧୀରେ ଧୀରେ ସିଧା ଉତ୍କଳ ଦିଗେ,
ଲଙ୍ଘି ବନ ଗ୍ରାମ    ଜଳ କି ବିଶ୍ରାମ
ଲିଙ୍ଗରାଜ ଦେବ ଦେଉଳ ଶିଖେ ।

ସ୍ୱର୍ଗଗାମୀ କାଳ    ପ୍ରାଚୀନ ଉତ୍କଳ
କଳା କଉଶଳ କରେ ପ୍ରକାଶ,

ବୈଭବ କଙ୍କାଳ ଝଟକ୍ଳକ ଅନଳ
ପାଇଥିବ ପ୍ରାଣେ ଘୋର ତ୍ରାସ ।

କେତେ ଚମତ୍କାର ମନୋଜ୍ଞ ମନ୍ଦର
ମିଶିଛି ମାଟିରେ ପଡ଼ିଛି ପଦା;
ଖଣ୍ଡ ଖଣ୍ଡ ଶିଳା ଖସି କାନ୍ଥାଦେହୁଁ
ଢେର ହୋଇଅଛି ପଥରଗଦା ।

ଶିଳ୍ପ ଦିଛି ସୀମା ପାଷାଣ ପ୍ରତିମା
ଭଙ୍ଗି ଅଛି ମୁଖ, ଛୁଟିଛି କର,
ପଡ଼ିଅଛି ବାଟେ କବା ବଣ ପାଟେ
ହୋଇଅଛି କାହିଁ ଭୁଠ ପଥର ।

ହଳ ମୂନେ ଖେତେ ବାହାରନ୍ତି କେତେ
ଖୋଦିତ ଅଖଣ୍ଡ ଅପୂର୍ବ ମୂର୍ତ୍ତି,
ଛୁଟି ନାହିଁ ତହେ ଲାବଣ୍ୟ ସୁଷମା
ପ୍ରକାଶେ ସର୍ବାଙ୍ଗେ ଜୀବନ୍ତ ସ୍ଫୂର୍ତ୍ତି ।

ସ୍ନେହେ ଦକ୍ଷ ଶିଳ୍ପୀ ମନେ କି ବିକଳ୍ପି
ଧୈର୍ଯ୍ୟ ତେଜି ରଖିଗଲା ଗୋପନେ,
କି ଅବା ମେନକା ଗ୍ଲଲଗଲା ଏକା
ଶିଶୁ ଶକୁନ୍ତଳା ଫିଙ୍ଗି ବିଜନେ

ନୃପତି ନଗର- ପତନ ପ୍ରାଚୀର
ଧ୍ୱଂସାର ଦେଖାଏ ମୃତ୍ତିକା ସ୍ତୂପ,
ଲତା ଗୁଳ୍ମରାଶି ଗାଲଣି ଗରସି
କେତେ ସୁଗଠିତ ତଡ଼ାଗ କୂପ ।

ବନ୍ଦୀର ସ୍ୱଦେଶ ଚିନ୍ତା

ଶୈଳ ଗୁଡ଼ ବଂଗ କେତେ ଶିବଲିଙ୍ଗ
ଚଢ଼ନ୍ତି କାହିଁ ତା ପରିଚୟ ?
ରହିଛି କେବଳ ଐଶ୍ୱର୍ଯ୍ୟର ଛାୟା
କି ବିଭବ ଆହା କି ବୀର୍ଯ୍ୟ !

ଅଟୁଟ ଐଶ୍ୱର୍ଯ୍ୟ ମଧ୍ୟେ ଧରି ଧୈର୍ଯ୍ୟ
ଓ ଘୋ ଜଙ୍ଗଲର କୁଞ୍ଜ ମନ୍ଦର,
ମହା ଶ୍ମଶାନେ ଯଥା ସିଦ୍ଧାସନେ
ଯୋଗାରୁଢ଼ କଳ୍ପ ଯୋଗୀ ଶଙ୍କର ।

ଶୈବାଳ ଆବୃତ ବିବର୍ଣ୍ଣ ବିକୃତ
ଧରଇ ବିରାଟ ଜନ୍ମତ କାୟା,
ଧର୍ମର ହତାଶେ ସ୍ୱଦେହିଁ ଚଉପାଶେ
ଜୁଟାଇଛି କି ସେ ଏ ଭବମାୟା ?

ସେ ଉଚ୍ଚ ଉଦାର ପ୍ରବଣ ସୁନ୍ଦର
ସଦାଶିବ କଳ୍ପ ଶିବମନ୍ଦର,
ବିପୁଳ ଅକୃତ୍ତ ବିଳୋଲକ ସ୍ପନ୍ଦେ
ଭକ୍ତିର ପୂଜା ପାଦେ ସମୀର ।

ବେଣୀ ବେଳ ଚିହ୍ନି ନ ଥିବ ତ ରକ୍ତ
କଏ ସେ ରକ୍ତର ହୃଦୟ ବନ୍ଧୁ ?
ସେ ବିଷାଦମୟ ଭଗ୍ନ ଦୃଶ୍ୟଚୟ
ଦେଖି କାହା ଛାତି ପାରିବ ସହି !

ମେଘ ସୁକଲ୍ୟାଣ ସ୍ୱେଦ ସମୀରଣ
ବହୁଥିବ ପୁଣି ଗତ ଉତ୍ସବରେ,

ଦ୍ୱି'ହେଣ୍ଡ୍ର ଯାଇ- ଥିବ ବା ନ ଥିବ
ଭେଟିଥିବ ଖଣ୍ଡଗିରି ପଥରେ ।

ଦେଖି ନାହିଁ କେବେ ତନୁଁ ଖଣ୍ଡଗିରି
କେତେଦାସ ଯାର ଅଙ୍କେ ଅଙ୍କିତ,
ଅମର ଅକ୍ଷରେ ନୀରବ-ଗମ୍ଭୀରେ
ଗାଏ ଯେ ଉତ୍କଳ-ଗୌରବ ଗୀତ ।

ପଡ଼େ ଏବେ ମନେ ପ୍ରଥମ ଯୌବନେ
ହୃଦେ: ପିପାସା ଭାବ ଉନ୍ମାଦେ
ଖଣ୍ଡଗିରି ଶିରେ ଦେଖି ଏମନ୍ତ ଭରି
ଚିନ୍ତା ନିମଗନେ ବସିଲି ପାଦେ ।

କଳ୍ପନାର ଯୋଗେ କାଳ ଧ୍ୱସ୍ତ ସ୍ରୋତେ
ଭାସି ଦେଖିଲି ମୁଁ ଉତ୍କଳ ଛବି,
ଇତିହାସ ଯାହା ନ କରେ ପ୍ରଚାର
ଚିତ୍ର ନାହାନ୍ତି ଯା କାବ୍ୟରେ କବି ।

କାଳର ପ୍ରଭାବେ ଜନ ସ୍ମୃତି ପଟୁଁ
ଲୁପ୍ତରେଖ ଯାର ଲିଭୁଛି ଆଜ,
କଳିଙ୍ଗର ଶ୍ରେଷ୍ଠ ଅଶୀତ ବିଭବ
ବୀର ଖାରବେଳ କୀର୍ତ୍ତିରାଜ ।

ବାଜେ ବୀରବାଜା ଭାଙ୍ଗି ରଣଭଙ୍କା
ଭାଙ୍ଗି ବା ଲଗିଛି ଗୁପ୍ତ ମଞ୍ଜୁଷା,
ଦୂରଦେଶୁଁ ଦୂତ ବାଣିଜ୍ୟ-ବାରତା
ଘେନିଆସି କରେ ଗୁମ୍ଫାରେ ଜଣା ।

ଶ୍ରାମଣ ସନ୍ନ୍ୟାସୀ ଦଳେ ଦଳେ ବସି
ଶୁଣୁଅଛି କାହିଁ ଚୈତ୍ୟଚତ୍ୱର,
ଗମ୍ଭୀର ନିର୍ଘୋଷେ ଲୋକ ଉପଦେଶେ
କାହିଁ ବା ଅହିଂସା ଧର୍ମତତ୍ତ୍ୱର ।

ଖଣ୍ଡଗିରି ଅଙ୍ଗେ ଶିଳ୍ପୀ ଶତ ଶତ
ଖୋଳନ୍ତି ଅଦ୍ଭୁତ ଗୁମ୍ଫା ନିରନ୍ତେ,
କାହିଁ ଗୁପ୍ତଚର ରାଜ୍ୟ ସମାଚାର
ଏକାନ୍ତେ ଜଣାଏ ନୃପପ୍ରବରେ ।

କଳ୍ପନାର ନେତ୍ରେ ଏହିପରି କେତେ
ଦିଶେ ଚିତ୍ର ଖଣ୍ଡଗିରି ଶରୀରେ,
ବିନଷ୍ଟ ସର୍ବସ୍ୱ ବୃଦ୍ଧ ଖଣ୍ଡଗିରି
ଚିନ୍ତେ ପଡ଼ିଏ ଜଳ ଗମ୍ଭୀରେ ।

ମହାକାଳ ଗର୍ଭେ ବୁଦ୍‌ବୁଦ ପରାଏ
ଯାଇଅଛି ମିଶି କଳିଙ୍ଗ-ଭୂତ,
କଳିଙ୍ଗ-ସନ୍ତାନ ଭୁଲିଛନ୍ତି ଏବେ
କଳିଙ୍ଗର ନାମ ଗୌରବ ସ୍ମୃତି ।

ତଥାପି ସେ ଗାଥା ରଖିଅଛି ଗିରି
କାଳ ପରାଭବେ ଦେଖାଇ ହିଆ,
ଅନ୍ତ ଛାରଖାର ରାଣୀହଂସପୁର
ସାକ୍ଷ୍ୟ ଦେବାଲଗି ଅଦ୍ୟାପି ଠିଆ ।

ଚୂଡ଼ୁଁ ମୂଳଯାଏ ଶୋଭେ ଶିଳାସ୍ତମ୍ଭେ
ପ୍ରାସାଦ ପ୍ରାଙ୍ଗଣ ଗୁମ୍ଫା ଦେଉଳ,

ଚତୁଳତା ଦଳ　　　　　ରୋଧୁଛନ୍ତି ପଥ
　　ନବସନ୍ତ ପହୁଁ ଶ୍ୱାପଦକୁଳ ।

ପଦଭ୍ରାନ୍ତ ବାସୀ　　　　　ସାଧୁ ଧର୍ମବେଶୀ
　　ବର୍ଣ୍ଣି ଅଦ୍ଭୁତ ବହୁ କାହାଣୀ
ଦେଖାନ୍ତି ଶ୍ରୋତାଙ୍କୁ　　　　　ପ୍ରତ୍ୟକ୍ଷ ପ୍ରମାଣ
　　କେତେ ଜୀର୍ଣ୍ଣମୂର୍ତ୍ତି କଠାଉ ଆଣି ।

ତାପସ ସାଧକ　　　　　ଅଦ୍ୟାପି ଅନେକ
　　ନିବିଡ଼ ଅନ୍ଧାର ଗୁହା ଗହ୍ୱରେ,
ଲୁଚି ରହିଛନ୍ତି　　　　　ଗଭୀର ନିଶୀଥେ
　　ଶୁଣାଯାଏ ତାଙ୍କ ସଙ୍ଗୀତ ନଭେ ।

ଶୁଣିଛି ମୁଁ ନିଜେ　　　　　କହନ୍ତି ସେ ତେଜେ
　　ପଥିକ ବଦନେ ଦେଖି ସଂଶୟ,
ନୁହେଁ ତା ବିରସ　　　　　ବାଦ୍ୟ ବିଶେଷ ମାତ୍ର
　　ଦ୍ରୁତଫଟେ ନର ନିଜ ହୃଦୟ ।

ଅତିଥି ଆଦରେ　　　　　ଅତି ଆଗ୍ରହରେ
　　କରିଥିବ ଖଣ୍ଡଗିରି ବନ୍ଦନ,
ବନ ଉପତ୍ୟକା　　　　　ଗୁହା ଗର୍ଭେ ଏଭା
　　ସ୍ୱଚ୍ଛନ୍ଦେ ସଞ୍ଚରିଥିବ ପବନ ।

ତବ ଆଗମନ　　　　　ସନସନ ସ୍ୱନ
　　ଶୁଣି ଗିରିଗୁମ୍ଫା ଦରୀ-କନ୍ଦର,
ଗାଇଥିବ ଗୀତ　　　　　ଗୌରବ ସଙ୍ଗୀତ
　　ତୁମ ସ୍ୱର ସଙ୍ଗେ ମିଳାଇ ସ୍ୱର ।

### ବଧୀର ସ୍ୱଦେଶ ଚିନ୍ତା

ପୂର୍ବ ସୁଖସ୍ମୃତି          ଦୁଃଖେ ମନେ ଆସେ
ଜଗାଏ ବିଷାଦ ଦ୍ୱିଗୁଣ ପ୍ରାଣେ,
ତଥାପି ଉତ୍ସବ          ସ୍ୱଦେଶ ସଙ୍ଗୀତ
ସନ୍ତାପେ ସନ୍ତତ ସାନ୍ତ୍ୱନା ଆଣେ ।

ଜଡ଼ ସମୀରଣ          କଲ କି ଦର୍ଶନ
ଶୁଦ୍ଧ ସାଧୁ ଅମ୍ବା ଗୃହ ଦୁଆର,
ଉଦୟଗିରି ଚୂଳେ          ବହଳ ନଶ୍ୱରେ
ଯା ଅମର ସୁଧା ସଙ୍ଗୀତ ଧାର ।

ଏ ମୋ କର୍ଣ୍ଣ ଦ୍ୱାରେ          ଲଗିଯାଏ ବାରେ
ସେ ଦୂର ସଙ୍ଗୀତ ଶୁଭ୍ର ମୋ କାନେ,
କମ୍ପି ଉଠ୍ ମୋର          ହୃତ-ବୀଣା ତାର
ମୋ ଅନ୍ତର ଧ୍ୱନି ମିଶୁ ସେ ତାନେ ।

କି ଦେଖିଲ ଆଉ          ହେ ବନ୍ୟ ବାୟୁ
ଜନ ବେଗେ କର ନାହିଁ ଛଳନା,
ତୁମ୍ଭେ କି ନ ଜାଣ          ନିର୍ବାସିତ ପ୍ରାଣ
ସ୍ୱଦେଶ ସନ୍ଦେଶେ ପାଏ ସାନ୍ତ୍ୱନା ।

ଖଣ୍ଡଗିରି ପରେ          ଉନ୍ମୁକ୍ତ ଆମ୍ବରେ
କରିଥିବ ନବମେଘ ରଚନା,
ବାଟରେ ଅଟକ          କଲ କି କଟକ
ମହାନଦୀ ନୀଳ ନୀର-ବସନା ।

ଉଦ୍‌ବେଗ ବାହାନା          କରିଥିବ ସିନା
ଉପେକ୍ଷି ନ ଥିବ ତା ସମାଦର;

ଯେ ଯେଉଁଠ କର୍ମଠ    କରେ ଷତେଣ ମଠ
ପ୍ରେମ ପାଇଁ ହେବାବେଳେ ଅନ୍ତର

ଫୁଲଉଠିଥିବ    ମହାନଦୀ ବକ୍ଷ
କମ୍ପି ଉଠିଥିବ ଲକ୍ଷ ଦ୍ୱାର,
ଘଠା ତେଡପନ୍ତ    ଥିବେ ମନା ପୋଷ
ମୃଦୁ ହାସେ ଦେଖି ଅଙ୍ଗ ହଜାର ।

ଦେଖିଥିବ କହିଁ    ବାରବାଟି ଦଶା
କ ବେଦନା ଥିବ ମରମେ ବାଧି,
ଉତ୍କଳର ଖର-    ବଦ୍ଧାର ପ୍ରାଙ୍ଗଣ,
ଏବେ ସେ ଉତ୍କଳ-ସୌର୍ଯ୍ୟ ସମାଧି ।

ଥିଲ ଢନ ଯେବେ    ନବରଚନ ଦୁର୍ଗେ
ଯୁଦ୍ଧଯାତ୍ରୀ ରଜା ମେଲ୍ଲଣି କାଳେ,
ଆଣି ନଦୀ ନୀର    ସିଞ୍ଚିଲ ସମୀର
ସ୍ୱେଦବିନ୍ଦୁ ସିକ୍ତ ମଣ୍ଡଷୀ ଭାଲେ ।

ସ୍ନେହ ସୁଧାବିନ୍ଦୁ    ପେଟେଉ ମୁଖଇନ୍ଦୁ
ମଣ୍ଡିଲ ପ୍ରହରୀ ନେତ୍ର ଯୁଗଳେ,
କଞ୍ଚ ସୁଶୀତଳେ    ହଟେଲ କୌଶଳେ
ନ ପକାଇ ମୁକ୍ତାଫଳକ ତଳେ ।

ଯେବେ ରଣଜିତ    ପୁରେ ଗଜପତି
ବାହୁବଳେ ହେଲ ଜୟ ଘୋଷଣା
ଅଙ୍କଗଣ ମିଳ    ଘେନି ଅର୍ଘ୍ୟଥାଳୀ
କଲେ ବନ୍ଦାପନା ଖର ଅଙ୍ଗନା ।

ବାଜିଲା ମଧୁର ଶଙ୍ଖ ଘଣ୍ଟ ତୂରୀ
ଉଡ଼ିଲା ଅମ୍ବରେ ଜୟ କେତନ;
ସେ ବିଜୟ ଘୋଷ ଭେଦିଲା ଦଶଦିଶ
ଗୁମ୍ଫାଇଲା କେଉଁ ଭୂମି ଗଗନ ।

ବନ୍ଦାପନା ଗୀତ ନନ୍ଦିଲା ସୃଷ୍ଟି
ଉଡ଼ାଇଲା ବାମା ମଥା ଓଢ଼ଣା,
ଶତ ଧୃଷ୍ଟପଣେ ପୁଲକିତ ପ୍ରାଣେ
ଦେଲେ ବ୍ୟାଜଗାଳି ବରବର୍ଣ୍ଣା ।

ବାରବାଟି ଅଙ୍ଗେ ସେ ସୌଭାଗ୍ୟ ରଙ୍ଗେ
କଟିଥିଲା ଅଭିନବ ପବନ ,
ଆଜି ତ ଦେଖୁଛ ଯେଉଁ ବାରବାଟି
ଦେଖିଲ ସତ୍ୟ କି ଅବା ସ୍ୱପନ ।

ନ'ତଳ ପ୍ରାସାଦ ସେ ଶୌର୍ଯ୍ୟ ସମ୍ପଦ
ବିଜୟ ବାଜଣା ବିଜୟ ଧ୍ୱଜା,
ବୀର କବିତାର ଧୈର୍ଯ୍ୟ ସମାଦର
ଉତ୍କଳର ବୀର ବନ୍ଦନୀ ପ୍ରଜା ।

ବାରବାଟି ଗଡ଼େ କେଶପତେଥ ଚଡ଼େ
ଏବେ କି ସେ ପୂର୍ବ ଦୃଶ୍ୟପଟଳ,
ପ୍ରତିବିମ୍ବେ ଶୋଭେ ପ୍ରତିନାଦେ ଜମେ
ଆଜି କି ସରିତ ହୃଦ-କମଳ ।

କରପୂର ଉଡ଼ କଳା ଥିଲେ ପଢ଼
କଳା ରଖିଥାଏ କର୍ପୂର ମୂର୍ତ୍ତି;

ଜନା ଯାଇ ନାଶ                    ରହିଲେ ପାଉଁଶ
ଧରିବ ତା ଦେଖି କଏ ସେ ଧୃଷ୍ଟ ।

ଢଳ ମାଟିଗଦା                    ରୁକ୍ଷ ରକ୍ତ ପଦା
ପ୍ରାଚୀନ ଜାତିର କେତେ ଶ୍ମଶାନ,
ନିରେଖି ମନସ୍                    ସଦୟ ହୃଦୟ
ହୋଇ କରିଥିବେ ଶୋକେ ସମ୍ମାନ ।

ସେ ମୃତ୍ତିକା ସ୍ତୂପ                    ଶିରେ ଶ୍ୟାମଶଷ୍ପ
ଚୁମ୍ବିଥିବ ଅଶ୍ରୁପୂର୍ଣ୍ଣ ନୟନେ,
ଜାଳତ୍ରାସ ନାଶ                    ଉତ୍କଳ ପୌରୁଷ
କଳ୍ପିଥିବ ତହିଁ ଧର୍ମ ଶୟନେ ।

ମହତ ନିଧନେ                    ସେ ମହତ ସ୍ଥାନେ
ପଡିଥିଲେ କ୍ଷୁଦ୍ର ଧୂଳିକଣିକା,
ଭକତି ଆଦର                    କରେ ଯେ ତାହାର
ସେ ହିଁଏ ମହତ ହୃଦୟ ଶିକ୍ଷା ।

ତତ୍ତ୍ୱ ମୂଢ ଉଁଚେନ                    ଅଭାଗା ମୂଳକେ
ପଡିଥିବ ତଉଦରେ ସଞ୍ଚିତ,
ଦାବାନଳ ସମ                    ପରୁଷ ପ୍ରବାହ
ଚାପୁଥିବ ବନ ଶଇଳ ଦଗ୍ଧ ।

ଯେ ସ୍ୱଇଳ ପ୍ରଜା                    ନିତ ବଳ ଖେଳା
ଦେଇ ଅତି ଭଦ୍ର କାଟନ୍ତି ଦିନ,
ଜଥା କନ୍ଥକାର                    ନାହିଁ ଅଧିକାର
ନୁହେଁ ଧନପ୍ରାଣ ନିଜ ଅଧୀନ ।

## ବନ୍ଦୀର ସ୍ୱଦେଶ ଚିନ୍ତା

ଯହିଁ ରାଜବଂଶେ          କ୍ଷୀଣ ପୁଣ୍ୟବଶେ
ଧନେ ନାହିଁ କାହିଁ ଭାଗ୍ୟ ଲକ୍ଷଣ,
ତଥାପି ତୁରଙ୍ଗ          ମଦେ ମତ୍ତ ସର୍ବେ
ନ ଦେଖନ୍ତି ଥରେ ଫେଡ଼ି ଈକ୍ଷଣ ।

ନିଦାଘେ ଶଇଳେ          ଦାବାନଳ ଜଳେ
ପ୍ରଜାପୁରେ ଜଳେ ବରଷ ସାରା,
ଛୁଡ଼ ପଶୁ ବନ          ଯାଏ ଆନ ସ୍ଥାନ
ପ୍ରଜା ବାପୁଡ଼ାର କାହିଁ ସେ ଗୃହ ।

ପ୍ରସରେ ସ୍ୱଚ୍ଛନ୍ଦେ          ଯହିଁ ଗିରିପଦେ
ଝରଣର ସ୍ୱଚ୍ଛ ନିର୍ଝର ଧାର,
ଶୁଭ୍ର ଜୋସ୍ନା ନଗ          ବନ୍ଧେ ନିରବଧି
କନକକଣ୍ଠେ ଯଥା ହୀରକହାର ।

ପିକ ଚକ୍ରବାକ,          ହଂସ କାରଣ୍ଡକ
ଶୁକ ସାରୀ ଯହିଁ ଗାଆନ୍ତି ନିତି
ନାନା ଫଳ ଫୁଲ          କାନନ ମଞ୍ଜୁଳ
ଜନମାଏ ପ୍ରାଣେ ପ୍ରବଳ ପ୍ରୀତି ।

ଶୁଭ୍ର ଶତଦଳ          ସରେ ଢଳଢଳ
ମଞ୍ଜୁ ଗୁଞ୍ଜେ ଅଳି ଉତ୍ଫୁଟ ସ୍ୱନେ,
ଯହିଁ କୃଷ୍ଣସାର          କରନ୍ତି ବିହାର
ସ୍ୱଚ୍ଛନ୍ଦେ ଚଟିମା ଖର କାନନେ ।

ମାଳତୀ ମାଧବୀ          ସର୍ବଦା ସାଧବୀ
ଦେବଦାରୁଙ୍କୁ ଶାଳ ଭୁଜ ଆଶ୍ରୟେ,

ସୁଗୃହିଣୀ ସମ ଦାଅନ୍ତି ଆଗମ
ସ୍ନିଗ୍ଧ ଗ୍ରସ୍ୱାଦାନେ ପାନ୍ଥ ହୃଦୟେ ।

ଶସ୍ୟ ଆଭରଣେ ପର୍ଣ୍ଣ ଅନୁଷଣେ
ଦିଶେ ସଦା ମହୀ ସ୍ନିଗ୍ଧ ଶ୍ୟାମଳା,
ମାନବ ମାଧୁରୀ ଧରନ୍ତି ଗ୍ରୁଷି
ପ୍ରକୃତ ସହଜ ଗୁଣରେ ଭଳା ।

ଶୁଭ ଶୋଭାମୟ କମଳା ଆଳୟ
ପ୍ରକୃତ ପ୍ରକାଶ ଅନ୍ତ ବାହାର,
ଶାସକ ସ୍ୱଭାବ ଭଳା ପର୍ଣ୍ଣ ସବ
ସ୍ୱରଗ ସୁନ୍ଦର ଗ୍ରବେ ଭବର ।

ବନ୍ୟ ବନାନ୍ତରେ କନ୍ଦରୁ କନ୍ଦରେ
ଅବାଧେ ବିହରୁଥିବ ସେ ଦେଶେ,
କାହିଁ ଗୁଳଗୁଳ କାହିଁ ବା ଶୀତୁଳ
ଢାଳ୍ପିଁ ରହୁଥିବ ହୃଙ୍କନା ବେଶେ ।

ପଥ କୁଟା କାଠି ଧୂଳି ନାଳି ମାଟି
ଚକ୍ର ଆବର୍ତ୍ତନେ ଉଡ଼ାଇ ନଭେ,
ଉତ୍ତର ମୁଖରେ ଆପଣା ସୁଖରେ
ଗ୍ରହିଁଥିବ କାହିଁ କ୍ରୀଡ଼ାସରଭେ ।

ଅନ୍ତାସ୍ଥ ମୂଳକ ପ୍ରଜା ସୁଖଦୁଃଖ
କ ଦେଖି ଆସିଛ କହ ପବନ,
ସହି ନାନା ଦଣ୍ଡ ଦାଅନ୍ତି କ ଚଣ୍ଡ
ଆସିଅଛୁ କବା ନବ ଚେତନା ।

ସତ୍ୟ ଖର ବର୍ଷା ଦୁଃଖେ ପଡ଼ ଚଷା
ଆପଣା କ୍ଷେତରେ କରେ ଯେ କୃଷି,
ନୋହୁ ଉପୃଷ୍ଟତ ଯେଣ ଦାଗ ସୁତ
ଖାଏ କ ସ୍ୱଚ୍ଛନ୍ଦେ ଅନ୍ନ ଗରସ ।

କେଉଁ ରଜା ଜଣେ ଗର୍ବରେ କ କ୍ଷଣେ,
'ପରଜାଏ ମୋର ପୁଅ ସମାନ',
ପରଜାଙ୍କ ହିତ ମୋ ଜୀବନ-ବ୍ରତ
ପରଜା ସୁଖେ ମୋ ସୁଖ ସମ୍ମାନ ।

"ବିନା ପ୍ରଜାଶକ୍ତି ରଜାର କ ଗତି
ରଜା ପ୍ରଜା ନୁହେ ଶ୍ୟେନ କପୋତ,
ପ୍ରଜା-ଜଳ ବିନ୍ଦୁ ମିଳ ରାଜ୍ୟ-ସିନ୍ଧୁ
ରଜା ସେ ସଲିଳେ କେବଳ ସ୍ରୋତ ।"

ପାତାଳ ସୁନ୍ଦରୀ ସଙ୍ଗୀତ ଲହରୀ
ଖେଳ ଯାଇଥିବ ପ୍ରବାହେ ତବ,
ବନବାସୀ ପ୍ରିୟ ସ୍ୱଚ୍ଛ ମଧୁମୟ
ଅଘ୍ରାଣ କଲ କ ପୁଷ୍ପ-ଆସବ ?

ବନ ଉପବନ, ଅଛୁ କ ଉଲ୍ଲାସ
ଗିରି ବନବାସୀ ସକଳ ପ୍ରାଣେ,
ରୁକ୍ଷ୍ୟ ରମ୍ୟ ମୂର୍ତ୍ତି ଜନ୍ମକ୍ରି ପ୍ରକୃତି
ସ୍ୱାଧୀନତା ମନ୍ତ୍ର କହେ କ କାନେ ?

ଝରନ୍ତି ପାହସ ସ୍ୱାଧୀନତା ବାସ
ଗିରିଶିଖେ କରିଥିବ ବିହାର,

ଜାଗ୍ର କବିତା

ଲେଖିଲ କି କାହିଁ          ରଖିଛ ଲୁଚାଇ
ସ୍ୱାଧୀନତା ଶିଖା ଦଗ୍ଧ ଅଙ୍ଗାର ।

ଅଙ୍ଗାର ମୂଳକେ          ଚଳକେ ପଲକେ
ମେଳିଥିବ ତବ ତରଙ୍ଗମାଳା,
ସେ ତରଙ୍ଗେ ଦୋଳି          କୁସୁମ ଅଞ୍ଜଳି
ଢାଳୁଥିବ ସ୍ନେହେ କାନନବାଳା ।

ଭୂମି କହୁ ଦୂର          ବିଷମ ବନ୍ଧୁର
ଫୁଟି ପଡ଼ୁଥିବ ପଥ ଶରମେ,
ଦାବାନଳ ତାପ          ଅସହ୍ୟ ଅମାପ
ଭେଦୁଥିବ ଯେବେ ପୁଣି ମରମେ ।

ଆତୁର ଅଧୀରେ          ମହାନଦୀ ନୀରେ
ପଶିଥିବ ଯାଇଁ ସନ୍ତାପ ନାଶେ,
ଗିରି ନିତମ୍ବିନୀ          ତରଙ୍ଗ-ହାସିନୀ
ଅଙ୍ଗ ଫୁଲିଥିବ ନବ ଉଲ୍ଲାସେ ।

କରି ଗତି ବକ୍ର          ରଚି ଶତଚକ୍ର
କାହିଁ କେତେ ଗଣ୍ଡେ ଗିରିସଙ୍କଟେ,
ପଶ୍ଚିମ ମୁଖରେ          ଯାଇ ଖଣ୍ଡଦୂରେ
ମିଳିଥିବ 'ଝାରଖଣ୍ଡ' ନିକଟେ ।

ମହାନଦୀ ବକ୍ଷେ          ଦ୍ୱୀପ ରମଣୀୟ
ସମ୍ବଲପୁରର ସୁଷମା ଖଣି,
ମଣ୍ଡିଥିଲା ଦିନେ          ହୀରକ ଯାହାର
ପୁରାତନ ରୋମରାଜ୍ୟ ବିପଣୀ ।

ପଡ଼ିଛି ପଶ୍ଚାତ ଏବେ ହୀରାକୁଦ
ଉପେକ୍ଷିତ ଧନହୀନ ସନ୍ତାନ,
ଧୀବର-କୁମାର ଗଣଇ ଲହରୀ
ଗାଏ କେବେ ପଦେ ଝଙ୍କୃତ ଗାନ ।

ଅଦ୍ଭୁତ ଜଙ୍ଗଲ ଶ୍ୟାମ ଶୋଭାବନ
ପ୍ରକୃତି ସହଜ ଶୋଭା ପଟଳ,
ସେ କି ମହାନଦୀ- ପୁଣ୍ୟ ତଟ-ବେଷ୍ଟି
ଥିବ ବା ନିମିଷେ ତହିଁ ନିଶ୍ଚଳ ।

ଶୀତଳ ଶୀକର ଯେଉଁ ହେ ସମୀର
କଲ କି ସମ୍ବଲପୁରେ ପ୍ରବେଶ ?
ଅବାଧ ବ୍ୟାକୁଳ ପୁରବାସୀ-କୁଳ
ହରିଥିବେ ତବ ପରଶେ କ୍ଲେଶ ।

ଅତି ପ୍ରିୟ ମୋର ସେ ସମ୍ବଲପୁର
ଅଛନ୍ତି ତ ତହିଁ ଭଲେ ସକଳ,
ଜନ୍ମ ଭାଷା ରକ୍ଷା ଧନ୍ୟ ସେ ଯେ କକ୍ଷା
ଗାଇବ ସେ ତାର ଯଶ ଉଜ୍ଜ୍ୱଳ ।

ଚମ୍ପକବରଣୀ ଶୁଦ୍ଧ ସୁହାସିନୀ
ଯହିଁ ଗୁଣବନ୍ତୀ ପୁରଅଙ୍ଗନା,
ସ୍ୱଦେଶୀ ବସନେ ସ୍ୱଦେଶୀ ଭୂଷଣେ
ଦିଶେ ସଦା ତୋର ପ୍ରୀତି-ପ୍ରସନ୍ନା

ମହାନଦୀ ନୀର ଶୀତଳ ସମୀର
ସେବନ୍ତି ସ୍ୱଚ୍ଛନ୍ଦେ ତନୟେ ଯାର,

ଅଛୁ ମୋ ବିଶ୍ୱାସ ହେବ ସେ ଅବଶ୍ୟ
ସ୍ୱାଧୀନତା ରଣେ ଦୃଢ଼ ପ୍ରାକାର ।

ସମ୍ବଲପୁରର ଶୁଭ ସମାଚାର
ଶୁଣାଅ ସଦର୍ପେ ସମୀର ତାରେ,
ଉତ୍କଳ- ଜାହ୍ନବୀ ଚିତ୍ର ମହାନଦୀ
ପୁଣ୍ୟ ଅମୃତକଣା ଆଣ ମୋ ଦ୍ୱାରେ

ତାପିତ ମୋ ହୃଦ ହେଉ ଶାନ୍ତ ମୃଦ
ଆତ୍ମୀୟ ସ୍ୱଜନ ବାରତା କହି,
ତରଙ୍ଗରେ ବହ ପୁଣ୍ୟ ଗନ୍ଧବହ
ତେଣୁ ପଥ ଚାହିଁଅଛୁ ମୁଁ ରହି ।

ମୋ ନେତ୍ର ଆଗରେ ଭିତରେ ବାହାରେ
ଦୋଳାଉଛନ୍ତି ତରୁ ଶାଖା ପଲ୍ଲବ,
କେଉଁ ଅପରାଧେ ଦୋଷୀ ତବ ପାଦେ
ନ କର ମୋଠାରେ କରୁଣା ଲବ ।

ବନ୍ଦୀ ବୋଲି ମତେ କିବା ଘୃଣା-ନେହେ
ଦେଖ କି ହେ ତେଣୁ ପାଶେ ନ ଆସ,
ଭେଦଜ୍ଞାନ ସବୁ ଲାଗେ ଅସମ୍ଭବ
ତୁମ୍ଭେ ଚରାଚର ବିଶ୍ୱ ନିଃଶ୍ୱାସ ।

ସମାଜ ନିଷ୍ଠୁର କରେ ଯାକୁ ଦୂର
ସେ ନୁହେ ପ୍ରକୃତି ପ୍ରେମ ବାହାର,
ଗଗନେ ପବନେ ଚନ୍ଦ୍ରମା ତପନେ
ଜଳେ ଫଳେ ଫୁଲେ ତା ଅଧିକାର ।

## ବନ୍ଦୀର ସ୍ୱଦେଶ ଚିନ୍ତା

ନରପତି ନର        କରେ ଅନ୍ତର
ପ୍ରକୃତି ସକଳେ ଦେଖେ ସମାନ,
ହେ ମଳୟାନିଳ        ସୁଗନ୍ଧ ଶୀତଳ
ପ୍ରବାହେ ପରଶ ମୋ ଦଗ୍‌ଧ ପ୍ରାଣ ।

କରୁଛି କୀର୍ତ୍ତନ        ସଦା ତବ ଗୁଣ
ନିଖିଳ ଜଗତ ଜୀବ-ଜୀବନ,
ଅବହେଳେ ବେଳେ        ଏଥି କାରାଗାରେ
ଛୁଇଁଯାଅ ମତେ ମୁକ୍ତପବନ ।

ଆସିଅଛ ଭ୍ରମି        କେତେ ପୁଣ୍ୟଧାମେ
ଲଗାଇ ଦିଅ ମୋ ଶିରେ ପ୍ରସାଦ,
ସେ ପୁଣ୍ୟ ପରଶେ        ଧୁଉ ଅପବାଦ
ଅପସରୁ ଦୂରୁଁ ମୋହ ପ୍ରମାଦ ।



# ବନ୍ଦୀର ସନ୍ଧ୍ୟା-ଭାବନା

ଗୋଧୂଳି ଗଗନେ ଏବେ
ଉଇଁ ପ୍ରାଚୀଦିଗ ଭାଲେ
ପ୍ରଦୋଷ ପ୍ରଥମ ତାରା
ଢାଳେ କ୍ଷୀଣ ଜ୍ୟୋତିଧାର

ଅନାଏ ସେ ମିଟି ମିଟି
ଲାଗେ କାନ୍ଥ ଆର ପାଖେ
କେତେ ଦୂରୁଁ କାରଦ୍ୱାରେ
ଲୁଚି ଯଥା ଉଙ୍କି ମାରେ ।

ତାର ସଙ୍ଗେ ମନେ ମୋର
ଫେନିଳ ତରଙ୍ଗ କେତେ
ଫୁଟେ କେତେ ଦୃଶ୍ୟରାଶି
ମନାର୍ଣ୍ଣବେ ଉଠେ ଭାସି ।

ଏକ ପରେ ଆନ ଆସେ,
ଅବିରତ ପିଟେ ମଥା
ଲାଗିଛି ଅନନ୍ତ ଖେଳା
ସନ୍ଧେ ତାରକିତ ବେଳା

ଦ୍ରୁମାଳ ବିତାନ ତଳେ
ଶ୍ୟାମଳ ପାଦପପନ୍ତି
ଚକ୍ରବାଳ ମୁକଯାଏ
ଘରେ ଦୂରେ ଶୋଭପାଏ ।



ପଡ଼ଜରେ ମାଛ ସେକି
କୂଳେ ତା ପିଲାଏ ବସି
ନୋଳିଆ ଲେଉଟି ଆସେ
ଗୀତ ଗା'ନ୍ତି ଅଟ୍ଟହାସେ ।

ପାଣିକି ଡଉଁନ୍ତି କେତେ
ଯାଉଛନ୍ତି ଆଣିବେ କୂଳେ
ଭାଙ୍ଗିବେ ଲହଡ଼ି ସାତ
ଧରି ସେଥା ବାପ ହାତ

ଧାଡ଼ ଧାଡ଼ କେରେ ପକ୍ଷୀ     ସମୁଦ୍ର ଉପର ନଭେ
ନିଜ ନିଜ ବସାମୁଖେ     ଯାଉଥାନ୍ତି କଳରବେ ।

ଦଳ ଛାଡ଼ି ଏ ପକ୍ଷୀଟି     ଥିଲା ପର ପଥ ଦୂର
ବସା ଖୋଜି ଖେଳୁ ବେଗେ     ଏକାକୀ ଯାଉଛି ଉଡ଼ି ।

ହେବ ପର ଏହା ବସା     କଦମ୍ବ ପାହାଡ଼ କୂଳେ
ଭାଙ୍ଗିବ ରହିଁ ଗତ     ସ୍ୱଚ୍ଛନ୍ଦେ ଶାବକ ଭୁଲେ ।

ଛାଡ଼ି ଗୁପ୍ତ ବୃନ୍ଦାବନ     ବକୁଳ ତମାଳ ଡାଳ
ଯିବଣି ଚଢ଼ଇ ପାଖ     ଉଡ଼ି ପକ୍ଷୀ ମାଳ ମାଳ

ଗୁପ୍ତ ବୃନ୍ଦାବନ କୁଞ୍ଜେ     ଥିବ ନାହିଁ କୋଳାହଳ
ସ୍ନିଗ୍ଧ ନବମରେ ଝୁଣ୍ଡ     ପଡ଼ିଥିବ ଫୁଲଦଳ ।

କଦମ୍ବ ଶାଖାର ଶିରେ     ଦ୍ୱିଗୁଣ ଦାବାନଳ ତେଜ
ଆଣଇ ସେ ମନେ ମୋର     ବରୁଣୀ ପାହାଡ଼ ତେଜ ।

ବରୁଣୀ ଜଙ୍ଗଲେ ଏବେ     ଲାଗିବଣି ଦାବାନଳ
ଜଳୁଥିବ ଡାଳ ଡାଳ     ଶୁଷ୍କ ତରୁ ଶାଖାଦଳ ।

ଶୃଙ୍ଖଳ ବାଉଁଶ ଗଣ୍ଡି     ଫୁଟୁଥିବ ଘନ ଘନ
ଦେଖଙ୍କା ପବନ ବେଗେ     ବଢୁଥିବ ସନ ସନ ।

ସିନ୍ଧୂର ବରଣ ଶିଖା     ରକ୍ତ ଜିଭ ଲହ ଲହ
ପରୁଷ ପବନ ଘାତେ     ଉଠୁଥିବ ଶହ ଶହ ।

ଲକ୍ଷ ଲକ୍ଷ ଅଗ୍ନି କଣା     ନଭେ ଯାଉଥିବ ଉଡ଼ି
କେତେ ତରୁ ଶୁଷ୍କ ଶାଖା     ଜଳି ପଡ଼ୁଥିବ ଛିଡ଼ି ।

ନିଦାରୁଣ ଦବାଗ୍ନିକେ     ତୋଫା ଦିଶୁଥିବ ବଣ
ଚକମକେ ଝଲୁଥିବ     ଦେବୀପାଦ ପ୍ରସ୍ରବଣ ।

ଶୁଣିଲି ପବନ ଶ୍ୱାସ    ଧାସେ ଜଳୁଥିବ ଚକେ
କାଚରେ ପଳାଉଥିବେ    ମୃତ ଶଣା ଦଳେ ଦଳେ;

ବମ୍ ମାରୁଥିବେ ଯାଇ    ଗିର ପଦୁଁ ଖଣ୍ଡ ଦୂରେ
ସମତଳ ଭୂମିପରେ    ନଷ୍ଟ ଶ୍ରେଣୀଧ୍ୱଂସପୁରେ ।

ସୁରୁଣା ନଅର ଆଦ୍ୟା    ସ୍ୱାଧୀନତା ଶେଷବର୍ତ୍ତି
ନିଷ୍ଠୁର ଜଳ୍ଲାଦ ଯନ୍ତ୍ରି    ଜଳୁଥିଲା କ୍ଷୀଣେ ଅଭି,

ଲିଭିଯାଉଛୁ ସେ ଦୀପ    ଅନ୍ଧାର କରୁଛି ଗ୍ରାସ
କୁଣ୍ଠାରେ ଉଠୁଛି ଏବେ    କଣବୁଦା ଗନ୍ଧ ଶ୍ୱାସ ।

ସେ ଅମା-ଅନ୍ଧାର କଥା    ଏ ଅନ୍ଧାର କାରାଗାରେ
କହିଁ ଭାବେ ? ଉଡ଼ିବ ପ୍ରାଣ    ଦୁଃଖ ଶୋକ ଅକୂପାରେ ।

ଲିଭିଗଲେ ଏକାବେଳେ    ମଦମ୍ଭର କ୍ଷୀଣ ଗ୍ରସ୍ୱା
ଦେଖି କଏ ସମ୍ଭାଳିବ    ଧଇ ରକ୍ତ ମାଂସ କାୟା ?

ଜପ୍ପୀ ବାଳଗୁରୁ ଆତ୍ମା    ପକାଇ ସୁଦୀର୍ଘ ଶ୍ୱାସ
ବୁଲୁଥିବ ଏବେ ଏକା    ପୁଷ୍କରିଣୀ ତଟପାଶ ।

ଜରଣା ବହ ଦରୀରେ    ଗାଉଥିବ କ୍ଷୀଣ ନାଦେ
କ ଅବା ନବୋଖି ଶୃଙ୍ଗଦ୍ୟ    କମ୍ପିଥିବ ଅବସାଦେ ।

ଗୁମ୍ଫଟିରେ କାହ୍ନ ଘଣ୍ଟା    ବାଜେ ଠଣ୍ ଠଣ୍ ଠଣ୍
ଯେ ଯାହା ନଞ୍ଜିରେ ବନ୍ଦ    ଦେଖଣ ସବେ ବନ୍ଦୀଗଣ ।

ପ୍ରତ ଖୁଆଇବା ସଂଖ୍ୟା    ଡାକେ ଜଣେ ଜଗୁଆଳି
ଲାଗିବ ଏ ଶତ୍ରୁଯୋଗ    ସଂଖ୍ୟା ସଂକୀର୍ତ୍ତନ ପାଳି ।

କାଳବଣି ମାଳାରଙ୍କେ    କେତେ ଘଣ୍ଟା ଭେଦ ଭୁଲ
ଏ ସନ୍ଧ୍ୟା ଆରମ୍ଭ ବେଳେ    ବେଡ଼ା ଉଠୁଥିବ ପୁର ।

କେହୁ କରୁଥିବେ ଜପ ପଢୁଥିବେ କେହୁ ସ୍ତୁତି
କାହିଁ ନାମ ସଂକୀର୍ତ୍ତନ ଲାଗିଥିବ ଦିବ୍ୟସ୍ଫୂର୍ତ୍ତି ।

ଉତ୍କଳର ପଲ୍ଲୀ ଗ୍ରାମେ ଏବେ ଭାଗବତ ଘରେ
ଭାଗବତ ପଦ ଦୁଆ ଉଠିବଣି ଉଚ୍ଚସ୍ୱରେ ।

ଏ ବନ୍ଧନ ଭବନେ ବନ୍ଦୀ କରୁଛି ମୁଁ ସେ ଭାବନା
ଏକାନ୍ତେ ମୁହୂର୍ତ୍ତେ ବସି କରେ ହେଲେ ଉପାସନା ।

ସ୍ମରି ଚୈତନ୍ୟ ପ୍ରଭୁ ସର୍ବ ଭୂତେ ସର୍ବ ସ୍ଥାନେ
ଗାଇବ ପରାଣେ ଶାନ୍ତ ତାଙ୍କ ପାଦପଦ୍ମ ଧ୍ୟାନେ ।

ଚଳାଇବ ହୃଦେ ଘଣ୍ଟା ଅନ୍ତରେ ପ୍ରଦୀପ ଜାଳି
ଆରତି ରଚିବ ଏଥି ପଦେ ପ୍ରେମ ପୁଷ୍ପ ଢାଳି ।

ଜୀବନ ଅର୍ପିତ ଚରମେ ସେହି ମୋର ଧ୍ରୁବତାରା
ତାଙ୍କ କଲେ ତୀର୍ଥ ମୋର ବନ୍ଧନ ଦୁଃସହ କାରା ।

ସେ ସଖା ସୋଦର ସ୍ୱାମୀ ଅନନ୍ତ ସଦା ମୋ ସାଥି
ତାଙ୍କର ଆଶ୍ରୟେ ଏବେ ପୁହାଇବ ଆଜରାତି

# କାରାଗାରେ ଜଣେ ବନ୍ଧୁଙ୍କ ବିୟୋଗବାର୍ତ୍ତା ଶୁଣିବା ପରେ *

ତରୁଣ ବୟସେ ଯେବେ ବସି ତବ ପାଶେ
ଲଭିଥିଲି ଜ୍ଞାନାଲୋକ ପ୍ରଥମ ସଞ୍ଚାର,
ସେ ଦିନୁ ଏ ଯାଏ ସବୁ ସ୍ମୃତି ମନେ ଆସେ
ଶୁଣି ଆଜ ତବ ମୃତ୍ୟୁ ଶୋକ-ସମାଚାର । ୧ ।

ଭାଗ୍ୟ ନେଲା ବାନ୍ଧି ତବ ବ୍ରତ ଅନୁକୂଳ
ଜାଣେ ମୁଁ କାଟିଛୁ କାଳ ଚିର ହାହାକାରେ
ଜୀବନର କର୍ମ-କ୍ଷେତ୍ର ସତତ ବ୍ୟାକୁଳ,
ପାଇ ନାହିଁ ସୁଖଶାନ୍ତି କ୍ଷଣେ ପରିବାରେ । ୨ ।

ଦେଖିଛି ଅନ୍ତରେ ତବ ଥିଲା ଅଗ୍ନି କଣା
ଜଳନ୍ତା ଲଗିଥିଲେ ଯଥାକାଳେ ବାୟୁ,
କୁହୁକ କୁହକ ତାହା ଲଭନ୍ତା ଅଜଣା
ନିଃଶ୍ୱାସ ଉଷ୍ମଶ୍ୱାସେ ତରଳିଲା ଆୟୁ । ୩ ।

କତାଙ୍କ ଦୃଗାଛ ସ୍ନେହ ଆଦର ବିଶ୍ୱାସ
ପୋଷିଥିଲ ଅଚଳର ଅନ୍ତରେ ମୋ ପ୍ରତି,

---

* ଗୋପବନ୍ଧୁଙ୍କ ଶିକ୍ଷାଗୁରୁ ପୁରୀବାସୀ ସ୍ୱର୍ଗୀୟ ଦିବ୍ୟସିଂହ ମିଶ୍ରଙ୍କ ପରଲୋକ ସମ୍ବାଦରେ ଲିଖିତ । ଦିବ୍ୟସିଂହ ମିଶ୍ର ବି. ଏ. ପାଶ କରି ପୁରୀ ଜିଲ୍ଲା ସ୍କୁଲ ସହକାରୀ ଶିକ୍ଷକ ଥିଲେ । ସେତେବେଳେ ଏ ସ୍କୁଲରେ ବି. ଏ. ପାଶ କରିଥିବା ଓଡ଼ିଆ ଶିକ୍ଷକ ଏକମାତ୍ର ସେହି ଥିଲେ ।

ଜୀବନରେ ଜଣେ ବନ୍ଧୁଙ୍କ ବିୟୋଗବାର୍ତ୍ତା ଶୁଣିବା ପରେ

ଅନ୍ତିମ ମୃତ୍ୟୁରେ ମୋର ଦୂର କାରାବାସ
ସ୍ମରି ମରମେ ବ୍ୟଥା ପାଉଥିବ ଅତି । ୪ ।

ଦେଲ ମୋର କାରାଦଣ୍ଡ ଯେବେ ପଡ଼େ ମନେ
ଛୁଟା ହୋଇଥିଲ ଆସି ଦରବାର ଦ୍ୱାରେ,
ଛଳଛଳ କରି ସ୍ନେହ ଲୋତକ ନୟନେ
ରୁଦ୍ଧକଣ୍ଠେ ଆଶିଷିଲ ମୋର ନମସ୍କାରେ । ୫ ।

ଫେରି ଏଥୁଁ କହିଥାନ୍ତି ପୁଣି ନମସ୍କାର
କହିଥାନ୍ତି ଫେଡ଼ି ମୋର କାରା ଅନୁଭବ,
କ୍ରୂର କାଳ ଲଗାଇଲ ଛଟେ ମୋର ଆଶ
ଘଟାଇଲ ଏ ଦାରୁଣ ଶୋକ ଅଭିନବ । ୬ ।

ଆସୁ ଆସୁ ଆସି ମନେ ଯେତେ ଯେତେ ଦୁଃଖ
କରୁଛୁ ଏ ହୃଦୟ ମୁଁ ପାଷାଣୁଁ କଠିନ,
ଆତ୍ମୀୟସ୍ୱଜନ ଆଡ଼ୁ ଫେରାଇଣ ମୁଖ
ଅନ୍ଧକାର କାରାକକ୍ଷେ ପଶିଲ ଯେ ଦିନ । ୭ ।

ମୋ କାର୍ଯ୍ୟେ ମମତା ସଦା ଥିଲା ତବ ପ୍ରାଣେ
ମୋ ବିପଦେ ଭୋଗୁଥିଲ ସ୍ୱଜନ ବେଦନା
ନ ଗଲ ଶ୍ମଶାନ ଯାଏ ଅନ୍ତିମ ପ୍ରୟାଣେ
ଚିରଦିନ ରହିଲା ଏ ଚିତ୍ତର ଶୋଚନା । ୮ ।

ରହିବ ଏପରି କେତେ ଶୋଚନା ସଞ୍ଚିତ
ଶୈଶବୁଁ ବିୟୋଗ ଦୁଃଖ ଗଢ଼ା ଏ ଜୀବନ,
ଜାଗିଲେ ସେ ସ୍ମୃତି ଚିତ୍ତ ହୁଏ ବିଚଳିତ
ଭସେ ଆଖି ଅଶ୍ରୁ ନୀରେ ଅଙ୍ଗ ଅବସନ୍ନ । ୯ ।

ଦେଖି ନାହିଁ ମାତୃମୁଖ ଅଜ୍ଞାନ ଶୈଶବେ
ପିତା ପୁତ୍ର ପତ୍ନୀ ବନ୍ଧୁ ବିୟୋଗ ବିଘାତ;
ବାର ବାର ତଡ଼େମଲି ଶୋକ-ମହାର୍ଣ୍ଣବେ
ବୁଡ଼ାଇ ଦେଇଛି ବୁକେ ଖାଇ କଷାଘାତ । ୧୦ ।

ବିରହ ବିଷାଦ ବକ୍ଷେ ରସାଣିତ ଧାର
ଛୁରି କାଳ ବାର ବାର ଖଣ୍ଡନ କରିବାକେ,
କରିଛି ଏ ବକ୍ଷେ ମୋର ଦାରୁଣ ପ୍ରହାର
କୁଣ୍ଠିତ ଟିଶଳ ଗୁପ୍ତ ମାଡ଼ିଛି ତମୋ ଭିଲେ । ୧୧ ।

ଅଜନ୍ତ ବୟସେ ମୋର ବହୁ ଅନୁଭବ
ହୃଦ ନକ୍ଷତ୍ରିତ ମୋର ବିରହ କଷଣେ,
ଛୁଟିଛି ମୋ କଳ୍ପନାର ବିଳାସ ବୈଭବ
ଦେଖେ ମୁଁ ଜୀବନଗତି ବାସ୍ତବ-ନୟନେ । ୧୨ ।

ତୃଣ ଖଣ୍ଡ ଯଥା ମହାସାଗର ତରଙ୍ଗେ
ଭସିଆସି କ୍ଷଣେ ମିଳି ହୁଏ ଅନ୍ତରେ
ପିତା ପୁତ୍ର ପତି ପତ୍ନୀ ମିଳି ଏକ ସଙ୍ଗେ
କାଳ-ସ୍ରୋତେ କାହିଁ ପୁଣି ଚଳନ୍ତି ଭାସିତ । ୧୩ ।

ଏହି କି ପ୍ରଣୟ ଗତି, ଏହି ପରିଣାମ ?
ଅପାର ଜୀବନ ସ୍ରୋତେ ମୁହୂର୍ତ୍ତ ମିଳନ ?
ଭେଟ ସ୍ଥାନ ଏକମାତ୍ର କ୍ଷୁଦ୍ର ଧରାଧାମ ?
ତେବେ କାହିଁ ଏ ମମତା, ଏତେ ଆୟୋଜନ ?

ଖେଳ ତୃଣ ବାରେ ଯେବେ ଭେଟି ପରସ୍ପରେ
ଅନନ୍ତ ଭ୍ରମଣ ପଥେ କରନ୍ତି ଗମନ,

କେ ଜାଣେ ନ ଦେବ ବୋଲି ଭେଟ ଆଉ ଥରେ
ତୁଟେ ନାହିଁ କାହିଁ ସ୍ମୃତି ମମତା ବନ୍ଧନ । ୧୫ ।

ଚିତାନଳେ ଭସ୍ମ ନୁହେ ସେନେହ ବନ୍ଧନ
ଶ୍ମଶାନ ନୁହେ ଏ ଜୀବ ଶେଷ ପରିସୀମା,
କେବେ କାହିଁ ଦେବ ଜନ୍ମେ ଶୁଭ ସମ୍ମିଳନ
ପ୍ରକାଶିବ ପ୍ରାଣେ ପୂର୍ଣ୍ଣ ପୁଣ୍ୟ-ମାଧୁରିମା । ୧୬ ।

ସୁଖ ଦୁଃଖ ତେଣୁ ମୋର ସମ ସହଚର
ଜନମେ ମରଣେ ନାହିଁ ହରଷ ବିଷାଦ,
ଆହ୍ଲାଦେ ଆପଦେ ମୋର ସମାନ ଆଦର
ସବୁ ଶୁଭ ବିଧାତାଙ୍କ ଶୁଭ ଆଶୀର୍ବାଦ । ୧୭ ।

ଏ ବିଶ୍ୱାସେ କାଟେ ମୋର ପୁଣ୍ୟ ତପୋବନ
ଆତ୍ମୀୟ ବନ୍ଧୁର ପ୍ରାଣେ ଅପୂର୍ବ ଉନ୍ମେଷ
କ୍ରମେ ଯେ ନିକଟେ ମୋର ଆସିଛି ମରଣ
ରହିଅଛି ବହୁ କାର୍ଯ୍ୟ ଏବେ ଅବଶେଷ । ୧୮ ।



# ଦେଖାଦିଅ ବାରେ

ଚଉଦିଗ ମୋରେ ଘୋଟେ ଅନ୍ଧକାର
ଲାଗେ ଏ ଜୀବନ ଅତି ଗୁରୁଭାର
ନୟଣା ବିଶ୍ୱାସ ବଢେ ଅନ୍ୱେଷଣ
କରିବ କି ପ୍ରତିକାର ? । ୧ ।

କାହିଁ ମୋର ସେହି ପ୍ରାଣ ପ୍ରେମଧାର
କାହିଁ ମୋର ସୁଧାମୟ ହୃଦହାର
ଦିଅ ଦେଖାବାରେ ଏ ଘୋର ଅନ୍ଧାରେ
ଦେଖି ମୁଁ କି ନାରଖାର ! । ୨ ।

ଢଳାଅ ମୋ ଅଙ୍ଗେ ଅମିୟ ଅଙ୍ଗୁଳି
ଦିଅ ଶିରେ ମୋର ପୁଣ୍ୟ ପଦଧୂଳି
ବଜାଅ ସେ ବୀଣା ମୃତ୍ୟୁ ଉପୁଜଣା
ଉଠୁ ପ୍ରାଣ ମୋ ଉଚ୍ଛୁଳି । ୩ ।

ଲୁଚି ନାହିଁ ପୁଣି ଏବେ ମୋ ଚେତନା
ଲୋଡ଼େ ଏ ପରାଣ ସେନେହ ସାନ୍ତ୍ୱନା
ଅଳପ ଆଶାରେ ଅନାଅ ଏ ଅଙ୍ଗେ
ଆୟୁ ଆଶା ଆଶ୍ୱାସନା । ୪ ।

ମଧୁର ମୁରଲୀ ବିମୋହନ ତାନ
ଶୁଣାଅ, ପୁଲକ ଉଠିବ ପରାଣ
ଆଶୁ ଉପସ୍ବର କରଦେ ବିସ୍ବର
ଥାଉଁ ଥାଉଁ ମୋର ଜ୍ଞାନ ।୫।

ଉଠୁପଛେ ତାନେ ଦୁଃଖମୟ ଗୀତି
ଦୁଃଖଗଢ଼ା ପ୍ରାଣ ପାଉ ଦୁଃଖେ ପ୍ରୀତି
ଦୁଃଖେ ସୁଖେ ମୋର ସମାନ ଆଦର
ଦାଅ, ବେଳ ଯାଏ ବିତ ।୬।



# ପ୍ରେମର କି ଏହି ପରିଣାମ ?

ତରଳ ତରୁଣେ ଦୁଇ ହୃଦ ଢଳଢଳ
ମିଶିଲା ସହଜେ ଯଥା ଜଳ ସଙ୍ଗେ ଜଳ ।

କୋମଳ କୈଶୋରେ ଯାହା ହେଲା ଗାଢ଼ତର
ସହେ ନାହିଁ ପ୍ରାଣ, ହେଲେ ମୁହୂର୍ତ୍ତେ ଅନ୍ତର

ଆହାର ଭୋଜନ ନିଦ୍ରା ସ୍ନାହାନ ଆଳାପ
ଗାନ ଧାନ ଅଧ୍ୟୟନ ସୁହାସ ବିଳାପ ।

ଜୀବନର ବୃତ୍ତି କାର୍ଯ୍ୟ ଯଥା ଏକ କଲେ
ଅନୁକ୍ଷଣେ ଏକ ଭାବେ ଦୁଇ ତନୁ ଚଳେ ।

ଏକ ହୃଦେ ଲାଗେ ଯେବେ ଦୁଃଖ ଦାରୁ ଘାତ
ସଙ୍ଗେ ସଙ୍ଗେ ଆନ ନେତ୍ରୁ ହୁଏ ଅଶ୍ରୁ ପାତ ।

ଦୁଇ ପିଣ୍ଡେ ଏକ ଆତ୍ମା ଏକ ମନ ପ୍ରାଣ
ଦୁଇ ହୃଦେ ଏକ ଛନ୍ଦେ ବାଜେ ସମତାନ ।

ସେ ମୋହନ ଛନ୍ଦେ ସୃଷ୍ଟି ଛିଦ୍ର ଥିଲା କାହିଁ
ସ୍ୱପ୍ନେ ହେଲେ କେହି କେବେ ମନେ ଭାବି ନାହିଁ ।

ସ୍ପୃହୁଁ ରହୁଁ ବରୁ ବାଧା ହେଲା ଦୁଇ ଭାଗ
ନାହିଁ ଆଉ ତାନ ଲୟ ନାହିଁ ଗୀତ ରାଗ ।

ଉପୁଜିଲା ଅଲକ୍ଷିତେ କାହୁଁ ଅନ୍ତରାୟ
ସ୍ୱାର୍ଥ ଚାପେ ଛିଣ୍ଡାଇଲା ପ୍ରୀତି-ପଦ୍ମ-ସିନ୍ଧୁ ।

ସଂହତ ଶ୍ୟାମଳ ସ୍ନିଗ୍ଧ ଶୈଳଗର୍ଭେ ଲୁପ୍ତ,
ଥିଲା ଶିଳା ଭେଦକ୍ଷମ ସୂକ୍ଷ୍ମ ବଜ୍ର ସୂତ୍ର ।

## ପ୍ରେମର କି ଏହି ପରିଣାମ ?

ଅକସ୍ମାତେ ବିଦାରିଲା ଶୈଳ ଶିଖର
ଏକ ଶୃଙ୍ଗ ଦ୍ୱିଧା ଏବେ ଯୋଜନ ଅନ୍ତର

ମନ୍ଧ କହେ ଖ୍ରୀମବେଗେ ଝଶାକ ପ୍ରପାତ
ଘଟିବ କି ଆଜ ସନ୍ଥ ଦେବଙ୍କ ସାକ୍ଷାତ ?

ନଶ୍ୱର ଜଗତେ କି ଏହି ଜୀବନର ଗତି,
କ୍ଷଣଭଙ୍ଗୁର କି ନର ପ୍ରଣୟ ପୀରତି ?

କଣ୍ଟକସଙ୍କୁଳ ପଥେ କୁସୁମ ବିତାନ
ମରୁଭୂମେ ପ୍ରେମ ସ୍ନିଗ୍ଧ ସଲିଳ ସମାନ ।

ନରପିଣ୍ଡେ ପ୍ରେମ ଏକ ଅମର ସଞ୍ଚାର,
ପାର୍ଥିବ ଜଗତେ ପ୍ରେମ ସ୍ୱର୍ଗ ସୁଧାକର ।

ପ୍ରେମର ଏ ପ୍ରଶସ୍ତି କି କବି କଳପନା,
ପ୍ରେମ କି କେବଳ ମାତ୍ର ସ୍ୱାର୍ଥର ଛଳନା ?

କିଶୋରେ ଉପୁଜେ ପ୍ରେମ ମିଳି ପ୍ରାଣେ ପ୍ରାଣ
ଉତ୍ତର ବୟସେ ତାର ଏହି ପରିଣାମ ?

ଯୌବନ ସରସ ଭାବ ହୃଦୟ ପ୍ରସାର
ପ୍ରବୀଣ ଦୃଷ୍ଟିରେ ଘୋର ମସ୍ତିଷ୍କ ବିକାର ?

ଜୀବନର ପଦେ ପଦେ କାହିଁ ଏତେ ମେଳ
ନୁହେ ପର ଏ ଜୀବନ ବୃଥା ଶିଶୁ ଖେଳ ?

ଧିକ ଧିକ୍ ଶତ ଧିକ୍ ପୌଢ଼ ପ୍ରବୀଣତା,
ନାଶେ ଯେ ମାନବ ହୃଦ ସ୍ନେହ ସରଳତା ।

ଗର୍ବ ଅହଙ୍କାରେ ଯାର ପୀରତି ପିଣ୍ଡିତ
ଆକୁଳ ପ୍ରାଣେ ଯେ ଗାଏ ପୁଣ୍ୟ ପ୍ରେମ-ଗୀତ,

ଭାଗ୍ୟ-ଲଢ଼ତା

ବନ୍ଧୁପାଏ ଦୂରେ ଯାଉ ବଶ୍ୟ ପ୍ରେମିକତା
ଈର୍ଷାନଳେ ଜଳେ ଆଦ୍ୟ ନକଣ୍ଠ ମମତା,

ଶୈଶବ ଉଦ୍ଦେଶ୍ୟହୀନ ସ୍ୱଚ୍ଛନ୍ଦ ସରଳ
ତରୁଣ ଉନ୍ମୁକ୍ତ ରମ୍ୟ କୋମଳ ତରଳ ।

ପ୍ରେମ-ପୁଲକିତ ନବ ମଧୁର ଯୌବନ,
ସବଥାନ୍ତା ଏଥି ହେଲେ ମାନବ ଜୀବନ ।

ରହିବ କି ଚିରଦିନ ଯୋଜନ ଅନ୍ତର ?
ବହିବ କି ଚିରଦିନ ଅତଳ ସାଗର ?

ଶୁଖିବ ନାହିଁ କି ସିନ୍ଧୁ ନିଦାଘ କିରଣେ ?
ଘନିବ ନାହିଁ କି ଶୀତ ତମ ଆବରଣେ ?

ନିର୍ମଳ ଶରଦ ଶଶୀ ଶୀତଳ କିରଣ
ମଧୁର ବସନ୍ତ ମୃଦୁମନ୍ଦ ସମୀରଣ,

ହରିବ ନାହିଁ କି କେବେ ଦାରୁଣ ବେଦନା ?
ଘଟିବ ନାହିଁ କି ଆଉ ଯୁଗଳ ଯୋଜନା

ତୁଟିବ ନାହିଁ କି କେବେ ହୃଦପୁରୁ ଦାଗ,
ଫାଟିବ ନାହିଁ କି ପୁଣି ପୂର୍ବ ଅନୁରାଗ ?

ଲଭି ଯେ ବୁକୁରେ ଶିର ଗୁହିଁ ଆନ ମୁଖେ
ଶୋଇଥିଲୁ କୁତୂହଳେ ଏକ ମନ ସୁଖେ ।

ଯେତେଯେତେ କଥା ଅଛି ସେ ବୁକୁ ଭିତରେ
ଫିଟିବ ନାହିଁ କି ତାହା କେବେ ଏକାନ୍ତରେ ?

ଏକଲୁ ଅନାଇ ଆନ ନେତ୍ର ଅଶ୍ରୁଧାର
ବନ୍ଧିବ ନାହିଁ କି ଭେଦ ହୃଦୟ-ଦୁଆର ?

### ପ୍ରେମର କି ଏହି ପରିଣାମ ?

“ତୁ ଛାଡ଼ିଲେ ମୁଁ ତ ତଳେ ନ ଛାଡ଼ିବ କ୍ଷଣେ”
କହିବ କି ଏକ ଥାନେ ଇଙ୍ଗିତ ଈକ୍ଷଣେ ?

ମାରିବ ଆଳାପେ କହି ମରମ ଭାଷଣ
କରିବ ନାହିଁ କି ଏକ ଥାନେ ଆଲିଙ୍ଗନ ?

ବିକଶିବ ପ୍ରେମ ତେବେ ଅଭିନବ ରାଗେ
ଯୁଗଳ କମଳ କଳି ଫୁଟିବ ସରାଗେ ।

ବିଚ୍ଛେଦେ ବିନାଶ ପ୍ରେମ ଅନ୍ତ ମଧ୍ୟମସ୍ତୁ
ଶୀତ ଅନ୍ତେ ଶୋଭେ ଯିନା ନବ କିଶଳସ୍ତୁ ।



# ବିଶ୍ୱର ମିଳନ ଚିତ୍ର

କାହିଁ ତପନ କେତେ ଦୂର ଅମ୍ବରେ
କାହିଁ ନଳିନୀ ତଳେ ଫୁଟଇ ସରେ,
ଉଇଁବା ମାତ୍ରେ ରବି କର ବଢ଼ାଇ
ନଳିନୀ ଅଙ୍ଗେ ଦିଏ ଅଙ୍ଗ ଲଗାଇ ।୧।

କାହିଁ ସୁନୀଳ ନଭେ ବସିଛି ଇନ୍ଦୁ
କାହିଁ ଧରଣୀ ତଳେ ସୁନୀଳ ସିନ୍ଧୁ,
ପ୍ରେମେ ଲହରୀ ବାହା ଖେଳି ଉଲ୍ଲାସେ
ସୁଧାଂଶୁ ସୁଧାମୟ କର ପରଶେ ।୨।

ସଞ୍ଚରେ ବାୟୁ କାହିଁ ଅନନ୍ତ ପଥେ
ନ ଭୁଲେ ପ୍ରୀତି ଗିରିଗୁହା ସଙ୍ଗତେ,
ନ କରି ଦିନ ବାର ଋତୁ ବାରଣ
ଦରୀ ସୁନ୍ଦରୀ ମୁଖ ଚୁମ୍ବେ ପବନ ।୩।

ନୀରଦ ଆଲିଙ୍ଗନେ ସଦା ସ୍ନେହରେ
ସ୍ଥାପଇ ଚପଳାକୁ ନିଜ ଦେହରେ,
କଳା ହେଲେହେଁ ମେଘ ପ୍ରେମ ପୁଲକେ
ସ୍ଥିରୁ ଚପଳା ଚୁମ୍ବେ ପଲ ପଲକେ ।୪।

ବିସ୍ତାରି ଶାଖା ଭୁଜ ତରୁ ସୁବେଶେ
ଲଳିତ ଲତା ତନୁ ପ୍ରେମେ ଆଶ୍ଳେଷେ,
ନ ଛାଡ଼େ ତରୁ ସଙ୍ଗ କେବେ ବ୍ରତତୀ
ସର୍ବାଙ୍ଗ ସମ୍ମୁଖେ ଚୁମ୍ବଇ ଦଣ୍ଡି ।୫।

କଠିନ ଗିରିବକ୍ଷେ ଚୁମ୍ବେ ଝରଣା
ଅଙ୍ଗରେ ଅଙ୍ଗ ନନ୍ଦ ଶୁଭ୍ରବରଣା,
ସହେ ଶଇଳ ତାର ପ୍ରପାତ ଭାର
ସାଦରେ ଧରା ଯେହ୍ନେ ଗଳାର ହାର । ୬ ।

ଲଙ୍ଘି ସଂକେତ କଣ୍ଟ ପଥ ଦୁର୍ଗମ
ପ୍ରେମେ ଉନ୍ମୁକ୍ତ ଲଭେ ସିନ୍ଧୁ ସଙ୍ଗମ,
ଚୁମ୍ବିଲେ ସିନ୍ଧୁ ନୀର ବଶୀକ ବାହୁ
ଗାଢ଼ ଆଶ୍ଳେଷେ ଦୃଶ୍ୟ ନ ହୁଏ ଆଉ । ୭ ।

ଭୁଲି ସାଗର ନିଜ ମହତପଣ,
ପ୍ରେମ ଉନ୍ମାଦେ ଚୁମ୍ବେ ବେଳା ଚରଣ,
ମର୍ଯ୍ୟାଦା ଭୁଲି ମନା କରଇ ବେଳା
ଲାଗିଛି ଅନୁକ୍ଷଣ ଏ ପ୍ରୀତିଖେଳା । ୮ ।

ଚୁମ୍ବ କଠିନ ଲୌହ କଠିନ ଶିଳା
ଜଗତେ କି ବିଚିତ୍ର ଏ ପ୍ରେମ ଲୀଳା
ଚୁମ୍ବନ ଆଲିଙ୍ଗନ ପୀରତି ଝିସ୍ପା
କ୍ଷଣକେ ତରଳାଏ ପାଷାଣ ହିଆ । ୯ ।

ଶୂନ୍ୟ ସଂସାର ମୋର ଶୂନ୍ୟ ସଦନ
ଚୁମ୍ବନ ଆଲିଙ୍ଗନ ମନେ ସ୍ୱପନ,
କିଏ ବା ଦେବ ନେବ ପ୍ରେମ-ପୀୟୂଷ
ମରିବ ହାହାକାର ପିବ ଅପୂଷ ? । ୧୦ ।

ମିଳିବ ନାହିଁ କି ସେ ପୀରତି ସୁଧା
ମୋ ଲାଗି ଶୁଷ୍କ କିଏ ବିଶ୍ୱ-ବସୁଧା ?
ଆଦର ଆଲିଙ୍ଗନ ଗୃହ ଚୁମ୍ବନ
ଦେବ ନାହିଁ କି ପ୍ରାଣେ ପୂର୍ଣ୍ଣ ପ୍ରେରଣ ?

ଜାଣେ ଅଛନ୍ତି ମୋର ପରାଣ ପତି
ସୁନ୍ଦର ସତ୍ୟ ଶିବ ଜଗତପତି,
ରହିଛି ନିତି ତାଙ୍କ ବାଟ ଅନାଇ
ହୃଦ-ପଲଙ୍କେ ଫୁଲଶେଯ ସଜାଇ । ୧୨ ।

ଦେଖିବ ଥରେ ଯେବେ ପରାଣନାହା
ଛୁଡ଼ିବ ନାହିଁ ଭିଡ଼ି ଧରିବ ବାହା,
ବହିବ ମନ ଭରି ଚିର ଆଶ୍ଳେଷ
ପୂରିବ ପ୍ରାଣ ପ୍ରାସ ହରିବ କ୍ଳେଶ । ୧୩ ।

ମିଶେ ସରିତ ଯଥା ମହାସାଗରେ
ଜଡ଼େ ବଲ୍ଲରୀ ଯଥା ତରୁ ଅଙ୍ଗରେ,
ଘନ ନୀରଦେ ଯଥା ଖେଳେ ଚପଳା
ନିର୍ଝର ଧାରା ଯଥା ଗିରି ମେଖଳା । ୧୪ ।

ନାଚେ ଲହରୀ ଯଥା ଶଶୀ ପରଶେ
ନଳିନୀ ଯଥା ରବିକରେ ହରଷେ,
ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ
ନାଚିବ ବିଶ୍ୱପ୍ରେମେ ପରମାନନ୍ଦେ । ୧୫ ।

ଗିରି ସାଗର ନଦୀ ତପନ ଶଶୀ
ସର୍ବେ ଚୁମ୍ବିବେ ମୋତେ ପ୍ରେମେ ପରଶି,
ମୋ ପ୍ରାଣ ପ୍ରେମଧାରେ ଭାସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମ ପସରା । ୧୬ ।



# ବନ୍ଦୀର ଆତ୍ମକଥା

( ୧ )

"ଦେଶବାସୀ ବନ୍ଧୁ ଅଭୀଷ୍ଟ ସୋଦର
କାରାଦଣ୍ଡେ ମୋର ହେଲ କି କାତର ?
ଥିଲା ଏହା ଆଗୁ ଜଣାଶୁଣା କଥା,
ସେଥିପାଇଁ ତେବେ କପାଁ ମନେ ବ୍ୟଥା ?
କାତରତା ସିନା କାପୁରୁଷ ପଣ,
ବୀର ମାରେ ଅବା ମରେ କରି ରଣ ।
ପଛଘୁଞ୍ଚା ନାହିଁ ବୀରର ଜାତକେ,
ନ ମରେ ସେ କେଭେଁ ପରାଣ ଆତଙ୍କେ ।
ଜାଣିଛୁ ଲାଗିଛୁ ଏ ଶାନ୍ତି-ସମର,
ନାହିଁ ଏଥି ତୋପ ହାତହତିଆର ।
ବଳ ବା ବିଭବ ନାହିଁ ଏଥି ଲୋଡ଼ା,
ନାହିଁ ଲୋଡ଼ା ଯାନ ରଥ ହାତୀ ଘୋଡ଼ା ।
ଆଧ୍ୟାତ୍ମିକ ବଳେ ଲାଗିଛୁ ଲଢ଼ାଇ,
ଭାଙ୍ଗିବାକୁ ପଶୁବଳର ବଡ଼ାଇ ।
ଛାଡ଼ି ଧନ-ଆଶା ଘରଦ୍ୱାର-ମାୟା
ଅସଙ୍ଗଶସ୍ତ୍ରେ ଯେ ସାଜିଅଛି କାୟା,
ଅହିଂସା-ବଳରେ ଯେହୁ ବଳୀୟାନ,
ଏ ରଣପ୍ରାଙ୍ଗଣେ ତା'ର ଏକା ସ୍ଥାନ ।

ଏଥିରେ ପ୍ରଥମ ଫଳ କାରାଦଣ୍ଡ,
ପଛେ ହୋଇପାରେ ଦେହ ଖଣ୍ଡ ଖଣ୍ଡ;

ବୁଝି ଏହା ମୁହିଁ ପଶିଛୁ ସଂଗ୍ରାମେ,
ନାହିଁ ମୋ ଭରସା ମାନ ଅପମାନେ।

କିନ୍ତୁ ମୋର ଦେହ ଏ ଦେଶମାଟିରେ
ଦେଶବାସୀ ଗୁଡ଼ାଯାଆନ୍ତୁ ପିଠିରେ।

ଦେଶର ସ୍ୱରାଜ୍ୟ-ପନ୍ଥ ଯେତେ ଗାଡ଼
ପୂରୁ ତହିଁ ପଡ଼ ମୋର ମାଂସ ହାଡ଼।

ସ୍ୱାଧୀନତା-ପଥେ ଭଲେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର।

ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା।" ।୧୬

( ୨ )

"ହେ ଉତ୍କଳବାସୀ ମୋ ଭାଇ ଭଉଣି,
ମୋ ଦଣ୍ଡ-ବାରତା ସବେ ଥିବ ଶୁଣି।

ଶୁଣି କି ହେ ମନେ କରୁଛ ଶୋଚନା ?
ଶୋଚନା କାହିଁ ? ଏ ମୋ କର୍ମ ରଚନା

କହୁଥିଲି ସବୁ ବୁଲି ଗ୍ରାମ ଗ୍ରାମ,
'ଦେଶ ପାଇଁ ଦଶ ପାଇଁ କର କାମ,

ମିଳେ ଯଦି କାହା ଭାଗ୍ୟେ କାରାବାସ,
କାର ନୂତନ ସେ ପରମ ପ୍ରକାଶ ।'

ଆସି ଏଥି ବୁଝା ଏବେ ମୋ ବସ୍ତର
ଏ ଜାତୀୟ-ମୁକ୍ତି ସ୍ୱରଗ ଦୁଆର ।

ଘରକେ ଭୋଗୁଛୁ ବସି କାରାବାସ
ବନ୍ଧୁଁ ଗୃହୁଁ ଏବେ ଗଲ ବୃଥାମାସ ।

ଏହିପରି ଗଲେ ଚଉବିଂଶ ମାସ
ଫିଟିବ ମୋହର ବନ୍ଧ ନାଗଫାଶ ।

ବରଷାରେ ମହାନଦୀ-ସୋତ ପ୍ରାୟେ
ଦିନ ପରେ ଦିନ କେଡ଼େ ବେଗେ ଯାଏ ।

କାଲି ପରା ମୋର ପୂରବ ମିଆଦ,
ଦିଅ ଭାଇ ମୋତେ ଏହି ଆଶୀର୍ବାଦ—

ମୁକୁଳି ବନ୍ଦିଗଣ ଚେତେ ନବ ବଳେ
ଖଟେ ଯାଇ ପୁଣି ଭୂମି ପାଦତଳେ ।

ପୂର୍ବ ପୁରୁଷର ପରମ ଶ୍ମଶାନ
ଦେଶର ଜାତିର ଗଉରବ ଗାନ ।

ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁକ୍ଷୟ,

ମାନବ ଜନମ ହୁଅଇ ସଫଳ
ଏ ମହାଆଶା କରୁଛି କି ଉଜ୍ଜ୍ୱଳ ?

ଜାଗନ୍ତୁ ମମତା ବିଶ୍ୱଜନ-ପ୍ରୀତି,
ଉତ୍କଳବାସୀର ହେଉ ଏହା ନୀତି,
ନୀରବ ନିସ୍ତେଜ ବସି ବନ୍ଦୀଘରେ,
ମାଗେ ଏଣୁ ଭିକ୍ଷା ପ୍ରଭୁ ଶ୍ରୀ ପଦୁରେ ।” । ୧୫ ।

( ୩ )

"ମୋ ଭାଇ ଭଉଣୀ ହେ ଉତ୍କଳବାସି,
ସ୍ୱରାଜ୍ୟ-ସାଧନେ ନ ହୁଅ ଉଦାସୀ ।

ଯେ ଆଶାରେ ଥରେ କରିଛ ବିଶ୍ୱାସ,
ନ ଛାଡ ତା ଥିବା ଯାଏଁ ନିଃଶ୍ୱାସ ।

ସ୍ୱରାଜ୍ୟ ମାନବ ଜନ୍ମ ଅଧିକାର,
ଏହା ବିନେ ଦେଶ ହୁଏ ଛାରଖାର ।
ଅଙ୍ଗେ ନିଭାଉଛ କେତେ କି ଅବସ୍ଥା,
ଅନ୍ନ ବସ୍ତ୍ର ଆଜ ହେବ କି ହେ ଶସ୍ତା ?

ବନ୍ଦୋବସ୍ତ ପରେ ଆସେ ବନ୍ଦୋବସ୍ତ,
ପ୍ରଜାକୂଳ କ୍ରମେ ହେଲେଣି ଅସ୍ତ ।
କେତେ ମାସେ କେତେ ପ୍ରକାରରେ କର,
ଦେଇ ପ୍ରଜାଙ୍କର ଭାଙ୍ଗିଲାଣି ଘର ।
ଟାଇବା ବାସନ ହେଉଛି ନିଲାମ,
ତେବେ ହେଲେ ନାହିଁ କରମ ବିରାମ ।

ସହୁ ନାନା ଦୁଃଖ ଯାତନା ସହୁଛ,
ନାହିଁ ଆଉ ତୁମ୍ଭ ଶରୀରେ ରକତ ।

ଜାଣେ ମୁଁ କରୁଛ ନାନା ଅଭ୍ର ଖିନ୍ତ,
ଉତ୍ରାଇ ଶାସିବା ସ୍ଥାନ ରାଜନୀତି ।"

"ରହିବ ନାହିଁ ଏ ନୀତି କାଳେ କାଳେ,
ନାଶଯିବ ସତ୍ୟ-ନ୍ୟାୟ କରବାଳେ ।

ପ୍ରଜା ଲାଗି କଲେ ପ୍ରଜାପତି ସୃଷ୍ଟି,
ପ୍ରଜା ଲାଗି ଇନ୍ଦ୍ର କରେ ଜଳ ବୃଷ୍ଟି ।

ପ୍ରଜା ଲାଗି ଉଦେ ରବି ଶଶୀ ତାରା,
ପ୍ରଜା ଲାଗି ବହେ ଶତ ନଦୀଧାରା

ପ୍ରଜା ଲାଗି ରାଜ୍ୟ, ପ୍ରଜାର ଶାସନ,
ଯୁଗେ ଯୁଗେ ଏହା ଶାସ୍ତ୍ରର କଥନ ।

ଭାରତର ରାଜଧର୍ମ ସନାତନ—
ପରଜା ରକ୍ଷଣ ପାଳନ ରଞ୍ଜନ ।

ସ୍ୱରାଜ୍ୟ ଏ ନୀତି ହୋଇବ ପ୍ରଚୁର,
ନ ରହିବ ଆଉ ଦୁଃଖ ଦୁରାଚୁର ।

ନ ସହିବ କଷ୍ଟ କେହି ଅନାହାରେ,
ନ ମରିବ ଦୁଃଖୀ ଧନୀଙ୍କ ପ୍ରହାରେ ।

ଡରାଇ ଶାସିବା ମନ୍ତ୍ର ଭାଙ୍ଗିଯିବ,
ପ୍ରଜାଙ୍କ ମତରେ ଶାସନ ଚାଲିବ ।

ଏହି ନବ ଯୁଗ ଆଣିବା ସକାଶେ,
ଗାନ୍ଧି ରହିଛନ୍ତି ସିନା କାରାବାସେ ।

ଭାରତର କେତେ କେତେ ମହାଜନ
ବନ୍ଦୀଶାଳେ ଏବେ କଟାନ୍ତି ଜୀବନ ।

ମୁଁ ଅତି ସାମାନ୍ୟ ତାଙ୍କ ଅନୁଚର,
ତୁମ ଅକିଞ୍ଚନ ଆତ୍ମୀୟ ସୋଦର ।

ଉତ୍କଳମାତାର ଅଜ୍ଞ ସ୍ନେହସୁତ—
ସଙ୍ଗେ କାରାଗାରେ କଲି ପିଣ୍ଡ ପୂତ ।

ବସି ଏଥି ସଦା ରହିଛୁ ଅନାଇଁ
କାରାଗାର ଛିଦ୍ରେ ତୁମ ଆଡ଼େ ଭାଇ !

ଅରଟ ଚଳାଅ ପ୍ରତି ଘରେ ଘରେ,
ଗ୍ରାମର କଳହ ତୁଟାଅ ଗ୍ରାମରେ ।

ଚାଲ ସତ୍ୟପଥେ ନାହିଁ ଡର ଭୟ,
ଅସହଯୋଗରେ ବିଜୟ ନିଶ୍ଚୟ ।

ଛାଡ଼ ଜାତି ମତ ଭେଦ ଅହଙ୍କାର,
ହେଉ ମାନବଙ୍କ ସମତା ପ୍ରଚାର ।

ଖଣ୍ଡିଗଲା ଭେଦ ଅସ୍ପୃଶ୍ୟା-ମନ୍ତ୍ର
ଜାଗୁ ପୁଣି ଥରେ ଉତ୍କଳ-ଅନ୍ତର ।

ମନାଚଳନାଥ ପ୍ରଭୁ ଶ୍ରୀନିବାସ
ପୂର୍ବେ ଆଶା ରଖ ଏ ବଶ୍ବାସ ।" ୨୨ ।

( ୪ )

ଭାରତେ ଉତ୍କଳ ମହା ପୁଣ୍ୟଧାମ,
ଭାରତ ପାଞ୍ଜିରେ ନ ଥିଲା ତା ନାମ,
ପାଡ଼ଶ୍ୟ, ଐଶ୍ୱର୍ଯ୍ୟ, ଧନ, ମାନ ବଳେ
ଉତ୍କଳର ନାମ ସମସ୍ତଙ୍କ ଛଳେ ।
ଭାରତ ଜାଗ୍ରତ୍ତ ମହାସନ୍ଧିକାଳେ
ନ ଥିଲେ ଉତ୍କଳ ସ୍ୱତନ୍ତ୍ର ଆସନେ,
ତେଣୁ ଜଗନ୍ନାଥ କରୁଣାନିଧାନ
କରୁଣା କଟାକ୍ଷେ କଲେ 'ଅବଧାନ ।
ଅସହଯୋଗର ପବନ ସହିତ
ଉତ୍କଳର ବକ୍ଷେ ହେଲା ପ୍ରବାହିତ ।
ଗାନ୍ଧି ଭଗୀରଥ ନିଜ ପୁଣ୍ୟବଳେ
ଆଣିଲେ ଅସଙ୍ଗ ଜାହ୍ନବୀ ଉତ୍କଳେ ।
ହିମାଚଳଠାରୁ ସୀମାଚଳ ଯାଏ
କୁମାରିକା ଯାଏ ଖେଳିଲା ଲହରୀ ।
ଉତ୍କଳେ ସେ ପୁଣ୍ୟ ସ୍ରୋତ ଶତ ଧାରେ
ବହେ ପ୍ରତିପଲ୍ଲୀ କାନ୍ତାରେ ପ୍ରାନ୍ତରେ ।

ଉତ୍କଳେ ଅସଙ୍ଗ-ପ୍ରବାଦେ 'ଭରତ

ବାହୁଛନ୍ତି ଯେଉଁ ସ୍ୱରାଜ୍ୟ-ବୋଇତ,

ସେ ଦଳରେ ମୁହିଁ ଅକିଞ୍ଚନ ଜଣେ

ମୋଡ଼ୁଥିଲି ଦାଣ୍ଡ-ମଙ୍ଗ ପ୍ରାଣପଣେ ।

ସ୍ୱରାଜ୍ୟ ବଇଁଶ ଦଳ ହାତେ ଦେଇ

ମୋ ହାତେ ଲଗିଛି ଏବେ ଲୁହାକଡ଼ି ।

ଆଜ କେତେ ଜଣ ନାଙ୍ଗଳିଆ ଭାଇ

ମୋ ସଙ୍ଗରେ ସମ ଦଶା ଛନ୍ତି ପାଇ ।

ଉତ୍କଳବାସୀ ଏ 'ଦଶା' ଦେଖିଣ

ନୟନରେ ଜଳ ଢାଳି କି ଦେହ କ୍ଷୀଣ ?

କର କି ଭାବନା କାଣ୍ଡାରି ବନ୍ଧନେ

ଚଳିବ ସ୍ୱରାଜ୍ୟ-ବୋଇତ କେସନେ ?

ନ ଅଟକେ କର୍ମ ନେତାର ଅଭାବେ,

ଧର୍ମ-ନାବ ଚଳେ ଧର୍ମର ପ୍ରଭାବେ ।

ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ;

ଉତ୍କଳର ନେତା ନିଜେ ନାରାୟଣ ।

ଇତିହାସେ ଶୁଣିଅଛ ଜନଶ୍ରୁତି

କାଞ୍ଚି ଯୁଦ୍ଧ କାଳେ ଉତ୍କଳ ବିଭୂତି,

ଶୁଣିଛ ତ ପ୍ରଭୁ ନୀଳାଦ୍ରି ନାୟକ

ହେଲେ ଧରି ହାତେ କୃପାଣ ଶାୟକ,

ଉତ୍କଳ ଗୃଧ୍ରଙ୍କ ସେନାପତି ପଣେ
ହୋଇଥିଲେ, ବଳେ ସମରାଙ୍ଗଣରେ ।
ଉତ୍କଳ-ଉଜ୍ଜ୍ୱଳ ଜୟ-ବୈଜୟନ୍ତୀ
ଆଜଯାଏ ଘୋଷୁଥାଏ କିମ୍ବଦନ୍ତୀ ।

ଏବେ ସୁଦ୍ଧା ଦେଖ ନୀଳାଚଳେ ଯାଇ
କଳା ଧଳା ଘୋଡ଼ା ପରେ ବେନି ଭାଇ,
ବୀରମୂର୍ତ୍ତି ଦେଖ ଯେମନ୍ତେ ଅଗ୍ନିଶିଖା
ଚକ୍ଷୁ ମୂର୍ଚ୍ଛ୍ୟ ମାଗେ ତାମ୍ରର ଅଣିକାଏ
ଏ ଚିତ୍ର ତ ନୁହେ ଶିଳ୍ପୀର କଳ୍ପନା;
ଏ ସତ୍ୟର ସାକ୍ଷୀ ମାଣିକପାଟଣା ।

ଏହି ସେ ଉତ୍କଳ ପୁଣ୍ୟ ଦେବପୁରୀ,
ହୋଇଛନ୍ତି ଠାକୁର ପଣ୍ଡି ତୀର୍ଥାବଳୀ ।
ତା-ମଧ୍ୟେ ଶ୍ରେଷ୍ଠ ପୁଣ୍ୟ ନୀଳାଚଳ
ଭାରତର ଧର୍ମ-ହୃଦ-ଶତଦଳ ।
ଏବେ ନୀଳାଚଳେ ସ୍ୱୟଂ ଜଗନ୍ନାଥ,
ତେବେ କାହିଁ କହ ଉତ୍କଳ ଅନାଥ ?

ନାହିଁ ପୂର୍ବ ବଳ, ନାହିଁ ପୂର୍ବ କର୍ମ,
ନାହିଁ ପୂର୍ବ ସତ୍ୟ, ନାହିଁ ପୂର୍ବ ଧର୍ମ ।
ଉତ୍କଳବାସୀର ଦେଖି ଏ ଦୁର୍ଗତି
ଦାରୁଭୂତ ଏବେ ନୀଳାଚଳପତି ।

ମାତ୍ର ଦୁଇ ଘଡ଼ି, ହେଲେ ଧର୍ମବଳ
ନବ ତେଜେ ପୁଣି ଜାଗିବ ଉତ୍କଳ ।

କ୍ଷୀଣ ହେଲେ କେବେ ଧାର୍ମୀକ ଶକତି
ଆସନ୍ତି ଓହ୍ଲାଇ ପ୍ରଭୁ ବିଶ୍ୱପତି,

ସତ୍ୟଧାମୁ ଛାଡ଼ି ରତ୍ନସିଂହାସନ
କରିବାକୁ ଧର୍ମପକ୍ଷ ସମର୍ଥନ ।

ଏ ବିଶ୍ୱାସେ ମନ ଦୃଢ଼ କର ଭାଇ,
ନେତାର ଅଭାବ ଲାଗି ଭାବ ନାହିଁ ।

କର୍ମଭୂମେ ଜଏ ନେତା ହେବା ଯାତ,
ସରବେ ନମିତ୍ତ ବଧ୍ୟ-ନସ୍ତୋଜିତ ।

ଉତ୍କଳବାସୀ ସର୍ବ ନରନାରୀ,
ସେନ ହେ ଏ ବାଣୀ ଭଲେ ଶୁହାଉ
ବରଧ ହେଉ ଦେହ, ଭସ୍ମ ହେଉ ସର
ସ୍ୱରାଜ୍ୟ ସାଧନେ କେବେ ହେଁ ନ ଡର ।

ନ ଛାଡ଼ ସାହସ, ନ ତୁଷ୍ଟ ନିଗଣ,
ହେଲେ ହେଉ ପଛେ କାରାଗାର ବାସ ।
ନ ହୁଡ଼ ସ୍ୱରାଜ୍ୟ ଶାନ୍ତି-ସତ୍ୟ-ପଥ
ଲଭ ସିଂହଦ୍ୱାରେ ନନ୍ଦିଘୋଷ ରଥ ।" ୩୭ ।

( ୪ )

"ଶାସନ-ରକ୍ଷକ କଟୁଆଳ ଦଳ
ନେଉଛନ୍ତି ମୋତେ ଛଡ଼ାଇ ଅଞ୍ଚଳ ।

ଫେଷି ଆସିବେ ସେ ଆଜ କାରାଗାରେ
ଡାଙ୍କି ବନ୍ଧୁ ଦୁଆରେ ଉଜ୍ଜଳ ବାଡାରେ ।
ନ ଦେଖିବେ ବୋଲି କେଷ୍ଟ ଦେଶଭକ୍ତ
ଗଭୀର ଝଣିଥେ ନଅନ୍ତ ଲୁଚଇ ।

ନଅନ୍ତୁ ଯେପରି ରଖନ୍ତୁ ସେ ଢଳେ,
ସେଥିଲାଗି ମୋର ଦୁଃଖ ନାହିଁ ତିଳେ ।
ମାଏ ଝଙ୍କନ୍ତୁଁ ମୁଁ ପାଇଛି ସେ ଦୂରେ
ବାଜଲେ ଏ ବାର୍ତ୍ତା କାଲି ପଲ୍ଲୀପୁରେ,

ଜାଣେ ଉତ୍କଳର କେତେ ନରନାରୀ
ବ୍ୟଥିତ ପରାଣେ ଦେବେ ନଷ୍ଟେ ଧାର ।
ନୟନେ କହିବେ କେତେ ଆଦା ଅଡା,
ଆସେନ ବୋଲିବେ ସେ ପଥେ ଫଳ ଭାଦ୍ରା ।

ଗ୍ରାମୁଁ ଗ୍ରାମାନ୍ତରେ ଗଲେ ଏ ସମ୍ବାଦ
ପଲ୍ଲୀ ନରନାରୀ ଭଣିବେ ବିଷାଦ ।
କେଜାଣି କେ ଅବା ପାଇ ବୃଥା ଭୟ
ଅସତ ଯୋଗରୁ ଛାଡ଼ିଦେବେ ଲୟ—

ଏ ଭାବନା ଏକା ମନ୍ଥେ ମୋ ଅନ୍ତର
ନିଜ ନିର୍ବାସନେ ନୁହେ ମୁଁ କାତର ।
ମନେପଡ଼େ ତେତେ ଅଞ୍ଚଳର ସାଇ
ଡାକଷ୍ଟ୍ରେ ତେଣେ ଥରେ ଯିବା ପାଇଁ ।

ଭେଟେ କେତେ ଗ୍ରାମେ ବୁଲି ଦ୍ୱାରୀ ଦ୍ୱାରେ
କହୁଛ ସ୍ୱରାଜ୍ୟ-ଶୁଭ ସମାଚାର ।
ତଥାପି ରହୁଛ କେତେ ସ୍ଥାନ ବାକି,
ମୋ ଯିବାକୁ ଲୋକେ ରହିଥିଲେ ଟାକି ।
କେବେ ଫେରି ପୁଣି ଯାଇ ତାଙ୍କ ପାଶେ ।
କ୍ଷମା ମାଗିବ ମୋ ବିଳମ୍ବ ସକାଶେ ।
ଦେଖିବ କେବେ ସେ ପ୍ରିୟଜନ ମୁଖ,
ଏ ଭାବନା ଏବେ ଜନମାଏ ଦୁଃଖ ।
ହେ ଉତ୍କଳବାସୀ, ମୋ ଭାଇ ଭଉଣୀ
କରିଅଛ ସ୍ନେହେ ମୋତେ ଚିର ଋଣୀ ।
ଯାଇଅଛୁ ଯହିଁ ପାଇଛୁ ଆଦର
ଶୁଣିଛ ଶ୍ରଦ୍ଧାରେ ସନ୍ଦେଶ ମୋହର ।
ତୁମ୍ଭ ହିତେ ମୋର ଦୁର୍ବଳ ପ୍ରୟାସ
ଜାଣେ କରିଅଛ ମନେ ଏ ବିଶ୍ୱାସ ।
ମୋ ସମ୍ବଳ ତୁମ୍ଭ ସେନେହ ଶରଧା
ସୁମରୁଥିବି ମୁଁ ଯହିଁ ଥିଲେ ସଦା ।
କିନ୍ତୁ ମୋ ବିରହେ କେବଳ ଶୋଚନା
କାହାରେ ନ ଦେବ ଏ ପ୍ରାଣେ ସାନ୍ତ୍ୱନା ।
ଦେଖିଛୁ ଉତ୍କଳେ ଯେ ଦୃଶ୍ୟ ନୟନେ
ଉଦଏ ତା ଭୂତ ପରାୟେ ଶୟନେ ।

କେତେ ଦେଶେ ଦେଶେ ଶ୍ରେଷ୍ଠୀ ଭଲ ଭଲ ଲୋକ
ନ ପାନ୍ତି ଦୁ' ବେଳା ପେଟପୂର୍ଣ୍ଣ ଭୋଗ ।
ଥିଲେ ଯେଉଁ ମଲ୍ଲ ଜଙ୍ଗଲ ସୈନିକ;
ପାଇକ ପ୍ରଧାନ ମାଗୁଛନ୍ତି ଭିକ ।
ଦେହେ ନାହିଁ ମାଂସ ଦୋହଲୁଛି ଜଙ୍ଘା,
ଅନାହାରେ ଆହା ନ ଜଠର ଅଣ୍ଟା,
ଅର୍ଜନ୍ତି ଯା ଭୃତ୍ୟେ ମାରି ମୁଣ୍ଡଝାଳ,
ଦୁଷ୍ଟ ମହାଜନ, 'ଗ୍ରାମ କଣ୍ଟକ ପାଳ,'
ପ୍ରଜା ରକ୍ତ ଶୋଷି କେତେ ଜମିଦାର
ହରନ୍ତି ସର୍ବସ୍ୱ ବଜାଇ ଡାହାର ।
ଓଜନର କେତେ କନ୍ୟା ନାରଖାର
ନ କରନ୍ତି ପେଟ ପୂରାଇ ଆହାର ।
ଲଜ୍ଜା ଢାଙ୍କିବାକୁ ନ ପାନ୍ତି ବସନ,
ଫୁଟେ ନାହିଁ କେବେ ଅଙ୍ଗେ ସଉକନ ।
ଚିକିତ୍ସା ନ ପାଇ ଘରକଣେ ପଡ଼ି
ରୋଗ, ଅନାହାରେ କେତେ ମରେ ସଢ଼ି
ଜଦରଜାଜାରେ ଏକେତେ ନରନାରୀ
ଛାଡ଼ି ଘରଦ୍ୱାର ଯାଆନ୍ତି ବାହାର ।
ଦେଖିଅଛି ଏତ କାହିଁ ହା ଦୁର୍ଗତି
ଶ୍ମଶାନ ଉପରେ ବସେ ବାଛାଟିଆ ।

ପଶିଗଲେ ଗ୍ରାମେ ନ ଶୁଭେ ଶବଦ,
ବେଦମନ୍ତ୍ର କିବା ଭାଗବତ ପଦ ।
ଗ୍ରାମବାସୀଗଣେ ନାହିଁ ପୂର୍ବ ମେଳ,
ଶିଶୁଖେଳେ ଦାଣ୍ଡ ନ ହୁଏ ଉଦ୍‌ବେଳ ।
ଶୋଭୁଅଛି ଭଙ୍ଗି ଗ୍ରାମ ଦେବାଳୟ,
ପୂରିଲାଣି ପଙ୍କବନ୍ଧେ ଜଳାଶୟ ।
ଗ୍ରାମର ଗୋକୁଳ ହେମ ଅତି କ୍ଷୀଣ,
ଯେଣେ ଅନାଇବ ସବୁ ଶ୍ରୀହୀନ ।
ନାହିଁ ଜନମୁଖେ ସତ୍ୟ-ଧର୍ମ କାନ୍ତି,
ନାହିଁ ହୃଦେ ଶୌଚ ପ୍ରାଣେ ସ୍ନେହ ଶାନ୍ତି ।
ଘର ପ୍ରବଞ୍ଚନା କଚେରି-ଦରବାର
ଗ୍ରାମ ମୁଖିଆଙ୍କ ନିତ୍ୟ କାରବାର ।
ଆତ୍ମୀୟ ସୋଦର ପ୍ରତିବେଶୀ ସଙ୍ଗ
ମାଜ ସ୍ୱାର୍ଥ ଲାଗି ଲଗାନ୍ତି ଜଙ୍ଗ ।
ରାଜଦରବାରେ ବୃଥା ଅର୍ଥକ୍ଷୟ,
ଶେଷେ ସମଦଶା ଜନ୍ମ-ପରାଜୟ ।
ଶାସନ-କୁହୁକେ ସର୍ବେ ଅବସନ୍ନ
ବ୍ୟାଧଜାଲେ ପଡ଼ି କପୋତ ଯେସନ,
ଜାଲେ ହଣାହଣି ସ୍ୱଦଶା ନ ଜାଣି
ଫଳେ ସର୍ବନାଶ ଧର୍ମ-ଅର୍ଥହାନି ।

ଦେଖିଣ ବିଦେଶୀ ଦ୍ରବ୍ୟ ଝଲମଲ
ଲୋଭନ୍ତ ପତଙ୍ଗ ଯେସନ ଅନଳ ।

ହେଉଅଛୁ କାଂସା ହଣ୍ଡା ଜମିହରା,
ବୁଡ଼ିଲାଣି କେତେ ଜାତିର ଖାହରା ।

ଏହା ପରେ କ୍ରମେ ବଢେ କର-ଦାଉ,
ଏ ଦଶା ରହିବ କେତେ ଦିନ ଆଉ ?

ସରିଲାଣି ସାର ପଡ଼ିଅଛି ପିଠା;
ନାହିଁ ଗର୍ଭେଶ୍ୱର ବଂଶ ପୋଲ ପିଠା ।

ଉଡ଼ିଲାଣି ଶିରୀ ଦୋହଲାଇ ଝ ପ;
ରହିଛି ଅଙ୍ଗାର ନାହିଁ ତେଜ ତାପ ।

ପଡ଼ିଅଛି ପିଣ୍ଡ ଯାଇଛି ପରାଣ;
ଦେଖିଲେ ଏ ଦଶା ବୁଡ଼େ ବୁଦ୍ଧି-ଜ୍ଞାନ ।

ସଢ଼ି ମଞ୍ଜି ଗଛେ ରହିଛି ବକଳ,
ସୁନ୍ଦର ସକଳ ଶବଠ ଶକଳ !

ଫେରିବ ଏ ଦଶା ସୁଖି ହେବ ପ୍ରଜା,
ଜଷ୍ଟୁନା ଧାନ କ ସତେ ହେବ ରଜା ?

ଜଙ୍ଗଲର ଏହି ଶବ ନବାରୁଣ
ନାଚିବ ମୋ ଆଖି ଆଗେ ପୁଣ ପୁଣ ।

ଏବେ କାରାବାସ ଦୂର ପରଦେଶ
ଦେଶଦଶା ତହିଁ ମନେ ହେଲେ କ୍ଲେଶ;

କି ଭାବ ପବନେ ପାଇବ ଆଶ୍ୱାସ,

ପୋଛିବ ଲୋତକ ଧରି କି ସାହସ ?

ହେ ଉତ୍କଳବାସୀ ଆତ୍ମୀୟ ସ୍ୱଜନ !
ମୁଁ ଯେବେ ତୁମ୍ଭର ସେନେହ ଭାଜନ,

କର ଯୋଡ କରେ ବନ୍ଦନ୍ତ ଏତିକି,

ଅସହଯୋଗରେ ରଖିବ ମତିକି,

ଢାଳିଦିଅ ପ୍ରାଣ ସ୍ୱରାଜ୍ୟ-ସାଧନେ,

ଆଶ୍ୱାସିବ ଯେବେ ମୋତେ ବନ୍ଦୀବାସନେ ।

ନ ହୁଅ ବିରସ, ନ ହୁଅ ଦୁଃଖିତ,

ଉତ୍କଳର ଦେଖି ଦୁଃଖମୟ ଚିତ୍ର ।

ସୁଖ-ଦୁଃଖ-ଚକ୍ର ଘୂରେ ନିରନ୍ତର,

ଏକ ପରେ ଆନ ଆସିବ ମୁକର ।

ଆଲୁଅ ଅନ୍ଧାର ଖେଳେ ଲୁଚକାଳି,

ଆସିବ ଆଲୁଅ ପଡ଼ିଲଣି ପାଳି ।

ପହଞ୍ଚିଲୁ ଏବେ ସେ ମାହେନ୍ଦ୍ର ବେଳା
କର ନାହିଁ ଭଳ ! ଏତେବେଳେ ହେଲା ।

ଉଇଁ ଆସୁଅଛି ସ୍ୱରାଜ୍ୟ-ତପନ,

ଭରତେ ଜାଗ୍ରତ ନରନାରୀଗଣ ।

ଘୁମାଇ ନ ରହ ଏ ସମୟେ ଆଉ,

ଉଠ ଉଠ ବେଗେ ବେଳ ଆଉଁ ଥାଉଁ ।

ଥରେ ଭଲ ଭାଇ ମନରେ ବିଚାର
କିପାଇଁ ମହାତ୍ମା ଏବେ କାରାଗାର !
କ୍ଷୀଣ ଅଙ୍ଗେ କେତେ ସହନ୍ତି କଷଣ
ତେଜି ଧନ ଜନ, ଅଶନ ବସନ;
କାରାଗାରେ ବସି ମାରବେ ଏକାକୀ
ଧ୍ୟାନମଗ୍ନ ଏବେ ମୁଦ୍ଦି ବେନି ଆଖି ।
ମହାତ୍ମା ସାଧନ ମହାତ୍ମା କଷଣ
ନ ଯାଏ ଜଗତେ କେବେ ଅକାରଣ ।
ଅନ୍ୟାୟ ଅଧର୍ମ ପାପ ଅତ୍ୟାଚାର
ମାନେ ଅବଶେଷେ ସତ୍ୟ ପାଖେ ହାର ।
ଏ ବିଶ୍ୱାସେ ସର୍ବେ ଦୃଢ଼ କର ମନ
ସ୍ୱରାଜ୍ୟ ଧରମ କର ଆଚରଣ ।
ବିଦେଶୀ ଅପୋଧ ବସ୍ତ୍ର ଗୁଡ଼ ଅଙ୍ଗେ
ହାତ ସୂତା ନେଡ଼ା ଏ ସ୍ୱରାଜ୍ୟ-ଲାଗେ ।
ପିନ୍ଧ ଦେଶୀ ଲୁଗା ଦେଉ ଅଙ୍ଗ ଶୁଦ୍ଧି,
ମାମଲାରେ ଆଉ ନ ଖେଳାଅ ବୁଦ୍ଧି ।
ଗ୍ରାମେ ପଞ୍ଚ ପର ପରମ ଈଶ୍ୱର
କର ପୁଣି ଗ୍ରାମେ ସ୍ଥାପନା ତାଙ୍କର ।
ସର୍ବେ ବାନ୍ଧି ମେଳ ତାଙ୍କୁ ମାନ ଚଳ,
ପ୍ରକାଶିବ ଗ୍ରାମେ ପୁଣି ନବ ବଳ ।

ନ ଲାଗିବ ମିଥ୍ୟା ଜାଲ ପ୍ରବଞ୍ଚନ,
ନ ଖାଇବେ ଭୂତ ଭୂମ ଗ୍ରାମଧନ ।"

× × × ×

"ଗ୍ରାମ ତନ୍ତ୍ରରେ ସକଳେ ସମାନ
ଗୁରୁ ମନୁ ବଡ଼ ସାନ ଅଭିମାନ ।
ସ୍ୱରାଜ୍ୟ-ଧରମେ ନାହିଁ ଭେଦ ଜ୍ଞାନ,
ସମସ୍ତେ ଯେ ଏକ ମହାର ସନ୍ତାନ ।
ଏକା କୋଳେ ଜନ୍ମ ଏକା' କୋଳେ ଖନ,
ଏକା କୋଳେ ଶଯ୍ୟା ହେଲେ ଶେଷ ବେଳ ।
ଗୃହରେ ଅନୈକ୍ୟ, ଗ୍ରାମେ ଚକ୍ରାନ୍ତ,
ଗ୍ରାମବାସୀଗଣ ମଧ୍ୟେ ଏକମତ,
ସ୍ୱରାଜ୍ୟ-ସାଧନ ଏହି ତିନ ପଦ,
ପାଳିଲେ ଖଣ୍ଡିବ ଉତ୍କଳ-ବିପଦ
ଘୁଞ୍ଚିବ ଉତ୍କଳ ଦୁଃଖ ଦରିଦ୍ରତା
ଉଜ୍ଜ୍ୱଳିବ ଗ୍ରାମ, ହସିବେ ଦେବତା ।"
"ଜଳିଲ କି କେତେ ହୃଦୟ ଆବେଗେ
ଚାଲେ ଏ ଦାରୁଣ ରେଳ କେଡ଼େ ବେଗେ !
ଭେଟିବଁ ଆସିଅଛୁ ଏବେ ମହାନଦୀ
ଜଳରେ ଉତ୍କଳ ପୂତ ବକ୍ଷୁ ପ୍ରଦା ।

ଆଗରେ ବସେ ଏ ଶୈଳ ବନାବୃତ,
ନମେ ପଦେ ପ୍ରଭୁ ବନ୍ଧନନାଶନ ।

ଆଦ୍ୟେ ତବ ପୂଜା ଶୁଭ ଅନୁଷ୍ଠାନେ,
ଯାଉଛନ୍ତି ଭକ୍ତଜନ ଛାଡ଼ି ଦୂର ସ୍ଥାନେ ।

କର କୃପା ମୋର ଶୁଦ୍ଧ ହେଉ ପଥ,
କାରାଗାରେ ମୋର ପୂର୍ଣ୍ଣ ମନୋରଥ ।

ଯାଉଛନ୍ତି ଏ ପଥେ କେତେ ଥର ଆଗେ,
କିପାଇଁ ଚଞ୍ଚଳ ମନ ଆଜ ଲାଗେ ?

ଲାଗେ ଗୃହଗଳ କରୁଛି ଅତି ପ୍ରିୟ,
ଅକୁହା ରଖିଲ କଥା ଗୋପନୀୟ ।

ତାହାକୁ ଦେଖନ୍ତୁ ପର ଆଉ ଥରେ,
ନିଷ୍ଠିତ କରୁଛି ତ ନ ପଡ଼େ ମନରେ ।

ଜାଣୁଛି ଏ ମୋର ନିଜ ଦୁର୍ବଳତା,
ମାନବ ହୃଦୟ ସହଜ ମମତା ।

ମମତାର ଆଉ କାହିଁ ଅବକାଶ,
ପ୍ରଭୁ ଦେଲେ ହୃଦେ ପରମ ବିଶ୍ୱାସ ?

ମାନବ ଜୀବନ ଲୁହ ମିଥ୍ୟା ଜ୍ଞାନ
କରେ କୁହମାତ୍ର କୌଶଳ ପ୍ରଧାନ ।

ଏ ଜୀବନ ସତ୍ୟ ଶୃଙ୍ଖ ସାରତତ୍ତ୍ୱ
ତତ୍ତ୍ୱ ଅନୁଚିନ୍ତ ମାନବର ଶକ୍ତି ।

ଯା ଜୀବନ-ଗତି ତତ୍ତ୍ୱ-ଅଭିମୁଖୀ,
ସେହି ଏକା ଦୁଃଖୀ, ସେହି ଏକା ସୁଖୀ ।
ତତ୍ତ୍ୱର ସାଧନେ କୃତ୍ୟାକୃତ୍ୟ ଜନ;
ଲଭଇ ମରଣେ ଅମୃତ-ଜୀବନ ।
ସତ୍ୟ ସନାତନ ପ୍ରଭୁ ଭଗବାନ,
ଏ ଭାବେ କର ମୋ ହୃଦ ବଳୀୟାନ ।
ସ୍ୱରାଜ୍ୟ ସାଧନେ ରହୁ ମୋର ଧ୍ୟାନ,
ଭାରତେ ସ୍ୱରାଜ୍ୟ ଜଗତ-କଲ୍ୟାଣ ।
ଜଗତ-ସରସେ ଭାରତ କମଳ,
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।
ଥିଲେ ଯହିଁ ତହିଁ ଭାରତ-ବକ୍ଷରେ
ମଣିବି ମୁଁ ଅଛୁ ଆପଣା କକ୍ଷରେ ।
ମୋ ନେତ୍ରେ ଭାରତ-ଶିଳା ଶାଳଗ୍ରାମ,
ପ୍ରତି ସ୍ଥାନ ମୋର ପ୍ରିୟ ପୁଣ୍ୟ ଧାମ ।
ସକଳ ସଲିଳ ମୋ ତୀର୍ଥ ଜଳ,
ପ୍ରତି ଧର୍ମାଳୟ ମୋର ନୀଳାଚଳ ।
ଭାରତେ କୈବଲ୍ୟ ସକଳ ଆଚାର,
ଭାରତେ ଶ୍ମଶାନ ସ୍ୱରଗ ଦୁଆର ।
ଶ୍ରୀହରି ଚନ୍ଦନ ଭାରତ-କର୍ଦ୍ଦମ,
କାରାଗାର ମୋର ସ୍ୱରାଜ୍ୟ ଆଶ୍ରମ ।

ଭାରତର ପ୍ରତି ବୃକ୍ଷ କଳ୍ପବଟ
ପ୍ରଭୁ ଜଗନ୍ନାଥ ସର୍ବତ୍ର ପ୍ରକଟ ।
ସାମ୍ୟ ସ୍ୱାଧୀନତା ପ୍ରେମ ସମୁଦୟ
ନୀଳାଚଳ ଶୁଦ୍ଧ ଭାରତ-ହୃଦୟ ।
ଅନ୍ତେ ଯନ୍ତ୍ରି ଚର୍ଚ୍ଚି ଭାରତ ଶୟନେ,
ମରିବି ମୁଁ ଅନ୍ତେ ନୀଳଚକ୍ର ତଳେ ।
ପ୍ରଭୁ ଜଗନ୍ନାଥ ପତିତପାବନ !
ଜୀବନେ ମରଣେ ତୁମ୍ଭେ ମୋ ଶରଣ ।” ୧୦୪ ।

( ୭ )

“ଚଦଞ୍ଜି ଛୁ ରେକ ଜେନାପୁରେ ଆସି,
ପଣ୍ଡିତ ମୋର ଜେନାପୁରବାସୀ ।
ଆସିଥିଲ ଥରେ ଦୁଇ ବର୍ଷ ତଳେ
ବୁଡ଼ିଥିଲା ଜେନାପୁର ଯେବେ ଜଳେ ।
କେତେ ଗ୍ରାମ, କେତେ ଘର, କେତେ ଧନ
ହୋଇଥିଲା ବନ୍ୟା-ସ୍ରୋତେ ଜଞ୍ଜନ୍ନ ।
କେତେ ଗ୍ରାମବାଣ୍ଡେ ଘୁଲୁଥିଲ ସୁଖ,
କେତେ ନୟନରୁ ବହୁଥିଲ ଲୁହ ।
କେତେ ନରନାରୀ, କେତେ ଗୋରୁଗାଈ
ମରୁଥିଲେ କଷ୍ଟେ ଆହାର ନ ପାଇ ।

ପଡ଼ିଗଲେ ମନେ ସେ ବେଳ ଘଟଣା
ହୃଦେ ହୁଏ ଏବେ ଦାରୁଣ ବେଦନା ।
ବନ୍ୟା ହେତୁ ପାରେ ଉତ୍କଳ-ଦୁର୍ଦ୍ଦଶା
ବର୍ଣ୍ଣିଲେ ମତି ହୁଅଇ ବିବଶା
ଚିଲିକାକୂଳରୁ ସ୍ୱର୍ଣ୍ଣରେଖା ଯାଏ
ମୁହୂର୍ତ୍ତେ ମୋର ଆଖି ବୁଲିଯାଏ ।
ଯେତେ ସ୍ଥାନେ ଯେତେ ଲୋକଙ୍କ କଷଣ
ଦେଖିଛୁ ପଲକେ ହୁଅଇ ସ୍ମରଣ ।
ଦୁର୍ଭିକ୍ଷ ବନ୍ୟାର ଚିର ସହଚର,
ଏକ ପଛେ ଅନ୍ୟ ଆସେ ନିରନ୍ତର ।
ସନ୍ନ ସନ୍ନ ବନ୍ୟା-ଦୁର୍ଭିକ୍ଷ-ପ୍ରହାର
ଉତ୍କଳର କେତେ ପଲ୍ଲୀ ଛାରଖାର ।
କେତେ ଗ୍ରାମ ଶୂନ୍ୟ, କେତେ ଘର ଖାଲି,
କେତେ ଶସ୍ୟକ୍ଷେତ୍ରେ ପୂରିଅଛି ବାଲି;
ନିରାଶା ଆତଙ୍କେ ପ୍ରଜା ଅବସନ୍ନ,
ମରୁଛନ୍ତି କେତେ ନ ପାଇଣ ଅନ୍ନ ।
ପଡ଼େ ମନେ ମୋର ଯେବେ ସିନ୍ଧୁକୂଳେ
ମିଳାଇଲେ ଗାନ୍ଧୀ ଥିଲେ ପଲ୍ଲୀ ବୁଲେ ।
ଦେଖି ଉତ୍କଳର ଦୁର୍ଭିକ୍ଷ ଆଭାସ
ହୋଇଥିଲେ ହୃଦେ ଗୁରୁତର ତ୍ରାସ ।

କେତେ ନରନାରୀ ବୃଦ୍ଧ ଯୁବା ବାଳ,

(ଅନାହାରେ ଯେହ୍ନ କେବଳ କଙ୍କାଳ)

ଦେଖିଣ ମହାତ୍ମା କାତର ଅନ୍ତରେ

କହୁଥିଲେ ମତେ ଦୁଃଖେ ଏକାନ୍ତରେ—

'ଦେଖି ଏ ଦାରୁଣ ଦୃଶ୍ୟ ହୁଏ ମନ

ଅନଶନେ ଆଜ ତେଜନ୍ତୁ ଜୀବନ ।

ବଞ୍ଚିବାରୁ ବଳ ଦେଖି ଏ କଷଣ

ଶତ ଗୁଣ ଶ୍ରେୟ ମଣେ ମୁଁ ମରଣ ।

ମାତ୍ର ମୋ ପରାଣେ ରହୁଛି ଭରସା,

ଅଚିରେ ଦେଶର ଘୁଞ୍ଚିବ ଏ ଦଶା ।

ଏସବୁ ପାତକୀ ନର କର୍ମଫଳ

ହୋଇଛି ଏ ଦେଶେ ପାତକ ପ୍ରବଳ ।

ଦେଶବାସୀଙ୍କର ହେଲେ ଆତ୍ମଶୁଦ୍ଧି

ସତ୍ୟ ଅନୁରାଗ ଧର୍ମେ ଭବ୍ୟ ବୁଦ୍ଧି,
ମେଣ୍ଟିବ ଦୁର୍ଗନ୍ଧ ଦୁଃଖ ଯିବ କ୍ଷୟ,

ଆସିବ ସୁଦିନ ହେବ ସୁଖୋଦୟ ।'

ଛାଡିବାକୁ ଗାଡ଼ି ଦେଲାଣି ସଙ୍କେତ,

ବାଜେ ଶେଷ ଘଣ୍ଟା, ଉଡ଼େ ନାଳକେତ ।

ସୁବିଧା ଥିଲେ ମୁଁ ଓହ୍ଲାନ୍ତ ଏଠାରେ,

ଦେଖିଯାନ୍ତ ଜେନାପୁର ଏବେ ବାରେ ।

ବୁଲି ବ୍ରାହ୍ମଣୀର ତୀର ଜନପଦେ,
ଉଦାସ୍ତୁ ନଅନ୍ତି କଷ୍ଟ ପଦେ ପଦେ ।

ଦେଖନ୍ତି କପଣ ଅଛନ୍ତି ମୋ ଭାଇ,
ଦଇବୀ ମାନୁଷୀ ଦାଉ ଧକ୍କା ଖାଇ ।

ବ୍ରାହ୍ମଣୀ ବାଲିରେ ସାନ୍ଧ୍ୟ ନିର୍ମିକନେ
କଷ୍ଟ ଯାଉଥାନ୍ତି ଥିଲି ଯାହା ମନେ ।

ଭୁଲିଲି ଯଦି ଏ ନିଦାରୁଣ ଗାଡ଼,
ଜେନାପୁର ମଠେ ଅଛିଲି କି ଗୁଡ଼ ?

ଏବେ ସେ ହେଲି ଜେନାପୁର ସେତୁ
ବ୍ରାହ୍ମଣୀ ବିଶାଳ ବକ୍ଷେ ଧୂମକେତୁ ।

ଥାଅ ଗୋ ବ୍ରହ୍ମଣୀ ପୀନପୟୋଧର !
ହେଉ ତୁମ୍ଭ ସୋତେ ଜଙ୍ଗଳ ଉର୍ବର,
ଖରସ୍ରୋତା ଧନଙ୍କ କରି ତୁ ମନ୍ତ୍ରଣା ।
ଛଡବାଧୀ ଜଂନ ନ ଢଅ ଯନ୍ତ୍ରଣା ।
କେନ୍ଦ୍ରାପଡ଼ା, ଯାଜପୁର ପ୍ରଜାକୁଳ,
କର ନାହିଁ ବନ୍ୟା ଜପ୍ଲୁତେ ବ୍ୟାକୁଳ ।

ସେ ଭାଇ ସକଳ ମୋର ପ୍ରିୟତମ,
ତାଙ୍କ ସେବା ମୋର ଜୀବନେ ପ୍ରଥମ ।
ଖରସ୍ରୋତା ତୁମ୍ଭ ତୀରେ ସନ୍ଦେଶ
ମାଗୁଛି ବେଦକୁ ନମସ୍କାର କରି—

ବନ୍ଦୀର ଆତ୍ମକଥା

ତରଙ୍ଗ-ହିଲ୍ଲୋଳେ କଳ କଳ ତାନେ
ନଈ ନେଲା ସନ୍ଦେଶ ସେ ଗାଇଙ୍କ ତାନେ ।
ଗ୍ରାମୁଁ ଗ୍ରାମାନ୍ତରେ ପବନ ଲହରେ
ଉଡ଼ିଲା ଏ ବାର୍ତ୍ତା ଖେଳି ଘରେ ଘରେ ।
ଆଉ ଯାଜପୁର କେନ୍ଦ୍ରାପଡ଼ା ଭଳି;
ଦେଖାହେବ କେବେ କେଉଠିଲେ ଯାଇ ।
ବନ୍ୟାରୁ ବରଞ୍ଚ ନ ପାଇ ଶରଣ
ଜାଣେ ମୁଁ ଭେଟିଛୁ ବିଷମ ବିପତ୍ତି ।
କାରାଗାରେ ମୋତେ ପଡ଼ୋଶୀ ଭୂମିର
ଦେଇଛନ୍ତି ଅଗ୍ନି ଉତ୍ପାତ ଖବର ।
କେ ପୋଡ଼ିଲା ଘର, କେ ସହେ ଗଞ୍ଜଣା ।
ଏ ବିଷୟ ରାଜ୍ୟେ ଅଛି ବୁଝାମଣା ।
ହେଲା ଗୃହଦାହ ସଙ୍ଗେ ଅର୍ଥନାଶ,
ପରେ ପ୍ରାଣପୀଡ଼ା ପୁଣି କାରାବାସ ।
ବାସେ ଅଗ୍ନି ଯେତ୍ତ ଦେଲା ଆତତାୟୀ
ତାର ଖୋଜା ନାହିଁ, ଗଲା ସେ ବା କାହିଁ ?
ଆହା ଉତ୍କଳର କେତେ ଗ୍ରାମେ ଲୋକ,
ନରଶ୍ରେଷ୍ଠେ ଆଜ କରୁଛନ୍ତି ଶୋକ !
କାହା ଗୃହ ଭଷ୍ମ, କାହା ଦ୍ରବ୍ୟ ନଷ୍ଟ,
କାହା ପୁଅ ଭୋଗେ କାରାଗାରେ କଷ୍ଟ !

ଏଥିଲାଗି ଭ୍ରାନ୍ତ ନ କର ଭାବନା
ଏ ତ ବିନା ନେତ୍ର କୃଷ୍ଣ ସୃଜନା ।
ନାହିଁ ନିଜ ଦୋଷ ଯେବେ ଭଲେ ଜାଣ
ଜାଣ କହିଁ କାହିଁ ଦେଲ ଏ ଭିଆଣ,
ନ କର ଶୋଚନା ରଖ ଧର୍ମ ସାକ୍ଷୀ,
ଗୂଢ଼ ବ୍ୟୂହ ଭେଦ ସେ ଅଦୃଶ୍ୟ ଆଖି ।
ବହିଲ ଭୂମିର ଯେତୁ ଏ ବଚଡ଼ି
ଜାଣ ସେ ପାପୀର ନାହିଁ ଭଲ ଗତି ।
ନିଜ କଲ କର୍ମ ଭୋଗେ ନିଜେ ନର,
ଏଡ଼ି ନ ପାରେ ତା ବ୍ରହ୍ମା ହରିହର ।
ଧର୍ମ-ନିକିତିରେ ତୁଏ ଯେ ତଉଲ
ପରମାଣୁ ତହିଁ ଯାଏ ନାହିଁ ଭୁଲ ।
ଇତର ଜନର କଥା କିବା ଛାର,
କେତେ ଜାତି କେତେ ବ୍ୟକ୍ତି ବଳିଆର,
ନିଜ କର୍ମଦୋଷେ ଯାଇଛନ୍ତି ନାଶ,
ପ୍ରମାଣ ତହିଁର ଶାସ୍ତ୍ର ଇତିହାସ ।
ଜତୁଗୃହ ଜାଳି ମାମୁ ଦୁର୍ଯ୍ୟୋଧନ,
ଜାଣିଛ ଲଭିଲ କପରି ନିଧନ ।
ନ ନେଲା ସେ କଂସ କେତେ ଶିଶୁପ୍ରାଣ,
ଶେଷ କେତେ ଦିନ ରହିଲା ତା ଠାଣ ?

ପଶ୍ଚିମ-ଗଗନେ ହେରଡ଼ ନୃପତି
ଅନ୍ୟ କଂସ ସମ ଦୁରାତ୍ମା ଦୁର୍ମତି ।

ପ୍ରଭୁ ଯୀଶୁ ପ୍ରତି ମନେ ବହ୍ନ ରୋଷ,
ଶିଶୁ ହତ୍ୟା ଆଦି କଲା ନାନା ଦୋଷ ।

ଅନ୍ୟ ସେହ୍ନପର ମିଶରେ ଫେରସ,
ଗଲେ ଏ ସକଳେ ଯଥାକାଳେ ଧ୍ୱଂସ ।

ଶାସ୍ତ୍ର-ସ୍ମରଣର ବୁଝି ଏ ଚରିତ
ନ କର ବିପଦେ ଚିତ୍ତ ବିଚଳିତ ।

ମନେରଖ ଭାଇ ମହାତ୍ମା ଭୂଷଣ;
ଆମ ପାପ ଫଳେ ଆମର କଷଣ ।

ହେଲେ ଆତ୍ମଶୁଦ୍ଧି ସୁନିର୍ମଳ ମତି,
ପ୍ରକାଶିବ ତେଜ ସମ୍ପଦ ଶକତି ।

ଏ ବିଶ୍ୱାସ ସଦା ହୃଦେ ଦୃଢ଼େ ଧର,
ଗୃହଦାହ ଯେ ଗୁଁ ଗ୍ରାଜ ବୃଥା ଡ଼ର ।

ବିପଦେ ପ୍ରଭୁଙ୍କ କଣ୍ଟି-ପାଷାଣ;
ପରଖନ୍ତି ତହିଁ ନରହୃଦ ଠାଣ ।

ବିଦଗ୍ଧ ହେଲେ ବିପଦ-ଅନଳେ
ଭସ୍ମ ହୋଇ ଯେହ୍ନେ ଦାଉ ଦାଉ ଜଳେ,

ଯେଣୁ ଏକା ଶୁଦ୍ଧ ସୁବର୍ଣ୍ଣ-ହୃଦୟ;
ଲଭେ ଆଶ୍ୱାସନା ଅଭୟ ବିଜୟ ।

ଦେଶ ଗୃହେ ଯେଉଁ ଅଗ୍ନି ପ୍ରଜ୍ୱଳିତ<br>
ନୁହେଁ ବୃଥା ତାହା, ବିଧାତା ଇଙ୍ଗିତ ।<br>
ବୁଝିଲେ ଦେଖିବ ତହିଁ ଦୃଢ଼ ସତ୍ତ୍ୱ<br>
ଜାଳ ହୃଦେ ଅଗ୍ନି ଶୁଦ୍ଧ କର ତତ୍ତ୍ୱ ।<br>
ବାସ୍ତୁଁ ଲଭିଅଛୁ ବାହ୍ୟ ହୁତାଶନ,<br>
ଅନ୍ତରେ ଅନଳ ଜଳୁ ଅନୁକ୍ଷଣ ।<br>
ସତ୍ୟ-ବହ୍ନି ବର୍ତ୍ତେ ଦଗ୍ଧ ମଳିନତା,<br>
ପରକାଶୁ ନର-ପରାଣେ ଦେବତା ।<br>
ହେଉ ଗୃହ ନାଶ ଅବା କାରାବାସ,<br>
ଯାଉ ପଛେ ପ୍ରାଣ ନ ଯାଉ ବିଶ୍ୱାସ ।<br>
ସତ୍ୟ-ଶାନ୍ତି-ପଥେ ଚଳ ଅବିରତ,<br>
ଗ୍ରାମେ ଗ୍ରାମେ ସର୍ବେ କର ପଞ୍ଚାୟତ ।<br>
ଚଳାଅ ଅରଟ ଛାଡ଼ ମନ୍ଦ ଭୀତି,<br>
ତେଜ ଉଚ୍ଚ ନୀଚ ଘୃଣା ଭେଦ-ନୀତି ।<br>
ବେଶ୍ୟା ନାଚ ନିଶା ଆଦି ଦୁରାଚାର,<br>
ନ କରୁଁ ଦୂଷିତ ଗ୍ରାମ ପରିବାର ।<br>
ଏ ଅଗ୍ନିରେ ହେବ ଜଗତ ମଙ୍ଗଳ,<br>
ଯଥା କାଳେ ମେଘ ବରଷିବ ଜଳ ।<br>
ଧନ ଧାନ୍ୟେ ସୁଖୀ ହେବେ ପ୍ରଜାଗଣ,<br>
ନ ଦେଖ କି ଭାଇ ଏ ଶୁଭ ସୂଚନ ?

ଦେବଦୂତ ରୂପେ ପ୍ରଭୁର ସନ୍ଦେଶ
କହନ୍ତି ମହାତ୍ମା ନିଜ କାର୍ଯ୍ୟ ଶେଷ ।

ହେ ଉତ୍କଳବାସୀ, ସେ ସନ୍ଦେଶ ମାନ,
କର୍ମେ ଲାଗ ସଦା ହୋଇ ସାବଧାନ ।

ଭୁଲ ଏହି ପଥେ ମିଳବ ମୁକତି
ସେହ ମୋର ଏହି ଶଦାସ୍ତ୍ର ବଚତି ।

ହୋଇଅଛୁ ଏବେ ହବା ଅବସାନ,
ଭଦରକେ ଆସି ପହଞ୍ଚିଛୁ ଜାନ ।

ଭଦରକ ମୋର ଅତି ପ୍ରିୟସ୍ଥାନ,
ଏଠା କର୍ମେ ମୋର ପଡ଼ିଲ ହମ୍ଲାନ ।

ଏଠା ବାହାଦୁର ବଡ଼ ପରଚଣ୍ଡ,
ତାଙ୍କ ଦମ୍ଭରେ ମୋ ଆଦ୍ୟ କାରାଦଣ୍ଡ ।

ସାନ ବଡ଼ କେତେ କର୍ମୀ କଷ୍ଟାଗର,
ଦେଖିଛନ୍ତି କେତେ ଥର ମାମୁଁ ଘର ।

ତଥାପି ସ୍ୱରାଜ୍ୟ ଯୋଗ ନୁହେଁ ଊଣା,
ବଢ଼ନ୍ତି କର୍ମୀଙ୍କ ବଳ ଚତୁର୍ଗୁଣା ।

ପଡ଼ିଲେ ମର୍ଷିଆ ଅଦ୍ଭୁତ ଅନଳେ
ନ ଲିଭେ ସେ ଅଗ୍ନି ଦାଉ ଦାଉ ଜଳେ ।

ପଦାଘାତ କେହି କଲେ ନାଗ-ଚୂଳେ,
ନାଗ କି ପଳାଏ ପସିଣ ଆକୁଳେ ?

ଭଦରଖ କର୍ମୀ ଧନ୍ୟ ତୁମ୍ଭ ବଳ !
ଏପରି ସାଧକ ଲୋଡ଼ଇ ଉତ୍କଳ ।
ତେଜ ସବୁ ମାୟା ପରିବାର ସ୍ନେହ,
ସାଳନ୍ଦୀ-ପୂଜନେ ଆରମ୍ଭିଛ ଯୋଗ ।
'ମନ୍ତ୍ର ସିଦ୍ଧି କିମ୍ବା ଶରୀର ପାତନ'
ଜାଣେ ମୁଁ କରିଛ ଏହି ମହାପଣ ।
ଏଣୁ ପଣ ଏକା ଭଦ୍ରଖ ଜଗତ
ସାଧୁ ସମାଗମେ ଯା ରେଣୁ ପବିତ୍ର ।
ନୀଳାଚଳଯାତ୍ରୀ ପ୍ରେମିକ ନିମାଇଁ
ଥିଲେ ପରା ଏଥି କେତେ ଦିନ ପାଇଁ !
ସେ ଶୁଭ ଦିନର ପୁଣ୍ୟ ନିଦର୍ଶନ,
ରଖିଛନ୍ତି ଭଦ୍ରଖ ଜନ୍ମ ଗଣ୍ଠି ଧନ ।
ଏବେ ପୁଣି ହେଲେ ଗାନ୍ଧୀ ମହାମତି
ଭଦ୍ରଖ ଅତିଥି ଅହିଂସା ମୂରତି ।
ଭାରତବାସୀ ହିନ୍ଦୁ ମୁସଲମାନ
ଏ ଆତିଥ୍ୟ ନୁହେ ସାମାନ୍ୟ ସମ୍ମାନ
ଜଗତର କାଳକୁ ପୁଅ ନାତି ପାଇଁ
ଏ ସୌଭାଗ୍ୟ ସ୍ମୃତି ରଖିବ କି ଭାଇ ?
ଛାଡ଼ି ତେବେ ମନୁଁ ଭେଦ ଅଭିମାନ,
ବେଦ କୋରାନରେ କର ସମଜ୍ଞାନ ।

ହିନ୍ଦୁ ମୁସଲମାନ ବୌଦ୍ଧ ଖ୍ରୀଷ୍ଟିଆନ
ଶିଖ ଜୈନ ଯେତେ ଭାରତ-ସନ୍ତାନ ।
ଯେତେ ଧର୍ମ, ଯେତେ ବର୍ଣ୍ଣ-ଜାତି-କୁଳ
ଭାରତ-ଜନନୀ ସମସ୍ତଙ୍କ ମୂଳ ।
ଏକ ଆଶା ଏକ ଲକ୍ଷ୍ୟ ଏକ ଧ୍ୟାନ,
ଏକସ୍ଥ ଅନ୍ତୁଡ଼ି ଏକସ୍ଥ ଶ୍ମଶାନ ।
ଏକ କର୍ମକ୍ଷେତ୍ର, ଏକ ମାତୃପଦେ
କର ଏକପ୍ରାଣ ସମସ୍ତେ ବିପଦେ ।
ଏକତା ମନ୍ତ୍ରରେ ରଖ ସଦା ମତି
ହେବ ଏଥି ଭାବେ ସ୍ୱରାଜ୍ୟ ପ୍ରାପତି ।
ଉଦରଖ ଭାଇ ହିନ୍ଦୁ ମୁସଲମାନ,
ଜାଣେ ମୁଁ ଧରିଛ ହୃଦେ ବଡ଼ ଟାଣ ।
କେତେ ପ୍ରଲୋଭନ; କେତେ ପ୍ରତାରଣା,
କେତେ ବାଧାବିଘ୍ନ, କେତେ ଉତ୍ପୀଡ଼ନା,
ଏଡ଼ିଅଛ ସବୁ ନିର୍ଭୀକ ଅନ୍ତରେ,
ଚାଲିଅଛ ଦମ୍ଭେ ସ୍ୱରାଜ-ପଥରେ ।
ରଖ ଏହି ଦମ୍ଭ ଦୃଢ଼ ନାହିଁ ଭୟ,
ତୁଅନ୍ତୁ ବିପଦେ ତ୍ରିଭୁବନ ସାହା ।
ଉଦରଖବାପି, ଆଉ ଏକ କଥା
ପଡ଼େ ଏବେ ମନେ ଦେବ ମର୍ମବ୍ୟଥା ।

ବନ୍ଦୀର ଆତ୍ମକଥା

ଯେତେ କାଳ ମୋର ଥିବ ଏତେ ଆୟୁ,
ବହୁଥିବ ଯେତେବେଳ ପ୍ରାଣବାୟୁ;
ଥାଏଁ ଯହିଁ ରହିଁ ଦୂରେ ବା ନିକଟେ,
ଲିଭିବ ସେ ଦୁଃଖ-ଦାଗ ଚିତ୍ତପଟେ ।

ଦୁଃଖିନୀ ଜନନୀ କରୁଣ କୁହାଟ
ଲାଗେ ଯେତେବେଳେ ଭେଦି ଶୈଳ ବନ ଘାଟ,
ସାଗରୀ ସଲିଳେ ପ୍ରତିଧ୍ୱନି ତାନେ
କ୍ରନ୍ଦନ ନିନାଦ ବାଜଇ ମୋ କାନେ ।

ଉଦ୍ଭ୍ରାନ୍ତ ଜନନୀ ତର ପ୍ରତିବେଶୀ
ଜନନୀ ଦୁଃଖ କି ଜନ୍ମିବ ବିଶେଷେ ।
ଜାଣିଛ, ଶୁଣିଛ ସବୁ ରକ୍ତପାତ,
ପଡ଼ୋଶୀ ଯେପରେ ସହିଛ ଆଘାତ ।

ଚାପିତ ଜନନୀ ପ୍ରଜା ପ୍ରତି ସଦା
ରଖିଥିବ ଭକ୍ତି ସୋଦର-ଶରଧା ।
ଜନନୀ ପିଠିକୁ ନାହିଁ ଭରଷ,
ଥାନ୍ତା ଯେବେ ମୋର ଉଦ୍ଗମ ପକ୍ଷ,

ଉଡ଼ିଯାଇ ଦେଖି ଆସିଥାନ୍ତି ଥରେ
ଜନନୀ ପ୍ରଜାଙ୍କୁ କେଉଁ ଭଙ୍ଗା ଘରେ ।
ଆଉଁସି ପିଠିରେ ପ୍ରହାର-ରେଖ
ଦେଇ ପାଇଥାନ୍ତି ପରାଣେ ଆଶ୍ୱାସ ।

ପରସ୍ପରର ସତ ସନ୍ନିଧାନେ
ମଲେ ଦ୍ରୁଜା ଦେଶ ଯହିଁ ଅଗ୍ନିବାଣେ;
ନସ୍ୱଦ ନର୍ଦ୍ଦୋଷ ଦେବ ଶୋଣିତ
କରିଛି ଜନକାଭୂମି ଯହିଁ ସିକ୍ତ,
ସେ ଶୁଦ୍ଧ ମୃତ୍ତିକା ଲଗାଇ ମୁଁ ଶିରେ,
ତେଜି ଦେହମାର ସରୋବର ତୀରେ,
ଲଭୁଥାନ୍ତି ଥରେ ଅନ୍ତରେ ସାନ୍ତ୍ୱନା,
ଅପୂର୍ଣ୍ଣ ରହିଲା ଆହା ଏ ବାସନା !
ଲୋଡ଼ୁଥିଲେ କେତେ ଥର ମୋ ଆଗମ,
ଆସି ନ ପାରିଲି କେବେ ମୁଁ ଅଧମ ।
ଯାଉଥିଲା ଥରେ ସ୍ୱଜ ଆମନ୍ତ୍ରଣ,
ମରୁଥିଲେ ଲୋକେ ଯେବେ ଅନଶନେ ।

ଆସିଥିଲେ ଯଥାକାଳେ ଆଉ ବାରେ
ପଡ଼ି ନ ଥାନ୍ତେ ବା ପ୍ରଜା ଅତ୍ୟାଚାରେ ।
ରହିଛି ମନେ ଏ ଥର ଅବଶୋଷ,
ସଦା ଦହୁଥାନ୍ତି ମାଗି ନିଜ ଦୋଷ ।
ଏଣୁ ଯେ କନକା, ଆସିଛି ମୁଁ ଉଡ଼ି,
କି ଦାରୁଣ ଦୃଶ୍ୟ ! ଯାଏ ଚେତା ବୁଡ଼ି ।
ଯମଦୂତ ପ୍ରାୟେ ଜ୍ୱର ଗର୍ଜୁଥାଟ,
ବୁଲନ୍ତି ଚୌଦିଗେ ଗ୍ରାମ ଦାଣ୍ଡ ବାଟ ।

## ବନ୍ଦୀର ଆତ୍ମକଥା

ଲୁଟନ୍ତି ପରଜା ଘର ବାଡ଼ିଖେତ,
ମାରନ୍ତି ସ୍ବପୁତ୍ରା ନାହିଁ କୁ ବା ବେତ;

କୁଳଙ୍ଗନା ପରେ ଘୋର ଆକ୍ରମଣ
ସ୍ଵଜନେ ବଧିର କରଇ ରୋଦନ ।

ଜନତାର ଆର୍ତ୍ତଧ୍ୱନି ଚଉପାଶେ
ପ୍ରେତ ଆତ୍ମା ଯେନ ଉଡ଼ଇ ଆକାଶେ ।
ଛନ୍ ଛନ୍ ରକ୍ତ ପଡ଼ି ତହୁଁ ତଳେ,
ସେ ରକ୍ତ ଭୀଷଣ ଅଗ୍ନିଶିଖା ଜଳେ ।
ସିଞ୍ଚି ସିଞ୍ଚି ଶୁଷ୍କ ଗୋନ୍ଦଧା ଜଳ,
ନ ଲିଭୁ ପ୍ରବଳ ଜଳେ ସେ ଅନଳ

ଶୁଭେ ଚଉଦିଗେ କାତର ଚିତ୍କାର;
ପଳାଏ ପରଜା ଛାଡ଼ି ଘରଦ୍ୱାର ।
ପଥେ ଗର୍ଭିଣୀର ଭୟେ ଗର୍ଭସ୍ରାବ,
ଉଠଇ ମୋ ଗାତ୍ରେ ଶକଟାଳ ଗବ ।
ମହା ବିପର୍ଯ୍ୟୟ, ମହା ବିଭୀଷିକା,
ଜନ୍ମେ ମହାତଙ୍କ ଦୁଃଖିନୀ କମଳା ।
ବହେ ଅବେଗଶ ଝଡ଼ ଝଞ୍ଜା ବାତ ।
ଏ କି ଭୟଙ୍କର ଅଦ୍ଭୁତ ଉତ୍ପାତ ।
ଏ କି ମୋ କଳ୍ପନା-ସତ୍ୟ ନା ସ୍ୱପନ ?
ବାଜେ ରେଳଘଣ୍ଟି, ଆସିଲା ଚେତନ ।

ଆଜ ଏକ ଘଣ୍ଟି ଗୁଡ଼ଦେବ ରେଳ,
ଉଦରଖେ ପୂର ଆସିଲ ମୋ ବେଳ ।

ଥାଅ ଗୋ ସାଳଦ୍ଧ ! ଥ ଅ ଉଦରଖ,
ଦୁଃଖିଗ ଜନକାଠାରେ ସ୍ନେହ ରଖ ।

ଥାଅ ଗୋ ଜନକା ! ଭୋଗି ଭାଗ୍ୟ-ଲେଖା,
ବଞ୍ଚିଥିଲେ ପୁଣି ହେବ କେବେ ଦେଖା ।

ନ ଛେଳ ସାହସ ନବଣ ନ ହୁଅ,
ବନ୍ଧିଛୁ ନପ୍ନୁ ତୋର ବହୁ ଲୁହ ।

ତୋର ଶତ ଶତ ନିଷ୍ଠ ସନ୍ତାନ,
ସହୁଛନ୍ତି କାପେଜ୍ଞେଶ ଅପମାନ ।

ସହ୍ୟ ଏତେ କଷ୍ଟ ମନେ ନାହିଁ ଦ୍ୱେଷ,
ନାହିଁ ହୃଦେ ହିଂସା ଦ୍ୱେଷ ସମାବେଶ ।

ମଲେ କନ୍ତୁ ହାତ ନାହାନ୍ତି ଉଠାଇ,
କର୍ମ କରୁଛନ୍ତି ଧର୍ମ ଅନୁଯାୟୀ ।

ଭୋଗିବୁ ପରାଣେ ପୀଡ଼ା ଆସେ ଛନ୍ତ,
ଜାଗିଛନ୍ତି କନ୍ତୁ ପରଜା ଟକେଣ ।

ଦେଉ [illegible] ହେବ ଆଜ୍ଞା ଯେ ପାଚନା,
ସତ୍ୟ [illegible] ଜର ସତ୍ୟର ସାଧନା
ସତ୍ୟ [illegible]ମାନବର ସନ୍ତ ପରକାଶେ
ଭୀମ [illegible] ନାଶେ ସତ୍ୟ ପାଶେ ।

ଭୋଗି ଯେତେ ପ୍ରଜା ଘୋର ଅତ୍ୟାଚାର,
ଆତୁରେ କରଇ କରୁଣ ଚିତ୍କାର,
ଧାରବେ ଗଡ଼ାଏ ନୟନୁ ଲୋତକ,
ହୁଏ ଉତପ୍ତ ତାର ଗ୍ରନ୍ଥି ଦଳ ଦଳ,
ନବଣ ହୃଦୟ ବହେ ଦୀର୍ଘଶ୍ୱାସ,
ହେ କନକାବାସୀ ! ରଖ ଏ ବିଶ୍ୱାସ,
ସେ ଉଷ୍ଣ ନିଶ୍ୱାସ ଅଶ୍ରୁ ବିସର୍ଜନ,
ସେ ଦାରୁଣ ନାଦ ପ୍ରାଣ ପ୍ରକମ୍ପନ,
ନୁହେ ନିରର୍ଥକ, ନ ଯାଏ ବିଫଳ,
ହୁଏ ସେ ଲୋତକେ ହିମାଚଳ ଜଳ ।
ସେ ନାଦେ କମ୍ପଇ ସ୍ୱର୍ଗ ସିଂହାସନ,
ଶୀତଳ ସେ ଉଷ୍ଣ ଶ୍ୱାସେ ହୁତାଶନ ।
ସେ ପ୍ରାଣ ପ୍ରକମ୍ପେ କମ୍ପେ ବସୁମତୀ;
ଭାଳେ ପ୍ରକୃତିର ଏ ଭୀମ ଶକତି ।
ପ୍ରପୀଡ଼ିତ ପ୍ରଜା ହୃଦୟ ନିଃସାର,
ମନ୍ତ୍ରେ ସାବଧାନେ କାଳ ବଜ୍ରାଘାତ ।
ଅଲକ୍ଷିତେ କରେ ଶକ୍ତି ଆୟୋଜନ,
ନ ଦେଖଇ ଯାହା ଅତ୍ୟାଚାରୀ ଜନ;
ଆସେ ଯେତେବେଳ, ପାଚେ କର୍ମଫଳ,
ସହସା ସେ ବଳେ କମ୍ପେ ଜଳ ସ୍ଥଳ !

ଦୁଃଖିତ ଜନତା ନ ହୁଅ ଆତୁର,
ହେଉ ନିର୍ଯ୍ୟାତନ ଧନଦ୍ରବ୍ୟ ଚୁର ।
ଧର୍ମପଥେ ଜୟ ସଦା ସୁନିଶ୍ଚୟ,
ରଖ ହୃଦୟରେ ଏ ଦୃଢ଼ ପ୍ରତ୍ୟୟ ।
ମାତ୍ର ଆସିଅଛୁ ତୋର ଦୁଃଖ-ରାତ୍ର,
ଲଭ ନିଜ ଦାବୀ ଦମ୍ଭ କର କ୍ଲାନ୍ତ ।
ନିଜ ଅଧିକାର ବୁଝି ତ୍ୟଜ ଭୟ,
ଧୈର୍ଯ୍ୟ ଧର, ହେବ ନ୍ୟାୟପୂର୍ଣ୍ଣ ଜୟ ।
ପାଇବେ ତୋ ପୁଏ ନ୍ୟାୟ ଅଧିକାର,
ଭୁଞ୍ଜିବ ଉତ୍କଟ ଶିର ଅତ୍ୟାଚାର ।
ତୋ ଆଦର୍ଶ ହେଉ ଜଗତେ ଅକ୍ଷୟ,
ଜାଗୁ ପ୍ରଜାକୁଳ ଛୁଟୁ ରାଜଭୟ ।
ମୋ ଶୁଦ୍ଧ କାମନା, ହେଉ ଦେଶଜନ
ଶେଷ, ଏଥି ମୋର ଏତିକ ସମ୍ବଳ ।
ଆଜି ମା [illegible]-ବନ୍ଦାରଣୀ
ଜୟ [illegible]ଣୀ !
କରେ [illegible] ବନ୍ଦଣା ପ୍ରଣତ,
ଢାଅ ମୋ ହୃ[illegible] ମାତୃସ ଶକ୍ତି ।
ମୋ ସାଧନା [illegible] ଗୀତ ହେଉ ତାର,
ମୋ ପ୍ରାଣ [illegible] କର ଉଦ୍ଧାର ।

ବନ୍ଦୀର ଆତ୍ମକଥା

ଜୟ ମା କରୁଣା ଉଦୟଖ ପ୍ରଭ,

ଉଦୟଖବାସୀ ତୋ ଶିଶୁ ସନ୍ତତ ।

ହୁଅନ୍ତୁ ବନ୍ଦସ୍ଥ କର୍ମଠ ସାହସୀ,
ଗଲେ ଯାଉ ପ୍ରାଣ ତାଙ୍କ ବୁକେ ଅସି ।

ନ ଫେରନ୍ତୁ କେବେ ପଛକୁ କାତରେ,

ସ୍ୱରାଜ୍ୟର ଶାନ୍ତି-ସଂଗ୍ରାମ ପ୍ରାନ୍ତରେ ।
କେତେ କ ଭାବନା ଜାଗେ ମୋ ଅନ୍ତରେ ।
ଜଣାଇବ କଥା ଏବେ ତରତରେ ।

ଥିଲେ ମୋର ବଳ ଓହ୍ଲାଇ ଏ କ୍ଷଣେ

ଲଭୁଥାନ୍ତି ସବୁ ଶ୍ରୀପଦ ଦର୍ଶନେ ।

ମାତ ଜଗଦମ୍ବା କୁଳକୁଣ୍ଡଳନୀ
ଅଗୋଚର ତୋର କଥା ଗୋ ଭାବନେଁ ।

ପ୍ରପୀଡ଼ନେ ପ୍ରଜା କରେ ହା ହା ନାଦ,

ମିଳ ନାହିଁ କି ମା ତୋତେ ଏ ସମ୍ବାଦ ?

ଉନ୍ମୁକ୍ତ ପବନେ ଉନ୍ମୁକ୍ତ ଅମ୍ବରେ
ସ୍ୱଚ୍ଛନ୍ଦ ପରାଣେ ବିହଙ୍ଗ ସଞ୍ଚରେ ।

ବନେ କରେ ପଶୁ ସ୍ୱଚ୍ଛନ୍ଦେ ବିହାର,
ନିର୍ଭୀକ ସେ, ନୁହେ ଅଧୀନ କାହାର ।

ଭାସି ତିମିଙ୍ଗିଳ ମତ୍ସ୍ୟ ଜଳଚର
ଖେଳନ୍ତି ସଲିଳେ ନ ଜାଣନ୍ତି ଡର ।

ଭାରତେ କେବଳ ନର ନହିଁ ହୀନ,
ନୁହେଁ ସେ ସ୍ୱଚ୍ଛନ୍ଦ, ନୁହେ ସେ ସ୍ୱାଧୀନ ।
ନାହିଁ ଭବତଳେ କାହିଁ ତାର ସ୍ଥାନ,
ସହନ୍ତ ତାଡ଼ନା ଘୋର ଅପମାନ ।
ନିଜ ବାସେ ହେଲେ ନାହିଁ ତାର ଶାନ୍ତି,
ଭୋଗଇ ଲାଞ୍ଛନା କାହିଁ କେତେ ଭ୍ରାନ୍ତି ।
ଭାରତ-ସନ୍ତାନ ଘୃଣ୍ୟ ଉପେକ୍ଷିତ,
ମାତ ଭାରତୀ ଶୃଙ୍ଖଳା ପିନ୍ଧିତ ।
ଭାରତ ବିଭବେ ଅପର ବିଳାସୀ ।
ଭାରତ-ନିବାସୀ ଚିର ଉପବାସୀ ।
ନହୁଷ ଯଯାତି ଶିବି ମହାଯଶା
ଶାସିଲେ ଯେ ରାଜ୍ୟ ତାର ଏହି ଦଶା !
ରାମ ଯୁଧିଷ୍ଠିର ଯାର ନରପତି,
ସେ ପ୍ରଜାକୁଳର ଆଜ ଏ ଦୁର୍ଗତି !
ସମଦର୍ଶୀ ଗୁଣେ ଯହିଁ ଆକବର,
ତୋଷିଲେ ସକଳ ପରଜା-ଅନ୍ତର,
ସେ ରାଜ୍ୟର ପ୍ରଜା କେତେ କାଳ ଆଉ,
ଭୋଗିବେ ଉତ୍କଟ ରାଜମାନ୍ତ ଦାଉ !
ଯେତେ ଦେବାଦେବୀ ଅଛନ୍ତି ଉତ୍କଳେ,
ଯାଆନ୍ତି ପରା ସେ ସର୍ବେ ମଳାଚଳେ ?

ବସେ ପଗ ଚର୍ଚ୍ଚି ଦେବଯଜ୍ଞ ନିତି,
ପଢ଼େ ନାହିଁ କି ଏ ରାଜ୍ୟ ଗଣ୍ଡ ସ୍ଥିତି ?
ପ୍ରଜା ଭୋଗେ ଯେତେ ଦୁଃଖ ଦୁବସ୍ତର ।
ସେସବୁ ଚର୍ଚ୍ଚି କି ନ ହୁଏ ବସ୍ତର ?
ନ ଦେଲେ ମା ଥରେ ପ୍ରଭୁଙ୍କ ନିକଟେ,
ଏ ଦୁଃଖ ଗୁହାରି କରିବୁ ଆଜକେ ।
ବିସ୍ତାର କହିବୁ ସବୁ କଥା ଜାଣେ;
ଶୁଣିବେ ଯେପରି ଅବଶ୍ୟ ଅବଧାନେ ।

କରୁଣା କଟାକ୍ଷେ ଗୃହାନ୍ତୁ ସେ ବାରେ,
ବାଜିବ ସ୍ୱରାଜ୍ୟ-ଶଙ୍ଖ ସିଂହଦ୍ୱାରେ
ଉଡ଼ିବ ଅମ୍ବରେ ସ୍ୱରାଜ୍ୟ-କେତନ
ପ୍ରତିଷ୍ଠିତ ହେବ ସ୍ୱରାଜ୍ୟ-ଶାସନ ।
ଦେବପ୍ରତିଷ୍ଠିତ ମହର୍ଷି ସମ୍ମତ
ଜାଗିବ ଭାରତ, ଦେଖିବ ଜଗତ ।
ଧନଜନ ଧର୍ମେ ଏକତା ସମତା,
ଶାନ୍ତି ଉତାରିବେ ସ୍ୱରଗେ ଦେବତା ।୧୯୩।



# ଧର୍ମପଦ

( ୧ )

ବାର ବରଷର ବାଳୁତ ପୁଅ ସେ
ବୁଦ୍ଧିମନ୍ତ ସୁକୁମାର,
ଦେଖି ନାହିଁ କବା ଶୁଣି ନାହିଁ କେବେ
କଏ ସେ ବାଣୀ ତାହାର ।

ଜନମ କୋଳରେ ବଢ଼ିଛି ଖେଳରେ
ଆଜନମୁଁ ଅତି ସୁଖେ,
ମଅ ବୋଲି କେବେ ମାତୁଙ୍କ ବୋଲିବା
ଆଣି ନାହିଁ ଦେହେଲ ମୁଖେ ।

ସ୍ୱାମୀଙ୍କ ଚରଣ ଭୁଲିଛନ୍ତି ମାତା
ପୁଅ ବଦନ ଅନାଇଁ,
ଦେହରେ ଟିକିଏ ଚଢ଼ଗଲେ ଧୂଳି
ସହି ନ ପାରନ୍ତି ସେହିଁ ।

ଶଇଶବ କାଳୁ କୁଳ ଆଚରଣ,
ଶିଖାନ୍ତି ଅତି ଯତନେ,
ଯାହା ଦେଖେ ଶୁଣେ ଶ୍ରୁତିଧର ପରି
ସବୁ ସେ ରଖଇ ମନେ ।

ଶିଶୁଗଣ ଯେବେ ଦାଣ୍ଡ ଧୂଳି ଖେଳେ
କରେ କେତେ ନବ ସୃଷ୍ଟି,
ଚୋଳଭ ଦେଉଳ ଗଢ଼ଇ ଅଞ୍ଜଳି
ଧନ୍ୟ ବିଚକ୍ଷଣ ଦୃଷ୍ଟି ।

ଦେଖି କାରିଗରି ତା କଳା ଚାତୁରି
ଆଶ୍ଚର୍ଯ୍ୟ ମଣନ୍ତି ଜନେ;
କହନ୍ତି, "ଆୟୁଷ ଥିଲେ ଏ ପିଲାଟି
ହେବ କେତେ ଲୋକେ ଜଣେ ।"

ପଚାରଇ ପୁଅ ଯେବେ ଶିଳ୍ପତତ୍ତ୍ୱ
କହନ୍ତି ମାତା ଉତ୍ତରେ;
"ପଢ଼ିଲେ ଜାଣିବୁ; ସବୁ ଆରେ ଧନ
ପୋଥି ଅଛୁ ଆମ ଘରେ ।"

ପାଞ୍ଚ ବର୍ଷ ବେଳେ ଗ୍ରାମ ଚାଟଶାଳେ
ଓଳିଂ ଛୁଆଁଇଲେ ଖଡ଼ି,
ଧୀରେ ଧୀରେ ପୁଅ ଅଳପ ଦିନରେ
ଗଲା ସବୁ ପାଠ ପଢ଼ି ।

ଗୀତା, ଭାଗବତ ପୁରାଣ ଚରିତ
ହୋଇଲା ଅଭ୍ୟାସ ତାର,
ଦେବାଳୟ ତୋଳା ପୁଷ୍କରିଣୀ ଖୋଳା
ହିସାବ ଯେତେ ପ୍ରକାର ।

ସଙ୍ଗ ଗୃହ ଲୋକେ ସନ୍ତ୍ରି ନ ପାରନ୍ତି
ଆନେ କରନ୍ତି ଆଦର,
ସମସ୍ତଙ୍କଠାରେ ସମ ସ୍ନେହ ତାର
ନାହିଁ କେହ୍ନି ପରାପର ।

ବୃଦ୍ଧାଳୀରୁ ଆସି ଘରେ ଶିଳ୍ପଶାସ୍ତ୍ର
ପଢ଼େ କରି ଏକ ଲୟ,
କାଠ ପାଷାଣରେ ଗଢ଼ଇ ମୂରତି
କେତେ ରଥ, ଦେବାଳୟ ।

ଦିନେ ବୃଦ୍ଧାଳୀରୁ ଫେରିଆସି ପୁଅ
ଜଗିଦେଲା ମାତା ପାଶେ;
ଆଖି ଥନଥନ, ବଦନ ମଳିନ
କଣ୍ଠରେ କଥା ନ ଆସେ ।

ପୁଅକୁ ଅନାଇ ମାତା ଅତି ଛନ୍ଦେ
ପଚାରନ୍ତି ବେଗେ ଦୁଃଖେ,
"କପାଳି ରେ ଧନ, ଝରସ ତୋ'ମନ
ହସ ନାହିଁ କପାଁ ମୁଖେ ?

ବୃଦ୍ଧାଳୀରୁ ଫେରି ଆନ ଦିନ କେତେ
ହରଷରେ କେତେ କଥା,
ଆଜ ତୋ ଏ ସ୍ଥିତି ଦେଖି ମୋର ଚିତ୍ତ
ଲାଗଇ ପରଣେ ବଥା ।

ଦେଉଛନ୍ତି ଦଣ୍ଡ ଅବଧାନେ ଅବା
ଗାଳିଦେଲେ ଆଜି ସ୍କୁଲେ,
ଧ୍ୟାନମାନ କର କଏ କି କହିଲା
କିବା ଦାଣ୍ଡେ ବାଟେ ଘାଟେ ?

ଫେଡ଼ି କହ ବାବୁ, ଘଟିଛି ଯା ସବୁ
ଛୁଟୁ ମୋ ମନୁଁ ସନ୍ଦେହ,
ମୁଁ ତ ଜାଣେ ତୋର ଗୁଣ ଆଚରଣେ
ସମସ୍ତେ କରନ୍ତି ସ୍ନେହ ।

କାନ୍ଦ କାନ୍ଦ ହୋଇ କପାଇଁ ରେ ବାଇ.
କଥା ନ ଆଣୁଛୁ ମୁଖେ ?
ନ ଜାଣୁ କି ବାବୁ ତୋ'ଏ ଭାବ ଦେଖି
ବଜ୍ର ପଡ଼ଇ ମୋ ବୁକେ !

ଲକ୍ଷେ ଦେବଦେବୀ- ପାଦ ସେବି ସେବି
ପାଇଛି ରେ ତତେ ଧନ,
କେତେ ମନ ମନ ରକ୍ଷୁଣୀ ଝଙ୍କାଳ
ତୁ ମୋର ଜୀବ-ଜୀବନ ।

ତତେ ଦୃଷ୍ଟି ବିନା କାଟୁଛି ମୁଁ ଦିନ
ଏକାକିନୀ ଏତେ କାଳ,
କହ ମନକଥା ମୋ କୁଳ-ଚନ୍ଦ୍ରମା
ଭିକାରୁଣୀ-ଗଳାମାଳ ।”

ମାତା ଆଶ୍ୱାସନା                ପାଇ ପଚ୍ଛେ ପୁଅ
ତେଜଣ ମନୁଁ ସନ୍ତାପ,
“କହ ମା, ସତେ କ                ଅଚ୍ଛୁ ଆମ ଭୁଜ;
କହ କିଏ ସେ ମୋ ବାପ ?”

କହନ୍ତ ଜନନୀ,                “କେବେ ତ ଏ କଥା
ପଚ୍ଚର ନ ଥିଲୁ ଥରେ,
ଚଟଶାଳୀରୁ ଆସି                କର୍ଣ୍ଣ । ବାବୁ, ଆଜ
ପଚ୍ଚରୁ ଏତେ କାତରେ ?”

କହେ ପୁଅ, “ଆଜ                ଚଟଶାଳୀରେ ଚଟେ
କହିଲେ ମତେ ଯେ କଥା,
ଲାଜ ଅପମାନେ                ତଳେ ମୁହିଁ ସଢ଼ି
ଟେକ ନ ପାରିଲ ମଥା ।

ଚଟଶାଳୀରେ ଯେବେ                ଲେଖୁଥିଲି ପାଠ
ଗୋଟାଏ ମୋ ଗଳା ଚଣ୍ଡ,
ନିକଟ ପିଲାକୁ                କହିଲି ଦେ ଭାଇ,
କଢ଼ାଇ ଦିଅ ସେ ଖଡ଼ ।

ମୋ କଥାରେ ସେ ତ                ଦେଲା ନାହିଁ ଖଢ଼
କରି କଲା ଉପହାସ,
‘ଭାଇ ଡାକ ଆଜ୍ଞା—                ଦିଏ ଅବାବୁଆ
ଏହାର କେତେ ସାହସ !”

ନ କନ୍ଦଣ କଣ୍ଟୁ　　　　ଅଳେପ ହସିଲେ
　　ତହିଁ ଆନ ପିଲାମାନେ,
ଲଜେ ପୋତ ମଥା　　　　ଗେ ଝାଳ ଉଠାଇ
　　ଅଣ୍ଡି ବସିଲି ମୋ ଥାନେ ।

ନ କର ସଙ୍କୋଚ　　　　ଫେଡ଼ ସତ କଥ
　　ଛୁଇଁକର ଏ ମୋ ଦେହ,
ଆମ କୁଳ କଥା;　　　　କାହାନ୍ତି ମୋ ପିତା,
　　ଯାଉ ମୋ ଭ୍ରମ ସନ୍ଦେହ ।”

କୋପେ ଜରଜର　　　　ଜନମା ଧଇଲ
　　ଭାଷନ୍ତି ଉଚ୍ଚେ ବଚନ,
“କଏ ସେହୁ ପିଲା　　　　ଦେଲା ଏହ୍ପଣ
　　ଅପମାନ ଅକାରଣ ।

ତା ମା’ ଏଡ଼େ ସତୀ,　　　　ମୋ ପୁଅକୁ ପୁଣି
　　କହେ ସେ ଅଣବାବୁଆ
ତା କଥାରେ ଛଳ　　　　କର କବା ଫଳ
　　ସେ କ ତ ଅଜ୍ଞାନ ଛୁଆ ।

ବୁଢ଼ା ବୁଢ଼ୀମାନେ　　　　କହୁଥାନ୍ତି ଯାହା
　　ଶୁଣିଛି ।ମୁଁ ପିଲାବେଳେ,
ଘରକ ପୁରୁଷ　　　　ଯଶ ପଉରୁଷ
　　ବୁଝ ବାବୁ, ଏଥୁଁ ଦେହେ ।

ସୃଷ୍ଟି ଆଦ୍ୟକାଳୁ        ଝଣ୍ଣବର୍ଣ୍ଣ, ଭଦ୍ଧି
ଆମ କୂଳ ଉତପତ,

ଏ କୂଳର ବଣ୍ଡ-        ବଡ଼େ ରଖିଛନ୍ତି
କେତେ ଅକ୍ଷୟ କାରଣ ।

ଇନ୍ଦ୍ରଦ୍ୟୁମ୍ନ ରାଜା        ତୋଳାଇଲେ ଯେବେ
ଶ୍ରୀକ୍ଷେତ୍ରେ ବଡ଼ ଦେଉଳ,

ଧକାଶ୍ରଣ ନାମା        ଦେଖୁ ଭାଦ୍ରଗର
ଭରଇଲେ ଆଗେ ପୂଜ ।

ପଇଷି ସଭଳେ        ଯୋଗ୍ୟ ଶିଳ୍ପୀ ବାଛି
ଲଗାଇଥିଲେ ସେ କାମେ,

-ତୋ ପୂର୍ବ ପୁରୁଷେ        ଶିରେ ଦେଲେ ଶାଢ଼ୀ
ପୁଣ୍ୟନୀଳାଚଳ ଧାମେ ।

କେତେ କାଳ ଅନ୍ତେ        ସେ ମନ୍ଦିର ଯେବେ
ସଂସ୍କାର କଲେ ଯଯାତି,

ତୋ ପୂର୍ବପୁରୁଷେ        ସେତେବେଳେ ତହିଁ
ରଖିଥିଲେ ବଂଶ ଖ୍ୟାତି ।

ଶେଷେ ସେ ଦେଉଳ        ତୋଳାଇଲେ ପୁଣି
ଶ୍ରୀ ଅନଙ୍ଗଭୀମ ରାଏ,

ଉତ୍କଳେ ଅକ୍ଷୟ        କୀର୍ତ୍ତିସ୍ତମ୍ଭ ପ୍ରାୟ
ଶୋଭେ ଯାହା ଅଦ୍ୟାଏ ।

ହେ ପୂର୍ବପୁରୁଷ- ବୁଦ୍ଧି କାରିଗର
ରହିଅଛି ତହିଁ ଜାଣ,
ଏଥିରୁ ରେ ବାବୁ, ବୁଝ ତୁ ଆପଣା
ବଂଶଗରିମା ପ୍ରମାଣ ।

ଖଣ୍ଡଗିରି-ଦେହେ ଢରଚିଲେ ଗୁମ୍ଫା
ଏହି ବଂଶ-କାରିଗରେ,
ଯହିଁ ଖାରବେଳ- ଶାସନ ନିଦେଶ
ରାଜେ ଅମର ଅକ୍ଷରେ ।

ରାଣୀହଂସପୁରେ ଶେଷ ଜୀବନରେ
ରାଣୀ ସଙ୍ଗେ ନରପତି,
ଯୋଗୀଜନ ମେଳେ ରହିଲେ ନିଶ୍ଚଳେ
ତେଜି ରାଜ୍ୟ ହେଲେ ଯତି ।

ବୈତରଣୀ-କୂଳେ ଯଯାତିକେଶରୀ
କଲେ ଯେବେ ମହାଯାଗ,
ସରଗୁଁ ଦେବତା ଆସିଥିଲେ ତହିଁ
ନେବାଲାଗି ଯେଝା ଭାଗ ।

ବନ ପରବତେ ବୈତରଣୀ ସ୍ରୋତେ
ହେଲା ବେଦ ପ୍ରତିଧ୍ୱନି,
ଯଜ୍ଞ-ଅନଳରୁ ଉଠିଲା ବରତା
ଉଜ୍ଜଳ ଯେବେ ଅବନୀ ।

ଗଢ଼ିଲେ ଯେ ଶିଳ୍ପୀ ପୂଣ୍ୟ ସ୍ମୃତିସ୍ତମ୍ଭ
ସପ୍ତମାତୃକା ମୂରତି,
ନ କର ସଂଶୟ ଜାଣ ଆପଣାକୁ
ତାଙ୍କର ବଂଶ-ସନ୍ତତି ।

ଏକାମ୍ର କାନନେ ଲଲାଟେନ୍ଦୁ-କୀର୍ତ୍ତି
ଅନୁପମ ଦେବାଳୟ,
ନିର୍ମିଲେ ଯେ, ତାଙ୍କ ରକ୍ତ ତୋ ଶରୀରେ
ତୁ ତାଙ୍କ କୁଳ-ତନୟ ।

ବାରବାଟୀ ଦୁର୍ଗ ମରାମତି ଲାଗି
ଶ୍ୱଶୁରେ ଗଲେ କଟକ,
ଯଥାକାଳେ କାମ ନ ସରିଲା ବୋଲି
ଦଣ୍ଡିଲେ ତର୍ଜ୍ଜି ଅଟକ ।

ବାହୁଡ଼ ନାହାନ୍ତି ଘରକୁ ସେ ଆଉ
କଟକେ ତେଜିଲେ ପ୍ରାଣ,
ସେହି ଭାବନାରେ ମଲେ ଶାଶୁ ମୋର
ଶୋକେ ହୋଇ ହତଜ୍ଞାନ ।

ଯେଉଁ ଦିନୁ ତୋର ବାପା ଯାଇଛନ୍ତି
ଘର ଛାଡ଼ି ପରବାସ ।
ମୋ ଦେହରୁ ବାବୁ, ଶୁଖିଛି ରକତ
ନାହିଁ ମୋ ଜୀବନେ ଆଶ ।

ତବେ ଗଲେ ମତେ ସ୍ୱର୍ଗ ପନ୍ଥ ଲଭେ
ମନୁଛୁ ମୁଁ ଘନ ଘନ,
ରହିଅଛୁ ପିତା ତୋ ମୁହଁ ଅନାଇ
ତୁ ମୋ ନୟନ-ସନ୍ତାନ ।

ଏତିକର କଥା କହୁଁ କହୁଁ ମାତା
ଢ଼ାଳିଲେ ଅଶ୍ରୁ ଝରଣ,
ତଳେ ମୁହଁ ପୋତି ଝଲପିଲେ ସତୀ
ବହେ ଅଶ୍ରୁ ଅବିରଳ ।

"କିପାଇଁ କହ ମା, କାନ୍ଦୁଛୁ କାତରେ
ଚକିତେ ପଚାରେ ପୁଅ,
ବସି ମାତା କୋଳେ ବସନ ଅଞ୍ଚଳେ
ପୋଛେ ତାଙ୍କ ନେତ୍ର ଲୁହ ।

"କାହାନ୍ତି ମୋ ବାପ, କେତେ ଦିନ ହେଲା
କି କାର୍ଯ୍ୟେ ଗଲେ ସେ କାହିଁ ?
କେତେ ଦୂର ପଥ ଏଥୁଁ ସେ ରହନ୍ତି
ମୁଁ କି ନ ପାରିବି ଯାଇ ?

ନ ଆସେ କି ତହୁଁ ବାରତା ଏଠାକୁ
ଅଛନ୍ତି କିଶ ସେ ଭଲେ ?
ଯିବାର ଉପାୟ କହ ମା, ତୁରନ୍ତେ
ବାର୍ତ୍ତା ଆଣିବି ମୁଁ ଚଳେ ।"

ପୁଅର ମଧୁର କୋମଳ ବଚନେ
ମାତା ପାଇଲେ ଆଶ୍ବାସ,
ଛନ୍ଦି ପୁତ୍ରମୁଖ କରତଳ ଅଗ୍ନାଦେ
ପକାଇ ଘନ ନିଃଶ୍ୱାସ ।

"ମହୋଦଧି ମୁଁ ଲେ, କ ଶକଳେ ଲୁଚ
ପୋଛୁ ଭଅଇ ମୋ ଧନ,
ଏହୁ ଭରସାରେ ବାର ବର୍ଷ ହେଲା
ରହିଛୁ ଧରି ଜୀବନ ।

ବାର ବର୍ଷ ହେଲା ଯାଇଛନ୍ତି ବାପ
ଦେଉଳ ଗଢ଼ିବା ପାଇଁ,
ଚୋଳାଉଛନ୍ତି ଯା ନରସିଂହ ଦେବ
ଗଜପତି ନରସାଇଁ ।

ଚନ୍ଦ୍ରଭାଗା ତୀର୍ଥ ସାଗର-ତୀରରେ
ଗଢ଼ାହେଉଛି ଦେଉଳ;
କହୁଛନ୍ତି ରଜା, 'କଳା କଉଶଳେ
ହୋଇବ ସେ ଦେବ ଅତୁଳ' ।

ଶିବାଇ ସାଁତରା ସ୍ଥପତି ପ୍ରଧାନ
ବିଶ୍ବକର୍ମା-କୁଳ ରାଇ
ବାର ଶ କାରିଗର ବାନ୍ଧୁ ଲଗାଇଲେ
କାମେ ବାରଣ ବଢ଼ାଇ ।

ସେହୁ ତାଳପତ୍ରେ ଗଲେ ସେ ତୋ ପିତା
ବାହୁଡ଼ି ନାହାନ୍ତି ଘରେ;
ସେତେବେଳେ ତୁ ମୋ ଗର୍ଭେ ସ୍ଥିର ମାସ,
ଜନ୍ମିଲୁ ଛ' ମାସ ପରେ ।

କହୁଥିଲେ ଲୋକେ, 'ହେବ ସେ ଦେଉଳ
ଧର୍ମଦେବତାଙ୍କ ରଥ,
ପୂର୍ବେ ଦୁର୍ଗ ରୂପ ଉତ୍କଳର ପୁଣି
ଓଗାଳିବ ସିନ୍ଧୁ ପଥ ।'

ଧର୍ମଦେବତାଙ୍କ ଦେଉଳରେ ବାପ
କରୁଥିଲେ ବୋଲି କାମ,
ସୁମରଣେ ତାଙ୍କ ଶରଧାରେ ଦେଲି
'ଧର୍ମପଦ' ତୋର ନାମ ।

ଦେଖି ନାହିଁ ତୀର୍ଥ ଶୁଣିଛୁ କେବଳ
'ସାତ ଥର ଯିବ ଗଙ୍ଗା,
ଥରେ କେହୁ ଯେବେ ଯିବ ଚନ୍ଦ୍ରଭାଗା
ମୁଣ୍ଡ ପଡ଼ିଯିବ ଭଙ୍ଗା ।'!

ଯିବା ଦିନୁଁ ବାପ ବାର ବର୍ଷ ହେଲା
ପାଇ ନାହିଁ ମୁଁ ବାରତା,
ତାଙ୍କ ଲାଗି ନିତି ଫୁଲାଇ ବସାନ୍ତି
ପୂଜଇ ଚନ୍ଦ୍ର-ଦେବତା ।

ଅଖଣ୍ଡଳ ଜାଳ ଗ୍ରାମଦେବତାଙ୍କ
ପାଦେ ପଡ଼େ ଅନୁକ୍ଷଣ
ରତ୍ନବାର-ବ୍ରତ ପାଳ ମୁଁ ଲଭିଛୁ
ଧର୍ମଦେବତାଙ୍କ ଶରଣ ।"

କହେ ପୁଅ ଡାକି, "ଯିବ ଚନ୍ଦ୍ରଭାଗା,
କରିବ ବାପାଙ୍କୁ ଦେଖା,
ଆଣିବ ତାଙ୍କର କୁଶଳ ବାରତା
ତାଙ୍କ ନିଜ ହାତ ଲେଖା ।"

"ମୋ ନେତପିତ୍ତୁଳ, ଛାଡ଼ି କି ତୋତେ
ପାରିବି ମୁଁ କ୍ଷଣେ ରହି ?
ମୋ ଅନ୍ଧାର ଘରେ ତୁ ଏକା ପ୍ରଦୀପ
ମୋ ହୃଦ-ସିନ୍ଧୁର ମଣି ।

ଆଜ୍ଞନ୍ତୁ ତୁ ମୋର ଜୀବନ ବୋଇତେ
ଅମର ଆଶା ଲଙ୍ଗର;
ତୋ ବିନେ ନ ଚଳ ଯିବ ସିନା ବାବୁ
ଶୋକ ସିନ୍ଧୁ ଜଳେ ବୁଡ଼ି ।"

କହେ ପୁଅ ପୁଣି କରାଇ ସାଦରେ
"ଯିବ ନଷ୍ଟେ ବାଗ ପାଣ,
ମନ ଡୋବେ ମା ଗୋ ! ଦିଅ ଅନୁମତି
ଫେରିବି ନ ପୁଣି ମାସ ।

ବାପ ସଙ୍ଗେ ଯିବୁ          ଦେଖିବୁ ସୁଯୋଗେ
ଜାତପୁଅ ଶତ ଶତ,

ଦେଖିବୁ କପର          ଗଢ଼ା ହେଉଅଛି
ଧର୍ମଦେବତାଙ୍କ ରଥ ।

ଚନ୍ଦ୍ରଭାଗା ତୀର୍ଥେ          ସ୍ନାନ କରି ସୁଖେ
ଦେଖିବୁ ସୂର୍ଯ୍ୟ-ଉଦୟ,

ଡର ନାହିଁ ଭୟ          କହ ମା, ବାପାଙ୍କୁ
ଦେବ ମୁଁ କି ପରିଚୟ ?

କହନ୍ତ ମା, "ବାବୁ,          ଯିବାଲଗି ଯେବେ
କରିଅଛୁ ଦୃଢ଼ପଣ,

କିଏଁ ନବାରିବ,          ନବାରଣେ ପିତା
ହେବ ତୋ ମନେ କଷଣ ।

ଦେଖି ବାପ ତୋତେ          ହେବେ ହରଷିତ
ହୃଦେ ଭରି ଯିବ ପରତେ,

ଦେଖିବୁ ଆବର          ଓଡ଼ିଶା-ଶିଳ୍ପୀର
ଅଦ୍ଭୁତ କର୍ମ ଜଗତେ ।

ବୟସରେ ଲଘୁ          ହେଲେ ହେଁ ବାଳୁତ
ବୁଦ୍ଧି ତୋର ସୁକୁମାର,

ବୁଝାଇ ବିଶେଷେ          କହିବ ମୁଁ କିସ ?
କର ଯାହା ତୋ ବିଚାର ।"

କହୁଲେ ଅବର                    ବାଷ୍ପ ନାମ ଭାର
ଭୂମିରେ ସେ ଦେଇ ଲେଖି,
“ବାପ ପୁଅଙ୍କର                    ଦେବ ଚନ୍ଦ୍ରଶାଳି
ଦେବାମାନେ ଦେଖାଦେଖି ।

ତୋ ରୂପ ଆକୃତ                    ପିତୃ ପ୍ରକୃତ
ଏକା ଗୁଣେ ଯେହ୍ନେ ଢଳା,
ନେତ୍ର ନାସା ଆସ୍ୟ                    ଲଲାଟ ପ୍ରକାଶ
ବାପ-ମୁଖ ଖୋଳଭଳା ।

ନୟନେ ନୟନ                    ହେଲେ ଭେଟାଭେଟି
ହେବ ପରଶ-ମିଳନ,
ସେ ଯାହାର ତାକୁ                    ଲୋଡ଼େ ସେ ସହଜେ
କରିବାକୁ ଆଲିଙ୍ଗନ ।

ତଥାପି ନ ବଳେ                    ମନ ତଳେ ଏକା
ଗୁଡ଼ବାକୁ ଏତେ ଦୂର,”
“ନ ଡର ଲୋ ବୋଉ                    ସଙ୍ଗେ ଯିବ ମୋର
ଘର ବଳଆ କୁକୁର ।

ବଳଆ ବାପାଙ୍କୁ                    ନ ଚିହ୍ନିଲେ ତାଙ୍କୁ
ବାପା ଚିହ୍ନିବେ ନିଶ୍ଚୟ,
ଗ୍ରାମ ନାମ ମୋର                    ଜନମ-ବୃତ୍ତାନ୍ତ
କହି ଦେବ ପରିଚୟ ।”

"ମର ଯାଏ ଆହା — ମୋ ଧନମାନଙ୍କ
କେଉଁଠେ ବୁଦ୍ଧି କି ସାହସ ?
ଜଗନ୍ନାଥେ କୃପା- — କଲେ ତୁ ରଖିବୁ
କୁଳ-ଗଉରବ ଯଶ ।"

( ୨ )

ତ୍ରୟୋଦଶୀ ତିଥି — ଶୁଭ ବେଳ ଦେଖି
ପୁଷ୍ୟ ଲଗ୍ନ ଅନୁକୂଳ,
ଜାଗୁଳାଇ ଭୁଜ — କାନରେ ଜନମ
ବାନ୍ଧିଲେ ପ୍ରସାଦ ଫୁଲ ।

ସ୍ୱାମୀ ଲାଗି ପୁଣି — ବାଢ଼-ଜରକୋଳ
ଦେଲେ ଯାଉଁଳରେ ବାନ୍ଧି,
କହିଲେ, "ଏଥିରେ — ବାପାଙ୍କ ଶରଧା
ନେବୁ ଯତନେ ସମ୍ଭାଳ ।

ବଳଆ ସଙ୍ଗତେ — ବାଢ଼-ଜରକୋଳ
ଦେବ ଆନ ଯଉତୁ,
ଲକ୍ଷ୍ମୀ ନରସିଂହ — ଶ୍ରୀଦୁର୍ଗା ମାଧବ
ହୁଅନ୍ତୁ ତୋର ଆଶ୍ରୟ ।"

ଖାର ଧର୍ମଦେ        ମାତା ଆଶୀର୍ବାଦ
ଯେମନ ହୋଇଲା ବାହାର,

ଯାଏ ପୂର୍ବ ମୁଂଖ        ବଳିଷ୍ଠ କୁକୁର
ବୃର୍ଲେ ପଛେ ପଛେ ତାର ।

ଅପନ୍ତର ବାଟ        କେତେ କେଣାଘାଟ
ବନ ସ୍ଥଳ ନଘ ସର,

ଗୁଲେ ଧର୍ମପତ        ନ ଗଣି ପ୍ରମାଦ
ଦକା ଲଗି ନଗନ୍ତର ।

ଗୁଡ଼କଙ୍କ ପଛେ        ଗୋଡ଼ାଏ ଉଛାହେ
ବଳଆ ଧାଏଁ ତା ପଛେ

ଚନ୍ଦ୍ରଭାଗା-ଯାତ୍ରୀ        ଧର୍ମଦେ ବୋଲି
କେତେ କାହିଁ ବାଟ ଘାଟେ ।

ପସ୍ତତ ପସ୍ତର        ଚନ୍ଦ୍ରଭାଗା ତୀର୍ଥ
ହେଲା ଯାଇଁ ପରବେଶ,

ଲାଗିଛନ୍ତି ପନ୍ଥୀ        ବାରଣ ବଣ୍ଡାଇ
ଭଣ୍ଡାମାନହିଁ ନମେଷ ।

ଦିନ ରାତି ପନ୍ଥୀ        ଜଣା ନ ପଡ଼ନ୍ତି
ମୁଖରେ ନରନ୍ତର,

ସ୍ନେହଜନ ଶପ୍ନନ        ଛାଡ଼ି ଲାଗିଛନ୍ତି
ପ୍ରାଣପଣେ କାଢିଗର ।

( ୩ )

ବାର ବରଷର ସରଳ ବାଳକ
ସେ ଅଚାନ୍ଧା ସ୍ଥାନେ ଏକା;
ଚକିତେ ଚୌଦିଗେ ଅନାଇଁ ଶଙ୍କିତ
ବାଟର ନ ପାଇ ଦେଖା ।

ଚିନ୍ତେରେ, "କାହାକୁ ପଚ୍ଛିବ ଏଥି
କଏ ବା ଦେବ ଉତ୍ତର,
ସର୍ବେ କର୍ମେ ରତ ଏକକୁ ଆରେକ
ଖୋଜିବାକୁ ନାହିଁ ତର ।"

ଅବସର ବୁଝି ଲୋକ ବସି ବ୍ୟାଜେ
ବୁଲେ ସେ ଜନ ଗହଳେ;
ଉଷାଳ ପୁଅଳ ସେ ବଦନ ଫଳ
ଯେ ଦେଖେ ତା ମନ ଟଳେ ।

ଜଣେ ଜେଷ୍ଠ ଶିଳ୍ପୀ ଧର କଥା ଘଡ
ମରମେ ଆହତ ଅତି,
କହେ, "ମୋ କାର୍ଯ୍ୟରେ ପଡ଼ୁଥିବ ଆଖି !
କେତେ ଲୋକ ଏଥି ମତ ।"

ଏକାକଅଁଳା ପିଲା- ମୁହଁକୁ ଅନାଇଁ
କହୁ ନ ପାରଇ କଥା,
ନ ଜାଣେ ଅପୂର୍ବ ବାତ୍ସଲ୍ୟ-ମମତା
କଉଁ । ହୃଦେ ଉପୁଜଇ ।

ବାଳକ ବଚନ ଶୁଣି କୁତୁହଳେ
ପୁଲକେ ପୂରେ ପରାଣ,
କୁକୁରକୁ ଦେଖି ଅନ୍ତର ଭଙ୍ଗିତେ
କରେ ସେ ସତ୍ୟ ପ୍ରମାଣ ।

ଗ୍ରାମ ନାମ ଆଦ ପଚ୍ଚର ପାଇଲା
ହେଲ ପୁତ୍ର-ପରିଚୟ;
ବାଳକ-ବଦନ ଚୁମ୍ବିଲ ସ୍ନେହଭରେ,
ଚରଣେ ନମେ ତନୟ ।

ବାପ ପୁଅ ବେନି ଗଲେ ବସାଘରେ
ଚଳାଇଲେ କେତେ କଥା,
କହେ ଶିଳ୍ପୀ, "କେବେ ଯାଉଛୁ ଧାମକୁ
ନ ଗଲେ ନ ରହେ ମଥା ।"

"କାହିଁ ଏ ଉଦ୍‌ବେଗ ?" ପାଇ ମନେ ଖେଦ
ପଚାରେ ତାତରେ ପୁଅ,
ବୃଦ୍ଧ ଶିଳ୍ପୀ ମୁଖେ ବଚନ ନ ସ୍ଫୁରେ
ନୟନୁ ବହଇ ଲୁହ ।

ଷଣକ ଅନ୍ତରେ କହେ ବୃଦ୍ଧ ପ୍ରତି
"ଥିଲା ମୋ ପୂର୍ବ ସୁକୃତ,
ଅନ୍ତକାଳେ ତୋତେ ଦେଖି ଏଥି ବାବୁ
ହେଲ ଏବେ କୃତ୍ୟକୃତ୍ୟ ।

ବାର ବର୍ଷ ହେଲା ଲାଗିଲଣି କାମ
ମୂଢା ନ ହେଲା ଦେଉଳ,
କାଳ-ଅନୁକ୍ରମେ ରାଜା ନରସିଂହ
ଦାରୁଣ ଦୁଃଖେ ଆକୁଳ ।

ଦୁଇ ଦିନ ମଧ୍ୟେ ପୂରିବ ଦେଉଳ
ନ ରହିବ କିଛି ଶେଷ,
'ନ ହେଲେ କାଟିବ ବଢ଼ାଇଙ୍କ ମୁଣ୍ଡ
ହୋଇଛି ରାଜା ଆଦେଶ ।

ଦୁଇ ଦିନୁଁ ବଳେ ହେଲଣି ଅତୀତ
ଆଜ କାଲି ଦିନ ବାକି,
ଜନେ ଜନେ ଶୋକରେ ଝୁରେ କାରିଗର
ଘୁମକୁ ନ ପାଏ ଆଖି ।

ନସ୍ୟ-ଗର୍ଭେ ହେଲ ଦେଉଳ ପତନ
ରହିଲା ତହିଁ ନ ଦୋଷ,
କେଜାଣି କାହାର ଅପରାଧେ ଅବା
ଗ୍ରହବଳ କଲେ ରୋଷ ।

କଲେ ଯେତେ ଯତ୍ନ          ନ ପୂରେ ଦେଖିଲ
ନ କପେ ଦନ୍ତ-ନଖତ,
ଜ୍ଞପାପ୍ତ ନ ଦେଖି          କାଷ୍ଠଗରଙ୍କର
ହଜିଲାଣି ବୁଦ୍ଧି ବୃତ୍ତି ।

ଲୁମ୍ବୁଷ୍ଟ ଆଦେଶ-          ମଦର ମୂଳୁଟେ
ହେବ ଚୁମ୍ବକ ଖଣ୍ଡତ,
ଲୁଣ୍ଠିବେ ଯାହାର          ମହୋଦଧି-ବକ୍ଷେ
ନ ଯିବ ଶବ୍ଦ ବୋଲତ ।

କାରଣ ବଡ଼ାଇ          ଏକୁଁ ଏକ ସଙ୍ଗେ
ଶିଳ୍ପବିଦ୍ୟା କଣାଉଦ,
ଗଢ଼ି ଯନ୍ତ୍ର କେତେ          ଦେଖିଲ ଅଞ୍ଚଳ
ଯେଭୁ ଦୁର୍ଗ ଜନପଦ ।

ଯେଉଁ ବୁଦ୍ଧି ବଳେ          ଗଢ଼ନ୍ତ ପଥର
ଖପି ସବୁ ପଢ଼େ ତଳେ,
ଦେଖିଲ ମୃଢତା          ବୁଦ୍ଧି ନ ବଣର
ନବେସ୍ତ ଏବେ ସକଳେ ।

ଆଜ ନଶି ଶେଷେ          ଲାଲ ପ୍ରଭାତରେ
ହୋଇବ ରବି ଉଦୟ,
ଫଳ ଫନ ରବ          ଜୁର୍ଣ୍ଣ ଦେଖିବେ
କାରଣ କର୍ମ୍ମାଳ ଷଷ୍ଟ ।

ଆଜ ସଞ୍ଜବେଳେ ଜଣେବେ ଶସ୍ତ୍ରୀ
ବସି ସବୁ କାରିଗର,
ଯାଉଛୁ ମୁଁ ତେବେ, ରହ ଏଥି ବାବୁ
ନିଶ୍ଚିନ୍ତେ ବିଶ୍ରାମ କର ।”

ବାପର ବିଷାଦ ଦେଖି ଧର୍ମପଦ
ଅଶ୍ରୁପୂର୍ଣ୍ଣ କହଇ ବାଣୀ—
“ସତେ ନରସିଂହ ମହାରାଜ ଦେବ
ବାରଣ କଡ଼ାର ଦାଣି ?

ଉତ୍କଳର ଶିଳ୍ପି— କୁଳ-ସୁପ୍ରସିଦ୍ଧ
ଦକ୍ଷ କାରିଗରଗଣ,
ମିଳିଛନ୍ତି ସର୍ବେ, ସେ କାର୍ଯ୍ୟ କି କେବେ
ରହିପାରେ ଅପୂରଣ ?

ନ ଥିଲେ ଆପତ୍ତି ଦିଅ ଅନୁମତି
ସଭାସ୍ଥଳେ ଯିବା ପାଇଁ ?
ଶିଳ୍ପ ଗୂଢ଼ ପ୍ରଶ୍ନ ଶୁଣିବି ଦେଖିବି
ବାର ଶତ ଜାତି ଭାଇ ।”

ବାପ ପୁଅ ବେନି ତତକ୍ଷଣେ ଚଳି
ଚାଲିଗଲେ ସଭାସ୍ଥଳେ,
କଲେ ତର୍କ ଯୁକ୍ତି ଉକ୍ତି ପ୍ରତ୍ୟୁକ୍ତି
ଯେଝା ବୁଦ୍ଧି କଉଶଳେ ।

ରଥ ଦେଉଳପୁ—  ଗଠନ-ନିର୍ଣ୍ଣୟ
ଚନ୍ଦ୍ରକର ଚନ୍ଦ୍ରଭାନ,
ବୃଦ୍ଧ ଶିଳ୍ପୀଗଣେ  କଲେ ଆଲୋଚନା
ଦେଖାଇ ଶାସ୍ତ୍ର-ପ୍ରମାଣ ।

ସତ ଅଧ୍ୟାୟ  ସୃଜନ କଉଶଳ
ନ ହେଲା କିଛି ମୀମାଂସା,
ଉପାୟ ନ ପାଇ  କାରଣ କହାଇ
ଛାଡ଼ିଲେ ପରଣ ଆଶା ।

ଯୋଡ଼ କର ଦେନ  ସଦନସ୍ଥ ବାଣୀ
କହେ ଶେଷେ ଧର୍ମଦେ—
ମାଳାରଜେ ଯେବେ  ସତ୍ୟ ଜଗନ୍ନାଥ,
ନ ହେବ କିଛି ଆପଦ ।

ଏକାମ୍ର କାନନେ  ସତ୍ୟେ ପ୍ରତିଷ୍ଠିତ
ଯେବେ ପ୍ରଭୁ ଲିଙ୍ଗରାଜ,
ନ ସମ୍ଭବ କେବେ  କଦା ଅପଖ୍ୟାତ
ଉତ୍କଳ-ଶିଳ୍ପି-ସମାଜ ।

ଯାଗାନନ୍ଦ ଯେବେ  ସତ୍ୟ ବେଦମନ୍ତ୍ରେ
ଉଠିଥିବେ ଗାଇଗାଇ,
ମୁଣ୍ଡ କାଟା ହୋଇ  ନ ମରିବେ ଏଥି
କେବେ କାରଣ କହାଇ ।

ମୁଁ ଅତି ସାମାନ୍ୟ ଶିଶୁ ଅକିଞ୍ଚନ
ଜାତ ବିଶ୍ବକର୍ମା-କୁଳେ,
ଶିଳ୍ପି-ସାମନ୍ତଙ୍କ ହେବ ଯେବେ ଆଜ୍ଞା
ହାତ ଦେବି ଏ ଦେଉଳେ ।

ଜନକ ମଧ୍ୟରେ ମୁଦିବ ଦେଉଳ
ମନେହୁଏ ମୋ ବିଶ୍ବାସ,
ମାଗେଁ ଏ ଆଦେଶ ଶିଳ୍ପି-ସାମନ୍ତଙ୍କ
ଚରଣେ ମୁଁ ଦୀନ ଦାସ ।"

ବାଳକ-ବଚନ ଶୁଣି ସଭାଜନ
ବିସ୍ମିତ ହେଲେ ସକଳ,
କହିଲେ, "ଏ କଥା ଅତି ଅସମ୍ଭବ
ଶିଶୁ-ସ୍ବଭାବ ଚପଳ ।"

ଅଭିମାନୀ କେହି କହଇ ଗରବେ,
"ଜୀବିତ ଅଛି ମରଣ,
ଜନକରେ ଯେବେ ଏକା ଏ ବାଳକ
କରେ ଦେଉଳ ପୂରଣ ।"

ଅନ୍ୟ ବୋଲେ, "ଛାଡ଼ ଈର୍ଷା ଅହଙ୍କାର
ନାହିଁ ଏଥି ଅପମାନ,
ପୂରୁ ଦେବାଳୟ ରହୁ ରାଜଦ୍ବାରେ
ଶିଳ୍ପି କୁଳ-ସନମାନ ।"

"ଯୋଡ଼ିବେ ଯଦ୍ୟପି ନ ହେବ ଏ କାର୍ଯ୍ୟ
ଲୋକଙ୍କର ପଡ଼ିବ ଜଣା,
କଡ଼ା ହେବ ଶାସ୍ତି ଏ ବାଳକ ମୁଣ୍ଡ
ଆମ ମୁଣ୍ଡ ହେବ ହଣା ।"

ସମକ୍ଷେ ଶମକ୍ଷେ କହିଲେ ଏପରି
କେତେ କଥା କେତେ ଜଣ,
ଅବଶେଷେ ଜଣେ ବୃଦ୍ଧ ଶିଳ୍ପୀ ଭଣେ;
"ଶୁଣ ଭାଇ ସଖାଜନ ।

ଦେଖିଲେ କେହି ବାଳକ ଶିଳ୍ପିକୁଳେ ଜାତ
ମୁଦିବ ସେଟିକ ମନ୍ଦିର,
ରକ୍ଷିବ ଜଗତେ ଶିଳ୍ପି-ଗଉରବ
ଯାଉ ପଛେ ଆମ ଶିର ।

ପଣ୍ଡ୍ରା ଏହାର ଅସମ୍ଭବ ବୋଲି
ମନେ ଶଙ୍କର ନ କର,
କାହାକୁ କ ଶକ୍ତି ଦେଇଛନ୍ତି ପ୍ରଭୁ
ଜାଣିବ ତା କାହିଁ ନର ?

ଧ୍ରୁବ ଶିଶୁମୁଖେ ସତ୍ୟ ପରକାଶ
ବାଳକେ ବଳ-ଉଦୟ,
ଅସମ୍ଭବ ହୁଏ, ସମ୍ଭବ ଜଗତେ
ଦୟା କଲେ ଦୟାମୟ ।

ଧ୍ରୁବ ପ୍ରହଲ୍ଲାଦ ପୁରାଣ-ପ୍ରବାଦ
କବି-କଳ୍ପନା ନ କହ,

କାଳେ କାଳେ ଶିଶୁ ଅସାଧ୍ୟ ସାଧିବ
ହେଲେ ପ୍ରଭୁ ଅନୁଗ୍ରହ ।

ଶୁଣିଛ ତ ସବେ ଅଭିମନ୍ୟୁ କଥା
ବୀର-ବାଳକ-ବିକ୍ରମ,

ଶୁଣିଛ ଜନମୁଁ ଥିଲେ ଶୁକଦେବ
ବ୍ରହ୍ମଜ୍ଞାନ ଅନୁପମ ।

ଶିଶୁ ବୋଲି କେବେ ହୁଏ ସୁଦ୍ଧା ବୃଦ୍ଧ
ଚତୁର ପ୍ରବୀଣ ନର'

ପ୍ରଭାତ ଅରୁଣେ ଲୁଚି ରହିଥାଏ
ମଧ୍ୟାହ୍ନ ତେଜ ପ୍ରଖର ।

କାଳ ବନ ଗତ ରହିଅଛି ବାଘ
ବତ୍ସରକୁ ନାହିଁ ଜାଣ,

ଯାହା ଜାଣିବାର ଶିଖି ଜାଣ ଏବେ
ଆଉ ଅଧିକ ନ ଜାଣ,

ଦରବ ଛଧାନେ ଏ ବାଳକ ଏଥି
ଯଥାକାଳେ ଉପଗତ,

ଛାଡ଼ିଦେବା ଏହା ତାରେ ବାଣ୍ଟ କାର୍ଯ୍ୟ,
କର ସବେ ଏହି ମତ ।"

ଏକ୍ଷଣର ବନ୍ଧୁ  ଯଜ୍ଞର ଶେଷରେ
ସ୍ଥିର କଲେ ଶିଳ୍ପିଗଣ,
କରନ୍ତୁ ବାଳକ  ବାଳ ଉଚ୍ଛ୍ୱାସରେ
ଆରେ ମନ୍ଦର ଘାଷଣ୍ ।

ଭାଳି ସନ୍ଧ୍ୟ ଯାଏ  ଲଗିବା ସରବେ
କାମ ନ ହେଲେ ପୂରଣ,
ସମର୍ପି ଦେଉଳ  ବାର ଶତ ଶିର
ଖାଳରେ ପିବା ଶରଣ ।

ବାଳଙ୍କ ସରବେ  କଲେ ଧନ୍ୟ ଧନ୍ୟ
ଗର୍ଜିଲ ସପ୍ତ ସେ ଦନ,
ବାରଣ ବଡ଼ାଇ  ଲର୍ଗେଲେ କାମରେ
ଜଗତେ ମୁଖ ମଳନ ।

( ୪ )

ଚର୍ଚ୍ଚି ଆଭଦନ  ଧର୍ମପଦ ବେଶେ
ଦେଉଳ ଗଠନ ସତ,
ଚଉଦେଶ ପତନ  ଶୀର୍ଷ ଖମ୍ଭ ଭୋଗ
ଆଦ୍ୟ ସ୍ଥାନ ଅବସ୍ଥିତ ।

ବାରଣ ବଢ଼ାଇ ଲଗିଛନ୍ତି କାମେ
କର ପ୍ରାଣ ପ୍ରାପୃଷ୍ଟି ଉ,
ସ୍ୱହୁଁ ସ୍ୱହୁଁ ଦନ ହେଲ ଅବସାନ
ରବି ହେଲେ ଅସ୍ତମିତ ।

ନ ସରିଲ କାମ ନ ପୂରିଲ ଆଶା
ଗୃହ ମଧ୍ୟେ ପୂରିବାର,
ବାରଣ ବଢ଼ାଇ ମୁଣ୍ଡେ ହାତ ଦେଇ
ବସିଲେ ଛେଡ଼ି ଆହାର ।

କହେ ଧର୍ମପଦ, "ଅଜ୍ଞା ହେଲେ ମତେ
କାମେ ଦେବ ଏବେ ହାତ,
ପ୍ରଭୁ ଦୟା କଲେ ପୂରିବ ଦେଉଳ
ନ ହେଉଁ ରାତ୍ରି ପ୍ରଭାତ ।"

ବାରଣ ବଢ଼ାଇ କଲେ ଧନ୍ୟ ଧନ୍ୟ
ଦେଲେ ସର୍ବେ ଆଶୀର୍ବାଦ,
"ଯାଅ ବାବୁ ଯାଅ ବିଳମ୍ବ ନ କର
କଣ୍ଠ କଲେ ଜୟନାଦ ।

"ଭକ୍ତ କୁଳମାନ ପ୍ରଭୁ ନରସିଂହ
ନୃପତି ମନ କାମନା,
ବାର ବରଷର ବନ୍ଧାଇ ପ୍ରଥର
ହେଉ ଜାରିତ ଘୋଷଣା ।"

( ୫ )

ଆରମ୍ଭିଲ କାମ          ଦେଉଳ ଶିଖରେ
ଏକ ଲକ୍ଷ୍ୟେ ଧର୍ମପଦ,
ଆଶାର ଆନନ୍ଦ          ଭାସିଗଲ ଏଣେ
ଆଶଙ୍କା କଲେ ଆପଦ ।

ବାଳକ କରଣୀ          ନିଶ୍ଚେ ଯିବେ ଜାଣି
ନରସିଂହ ଗଜପତି,
ଏ ବାଳକ ମୁଣ୍ଡେ          ବଡ଼ା ହେବ ଶାସ୍ତି
ଘଟିବ ଆମ ବିପତ୍ତି ।

ଯଥା ସମୟରେ          ପୂରିବ ଦେଉଳ
ଏହି ମାତ୍ର ଆଶ୍ୱାସନା,
ଚରଣ-ଉପରେ          ସବୁ କାରିଗରେ
କରନ୍ତି ନାନା ସ୍ତବନା ।

ତଥି ଏକଠାଇଁ          କାରଣ କହାଇ
ଆତଙ୍କେ ଭାବନ୍ତି ବସି,
ଏହି ସମୟରେ          ପୂରିଲ ଦେଉଳ
ଅଗ୍ର-କୁମ୍ଭ ଗଲ ଖସି ।

ଚରଣ-ଭିକ୍ଷାଦେ          ମୂର୍ଚ୍ଛିଲେ ସକଳେ
କରେଣି ଦେଉଳ ଚୂଳେ,
ରତ୍ନ ଥାଇଁ ଥାଇଁ          ଉତ୍ସାଭ ମିଳନ
ଧର୍ମପଦ ତାଙ୍କ ଭୂଲେ ।

( ୭ )

ଦେଖି ତୋରଣରେ କରନ୍ତ ପ୍ରଶଂସା
ନାହିଁ ତାହା ମନେ ସୁଖ,
ପଶ୍ନରେ ବାଳକ, “କପାଇଁ ବନ୍ଦେ
ଆପଣ ସର୍ବେ ବିମୁଖ ?

ଦର ବିକଶିତ କମଳ ସରସେ
କହିଁ ତୁମ ପଦ ପ୍ରାନ୍ତ ?
ଉଲ୍ଲସିତ ପ୍ରାଣେ କାହିଁ କି କାରଣେ
ଅକସ୍ମାତେ କଷାଘାତ ?”

ଜଣେ ବୃଦ୍ଧ ଶିଳ୍ପୀ କହନ୍ତ ନିରେଖି
ସମସ୍ତଙ୍କ ମନ କଥା—
“ପ୍ରଭୁଙ୍କ ଦେଉଳ, ହେବ ତୁମ ଯଶ
ନ ରହିବ ଆମ ମଥା ।”

ନ ଶୁଣୁ ଅଧିକ କହଇ ବାଳକ
“ମୋର ସେ ଯତନ କି ଫଳ ?
ଯେବେ ଶିଳ୍ପୀକୁଳ ବାର ଶତ ପୁଳ
ଝାଉଁଳ ପଡ଼ିବେ ତଳ ।

ମୁଁ ଶିଳ୍ପିକୁଳର ଅଧମ ତନୟ
ଜାତିଭାଇଙ୍କ କଙ୍କର,

ଦେଉଳ ପୂରଣେ ନାହିଁ ମୋ ଧରଣୀ
ସେ ସବୁ କାର୍ଯ୍ୟ ତୁମ୍ଭର ।

ଜାତି ଭାଇଙ୍କର ଆଦେଶେ ପିନା ମୁଁ
କଲି କାର୍ଯ୍ୟ ସମ୍ପାଦନ,

ଜାତିପୁଅଙ୍କର ମୁଣ୍ଡ ଗଲେ, ମୋର
ଜୀବନେ କି ପ୍ରୟୋଜନ ?

କାରଣ ବଢ଼ାଇ ମୋର ଜାତିଭାଇ
ଜାଣ ଏ କଥା ନିଶ୍ଚୟ,

ଯାହା ହେବ ହେବ କେବେ ନ ଘଟିବ
ତୁମ୍ଭ ଜୀବନ ସଂଶୟ

କେହି ନ ଜାଣନ୍ତୁ ମୋ ନାମ ଏଠାରେ
ନ ଜାଣିବେ କେହି ତାହା,

ନ ହେଉଁ ଆଜ ଏ ରଜନୀ ପ୍ରଭାତେ
ଦେଖିବ ମୁଁ ନଜ ବହା ।

ରାତିକେ ଦେଉଳ ପୂରିବ ଯେପରି
ନ ହେବ ଲୋକେ ପ୍ରକଟ,

ନ ଜାଣିଲେ ରଜା କି ଅବା ପ୍ରଧାନ
ଘଟିବ କାହିଁ ସଙ୍କଟ ?

ପଡ଼ରେ ମାତର          ଅଛୁ ଆଜ ରଙ୍କ
ଯାଅ ବାଟେ ଶୁଣ ଷଣେ,

ଓହଳୁଛୁ ସଦାୟ          ଦଣ୍ଡବତ ଭର
ଜାତସ୍ୱରଙ୍କ ଚରଣେ ।”

( ୭ )

ଯେ ଯାହା ବୃଷ୍ଟିରେ          ଗଲେ କାରାଗରେ
ବାପ ସଙ୍ଗେ ଧର୍ମପଦ,

କହେ ପୁଅ, ଏବେ          ଧ୍ୱନିବ କଥା ଏ
“ମନେ ନ ଗଣ ଆପଦ ।

ଜନ୍ମର ଦୁଃଖରେ          ପୃଥରେ ଦାୟ କ
ବାରଣ କରାଇ ଦ.ଯୁ,

ଏ ବନ୍ଧରେ ଦେହ          ବାରଣ କରି—
ଷାଣ ଉଦ୍ଧାର-ଉପାୟ ।’

ବାପ ମନେ ଘରେ          କେତେ ପାପ ଚିନ୍ତା
ମୁଖେ ଉତ୍ତର ନ ଆସେ,

ଉଭୟ ସଂକଟେ          ପଡ଼ ଯଥା ନର
ଯାଏ ନାହିଁ କେଉଁ ପାଶେ ।

ତାପର ବିଷାଦ          ଦେଖି ଧର୍ମପଦ
କହେ ସୁକୋମଳ ଭାଷା,
"ବାଟଣ ବଢ଼ାଇ          ରହନ୍ତୁ ଜୀବନେ
ପୂର୍ଣ୍ଣ ଏବେ ମୋର ଆଶା ।

ଏ ଜଗତେ ଯାହା          ପୁଅ ବା ଯାହାର
ଧର୍ମସ୍ତ ମାତ୍ୟା ଉଥାଣ,
ସାର୍ଥକ ଜନମ          ତାର ଏତା ଦିନ
ଗର ହୃଦେ ଯାଉ ପ୍ରାପ୍ତ ।

କହିଛନ୍ତି ମୁନି-          'କୁଳରକ୍ଷା ହେତୁ
ହେବ ଯେବେ ପ୍ରୟୋଜନ,
ତେଜିବ ଜଣକୁ          ହେଲେ ହେଉ ଘରେ
ସେ ଯେତେ ସ୍ନେହଭାଜନ ।

ନ ହୋଇ ବ୍ୟାକୁଳ          ଗ୍ରାମହିତେ କୁଳ
ବରଜନ୍ତି ସାଧୁଜନ,
ଦେଶହିତେ ଗ୍ରାମ,          ଜଗତ କଲ୍ୟାଣେ
କର ଦେଶ ବିସର୍ଜନ ।'

କାରଣ ବଢ଼େଇ          ଆମ ଜାତି ଘର
ଶିଳ୍ପିକୁଳ ଗଳାହାର,
ଥାଆନ୍ତୁ ଜୀବନ          ମୋ ଜଣକ ଲାଗି
ମନେ କିଛି ନ ବିଚାର ।

ତେଜ ମୋ ମମତା,   ହେବ ନାହିଁ ବାଟ
ଦେଖା ଆଉ ଏ ଜୀବନେ,

ଦିଅ ଅନୁମତି,   କର ଆଶୀର୍ବାଦ
ବିଦା ହେବି ଏହି କ୍ଷଣେ ।"

କହେ ବୃଦ୍ଧ, "ବାବୁ,   ଚାରି ବର୍ଷ ହେଲା
ଛାଡ଼ି ଆସିଅଛୁ ଘର,

ଯେତେବେଳେ ଭ୍ରୂଣ   ହୋଇଥିଲୁ ମାତୃ-
ଗର୍ଭରେ ସ୍ୱର ମାସର ।

ପୁଅ କଥା ଚିନ୍ତି   ହେଲା କି ଅସହ୍ୟ
କେତେ ଗର୍ଭ ହେଲା ନାଶ,

ଧରିବାକୁ ମତେ   କେବେହେଲେ ତନ୍ତ୍ରେ
ମିଳନାହିଁ ଅବକାଶ ।

ନ ଯୋଗରେ ବାବୁ   ଫଳିଥିଲୁ ଆସି
କଲୁ ଅସାଧ୍ୟ ସାଧନ,

ଏପରି ସୁଯୋଗ୍ୟ   ପୁଅ ପାଏ କରେ
ଅଳପ ଭାଗ୍ୟରେ ଜନ !

ଧନ କି ପରଶେ   ଝଟକ ନମିତ୍ତେ
ଏବେ ଲୁଚିଯିବୁ କାହିଁ ?

ଏତେ ଧୈର୍ଯ୍ୟର କି   ଏହି ପରିଣାମ
ଏହା କି ମୁଁ ଥିଲି ଚାହିଁ ? ,

କେଉଁ ଜନ୍ମେ ଯାହା ଖାଇବା ପଇଁରେ
ଲୁକାଇଥିଲି ମୁଁ ଧନ,

ତାହା ଅଞ୍ଚଳରୁ ଧନ ଦଣ୍ଡ ନେଇ
ଦେଲି ତା ଦାନେ ଶାକ୍ୟକ !

ଏପାର ପାତକେ ପୁଣ ରକ୍ଷଅଛୁ
ମୋ ପ୍ରାରବ୍ଧ କର୍ମଚକ୍ର,

ମଲପେ ମୋ ପଥ ଜ୍ଞାନ ଦୋହରେ
କହାଁ ଯିବୁ କର ଅନ୍ଧ ?

କାରଣ ବତାଇ ଆମ ଜାତିଗୁର
ନୂଦନ୍ତ ମୋ ପ୍ରୟୋଜନ,

କୁଳ ରଜରଳ ସଦା ରକ୍ଷଥିବ
ଥିଲେ ତୋ ପଣ ନନ୍ଦନ ।

ଯାର ଗୁଣରାଶି ଜଗତେ ପ୍ରକାଶି
ରଖେ ଜାତିକୁଳ ମାନ,

ସେପରି ଗୋଷ୍ଠିକ ସଙ୍ଗତେ ନୂଦନ୍ତ
ଆନ କୋଟିଏ ସମାନ ।”

ଚନ୍ଦ୍ରଁ ପୁଣ କେତେ ବୋଲେ ଜଦ୍ କେତେ
“ଅଧିକ ନ କହ ଆଜ,

ଦେଖିଲୁ ଉତ୍ତର ଯିବ ଏଠା ନାତ
ଏବେ ଗତ ଥାଉଁ ଥାଉଁ ।”

ଭାଙ୍ଗିଯିବୁ ବାବୁ                    ଫେଡ଼ ଜଡ ସବୁ
ରତ୍ନବୁଟିକ ପସରେ ?

କଣ୍ଠି ରତ୍ନଥିଲେ                    କେତେକଦେଲେ ଦେଖା
ଭାଙ୍ଗି ଦେବ କଏ ଜାଣେ !

କହେ ପୁଅ, "ବାପା,                    ଜୀବନ-ମରଣ
ଲଗିଅଛି ଅନୁକ୍ଷଣ,

ଜନମ ହୋଇଲେ                    ଆଗେ ଅବା ପଛେ
ଅବଶ୍ୟ ହେବ ମରଣ ।

ଆସ୍ପୃଷ୍ଟ ପଣ                    ମଣିବା ଜଗତେ
ନୁହେ ନର ପଉରୁଷ

ପରହିତ ସାଧି                    ମରେ ଯେ ମଣ୍ଡିରେ
ସେହି ଏକା ସୁପୁରୁଷ ।

ମାନବ ଜୀବନ                    ନୁହଇ କେବଳ
ବର୍ଷ ମାସ ଦିନ ଦଣ୍ଡ

କର୍ମେ ଜୀଏଁ ନର,                    ଧର୍ମ ଏକା ତାର
ଜୀବନର ମାନଦଣ୍ଡ ।

ମୂହୂର୍ତ୍ତେ ମାତର                    ଜଳୁନ୍ତ ପ୍ରଖର
ଶିଖା ଟେକ ହୁତାଶନ,

ଜନ୍ମ ଯେତେକ ଭରେ                    ଆଲୋକ ଉତ୍ତାପ
ଚଉଦିଗେ ବିତରଣ

ନିଭୁ ମେ କ୍ଷଣକେ, ତଥାପି ଏ ଲୋକେ
ରହେ ତା' ଆଦର ଯଶ;
କ ଲୋଡ଼ା ତହିଁରେ ରହେ ଯେ ମହୀରେ
ନୂତନ ସହସ୍ର ବର୍ଷ ?

କହୁଛି ନଶ୍ୱର ଏ ଜୀବନେ ଆଜ
ହେବ ନାହିଁ ଯେବେ ଦେଖା,
ଜୀଇଁବା ମରିବା କପାଳି ଯଶର
ସେ ଦୁଇ କଥା ତ ଏକା ।

ଏ ମୋ ବଡ଼ ଭାଗ୍ୟ ଘଟିଲା ସୁଯୋଗ
ମିଳି ଏଥି ଯଥା ବେଳେ,
ମୃଦୁଳ ଦେଉଳ କୁଟ ଶିଳ୍ପତଳେ
ଶିଖିଲ ଯା ଶିଶୁ ଖେଳେ ।

ବାରଣ ବଢାଇ ମୋର ଭାବଭଳି
ସହି ନାନା ଅପମାନ,
ମଲେ ଯେବେ ଏଥି କ ସୁଖ ମୋହର
କର ମନ୍ଦର ନିର୍ମାଣ ?

ବାରଣ ବଢ଼ାଇ- ରଜତ ରଞ୍ଜିତ
ଯଶ ସନମାନ-ଧନ,
ଯାଇ ରାଜଦ୍ୱାରେ କହ କ ପ୍ରକାରେ
ବଢ଼ିବ ମୋ ବଡ଼ ପଣ ?

ଶାଢ଼ୀ ବାନ୍ଧ ମୁଣ୍ଡେ ଯିବ ରାଜଦାଣ୍ଡେ
ଦେଖି ଜାତି-କୁଳ-ନାଶ,
କ ରଙ୍ଗେ ରଚିବ ଏ ଜଘନ୍ୟ ଛନ୍ଦ
ଭବିଷ୍ୟତ ଇତିହାସ !

ଦେଉଳ ଅମୃତା ରନ୍ଧୁ ମରିଥାନ୍ତେ
ଯେବେ ସବୁ କାରିଗରେ,
ମୋ କର୍ମ-କୌଶଳେ ଲଜ୍ଜା ଅପମାନ
ନ ଥାନ୍ତା ତାଙ୍କ ମୁଖରେ ।

ଉତ୍କଳର ଶିଳ୍ପି- କୁଳ ଇତିହାସେ
ନ ରହୁ ଏ କଳା ଦାଗ,
ତେଣୁ ସ୍ୱଚ୍ଛମନେ ଏ ଜୀବନ ଲାଗି
କର ବାପା ମୋତେ ତ୍ୟାଗ ।

"ଛଞ୍ଚାଣ-କପୋତ"- ଅଦ୍ଭୁତ ଚରିତ
ଶୁଣିଛ ମହାଭାରତେ,
ମରଣ ସଙ୍କଟେ କପୋତ ବ୍ୟାକୁଳେ
ମିଳିଲା ଶିବି-ପୁରତେ ।

କାଶୀ ନରପତି କପୋତ ବିପତ୍ତି
ଦେଖି ପାଇଲେ କଷଣ,
ଯେବେ ପଞ୍ଜରାରେ ଉଡ଼ଣ ଆସୁଲେ
ପଶିଲା ପକ୍ଷୀ ଶରଣ ।

ଯାଚକ ଯାଚଞ୍ଚା                    ନ କଲେ ପୂରଣ
ଯଜ୍ଞଫଳ ଯାଏ ନାଶ,

ସଞ୍ଚାଣ ବଧିଲେ                    ହିଂସା ମହାପାପ
ଆବର କରିବ ଗ୍ରାସ ।

ଉଭୟ ସଂକଟେ                    ନ ଦେଖି ଉପାୟ
ଶିବି ରାଜା ମହାମତି,

ବେନି ପକ୍ଷୀ ମଧ୍ୟେ                    ଉଭା ହୋଇ ସ୍ୱଧେ
ସଞ୍ଚାଣେ କଲେ ବିନତି-

'ହେଉ ପକ୍ଷିରାଜ,                    ଯାହା ଇଚ୍ଛା ମାଗ
ରଖ କପୋତ ଜୀବନ';

କହଇ ସଞ୍ଚାଣ,                    ଲୋଡ଼ା ନାହିଁ ଧନ,
ମୁଁ ଯେ କ୍ଷୁଧା ଅବସନ୍ନ ।

କପୋତ ରକ୍ଷାରେ                    ଉଦାର ଅନ୍ତରେ
କର ଯେବେ ଅଭିଳାଷ,

ନିଜ ଅଙ୍ଗୁ କାଟି                    ଭୁଞ୍ଜଦଅ ମୋତେ
କପୋତ ସମାନ ମାଂସ ।'

ହରଷେ ନୃପତି                    ଦେଖାଇଣ ହାତ
କାଟିଦେଲେ ମାଂସ ଖଣ୍ଡେ,

ପରିମାଣେ ମାଂସ                    କପୋତ ସମାନ
ହେଲା ନାହିଁ ତୁଳାଦଣ୍ଡେ ।

ଅଙ୍ଗ ଖଣ୍ଡେ ପୁଣି କାଟିଲେ ନୃମଣି
ସମ ନୋହିଲା ନିକିତି,

ଖଣ୍ଡେ ଖଣ୍ଡେ ଏମେ କଲିଜା କାଟିଲେ
କପୋତେ ତୁଳାଣି ପ୍ରୀତି

ନୃପ ଦୟାପଣ ଦେଖି ସେ ସଞ୍ଚାଣ
କଲା ଶେଷେ ଜୟନାଦ,

ହେଜିଲା କପୋତେ ଗଲା ନିଜ ପୁରେ
ଦେଇ ଦିବ୍ୟ ଆଶୀର୍ବାଦ ।

କପୋତର ସ୍ଥଳେ ଶିବି ଶୁଦ୍ଧଚିତ୍ତେ
କରି ଏ ଆତ୍ମ ଉତ୍ସର୍ଗ

ଇହ ପରଲୋକେ ଲଭିଲେ ଅକ୍ଷୟ
ଧର୍ମ ଆଦି ଗୁଣ ବର୍ଗ ।

ଏ ଜଗତ ବାପ, ମହାମଖଶାଳା
ନରନାରୀ ଯଜମାନ,

ସେଥି କୃଷ୍ଣ ଯେତେ ଦେଉଥିବେ କରେ
ଜୀବନ ଆହୁତି ଦାନ ।

ଭୁବନ ବିଦିତ ଦଧୀଚି ଚରିତ
ପୁରାଣେ ତ ଅଛ ଶୁଣି,

କହି ସ୍ୱସ୍ତି ସ୍ୱସ୍ତି ଦେଲେ ନିଜ ଅସ୍ଥି
ବଜ୍ରହିତେ ମହାମୁନି ।

ଓରସ୍ତନେ ପ୍ରାଣ ଉତ୍ସର୍ଗି ସୁରବେ
କେତେ କେତେ ମହାଜନ,
ଲଭିଛନ୍ତି ତ୍ୟାଗେ ପରଣ ପୂର୍ଣ୍ଣତା
ମରଣେ ନିତ୍ୟ ଜୀବନ ।

କୋରକର ପ୍ରାଣ ଫୁଟି ପ୍ରେମ ସରେ
ପବନେ ମିଶାଏ ବାସ,
ବିଶ୍ୱବ୍ୟାପୀ ରବି- ଉଜ୍ଜ୍ୱଳ ଆଲୋକେ
ଝରୁ ସ୍ନିଗ୍ଧ ମଧୁ ହାସ ।

ବାରଣ କରାଇ ରହିଛନ୍ତି ଯହିଁ
ଏବେ ତୁମ ମୁଖ ପ୍ରତି,
ପୁଣ ସ୍ନେହ ମାୟା ତୁଟାଇଲେ ତୁମ୍ଭେ
ଯିବେ ସକଳେ ହରତ ।

ବାରଣ କରାଇ ମୁହଁକୁ ଅନାଇଁ
ମୋ ମମତା ଏବେଛାଡ଼
ଜାଣ ଏ ଦେହକୁଁ ଗଡ ମରଛି ମୁଁ
ଘଙ୍କି ମଥା ବୁଲୁ ହାଡ଼ ।

ସ୍ୱହଁ ଏ ଦେହକେ, ସ୍ୱହଁ ଜାତିକୁଳେ,
ଛାଡ଼ ମନୁ ବୃଥା କଷ୍ଟ,
ଦ୍ୱନ୍ଦ୍ୱର ଜନମ ପାଇ ନାହିଁ ମୁହିଁ
ହୋଇଅଛୁ ଗର୍ଭ ନଷ୍ଟ ।

କହୁଛ ଗବନା                    ଧ ଦେବ ମୋ ଶନା
ବଂଶ ରକ୍ଷା ତୁମ୍ଭ ଅନ୍ତେ,

କହ ହେ ବତ୍ସଳ                    କା'ହା ବଂଶ ଚିର
ରହିଛି ବା ଏ ଜଗତେ ?

କେତେ ମହାଜନ                    ଅସାଧ୍ୟ ସାଧନ
କରିଗଲେ ଜୀବନେ,

କାହିଁ ତାଙ୍କ ବଂଶ ?                    ଅଛି ମାତ୍ର ଯଶ
ଆଜଯାଏ ମହୀତଳେ ।

ଏକର ବିନାଶେ                    ଅନେକ ପ୍ରକାଶେ
ସୃଷ୍ଟିର ଏ ସତ୍ୟ ବିଧି,

ଏକର ଯା ସ୍ୱପ୍ନ                    ଅନେକ ହୃଦସ୍ଥ,
ଅନେକ ଏକର ସିଦ୍ଧି ।

ବଂଶ ପଛେ ଯାଉ,                    ଶାନ୍ତି ବୃଦ୍ଧି ପାଉ
ସାଧୁ ଏ ଉଦାର ମତ,

କୋଣାର୍କ ଦେଉଳ                    ଗାଉ ଚିରକାଳ
ତୁମ୍ଭ ପୁଣ୍ୟ ତ୍ୟାଗ-ଗୀତ ।

ଘରେ ଦସ୍ୟୁ ବନ୍ଦ                    ସତ୍ୟ ରକ୍ଷା ପାଇଁ
ପୂର୍ବେ କେତେ କେତେ ଲୋକ,

କାଟିଛନ୍ତି ନିଜ                    ହାତେ ପୁତ୍ର ମୁଣ୍ଡ
ମୁହୂର୍ତ୍ତେ ନ କରି ଶୋକ ।

ଉନ୍ନତ କରମ          ମାନବ ଧରମ
ଯାର ଯବେ ଯେତୁ ସାଧେ,
ସେହି ଧନୁର୍ଦ୍ଧର          ରାମ ସାରଥିର
ଉଡାଣ୍ଟିବେ ସେତୁ ବାନ୍ଧେ ।

ତୁମର ମୋହର          ଦେଖା ଦେଉଛି
କାହିଁ ଏତେ ମାୟା ମୋହ ?
ତେଜ ମୋ ମମତା          ଦେଖାଅ ସାରଥୀ
କର ନାହିଁ ଜାତି-ଦ୍ରୋହ ।

ଭେଦ ମନ ଦୂରେ,          'ନାହିଁ ପୁଏ ବାପୁ
କାରଣ କଢ଼ାଇ ଦାଏ',
ଜଗତେ ଏ କଥା          ରହୁ କାଳେ କାଳେ
ନେଉଛୁ ଏବେ ବିଦାୟ ।

ସାନ୍ତ୍ୱ ଅସିଲୁଣି          ଅନ୍ଧାର ରଜନୀ
ନିର୍ମଳ କଣେ ମୋ ପଥ;
ଦଅ ଆଶୀର୍ବାଦ          ଦେବ ଏ ସବନେ
ଏକ ଶେଷ ଦଣ୍ଡବତ ।"

( ୮ )

ଏତେ କହି ପୁଅ          ବାପ ପଦରଜ
ନେଇ ଲଗାଇଲା ଶିରେ,
ବୃଦ୍ଧ ମୁଖେ କିଛି          ବଚନ ନ ଆସେ
ଗଣ୍ଡ ସିକ୍ତ ନେତ୍ର-ନୀରେ ।

ମୃଦୁ ଆଶୀର୍ବାଦ ଢଙ୍ଗିରେ ପ୍ରକାଶି
ସ୍ନେହେ ଚୁମ୍ବିଲ ବଦନ,
ଗୃହଲଗ୍ନ ପୃଷ୍ଠ କ୍ଷଣେ ବୃକ୍ଷ ଚଢ଼ି
ହେଲ ଶୋକେ ଅଚେତନ ।

ଅରୁଣ-ଆରକ୍ତ- କରୁଣେ ରଞ୍ଜିତ
ଘଣେ ପୂରୁବ ଆକାଶ,
ଫିଟି ନାହିଁ ନଶା ଅଙ୍ଗ ଜଳାଶାଢ଼ୀ
ଫୁଟି ନାହିଁ ଉଷାହାସ ।

ଚନ୍ଦ୍ରଭଗା-ମାରେ ପାହାନ୍ତ ସମୀରେ
ଖେଳଇ ମୃଦୁ ତରଙ୍ଗ,
ଅଦୂର କାନନେ ପଡର ପ୍ରମାଣେ
ଗାବେ କୁମ୍ଭାଟୁଆ ଖଗ ।

ଏ ମୁହୂର୍ତ୍ତ ଅନ୍ଧାରେ ବେଳେ ଧର୍ମପଦ
ଗୃହଲଗ୍ନ ଅଶ୍ୱ ତରେ,
ସ୍ଥିର ପଥେ ଚଢ଼ି ଝଟେଲ ତୃଣରେ
ଦେଉଳ ଶିଖ ଉପରେ ।

( ୯ )

ଚୌଦିଗେ ବସ୍ତୃତ ସାଗର-ସୈକତ
ନିସ୍ତବ୍ଧ ନିର୍ଜନ ବେଳା,
ସମ୍ମୁଖେ ଅପାର ନୀଳ ପାରାବାର
ତରଙ୍ଗର ଊର୍ମି ଖେଳା ।

ଊର୍ଦ୍ଧ୍ୱେ ସ୍ଫୁରେ ଉଠ ତାରକା-ଖଚିତ
ଅନନ୍ତ ନୀଳ ଆକାଶ,

ହେଲା ଶୁଦ୍ଧପ୍ରାଣେ ଅପୂର୍ବ ଉଦାର
ମହାବିଶ୍ୱ ପରକାଶ ।

ଜଳ ସ୍ଥଳ ନଭ ହେଲା ଏକ ଭାବ
ଲଭିଗଲା ଏକତା,

ଅନନ୍ତ ଅଭେଦେ ପରମ ଗୌରବେ
ବ୍ୟକ୍ତ ବିଶ୍ୱ-ମହାସତ୍ତ୍ୱ ।

ବାଳକ ହୃଦୟ ମିଶିଗଲା ସ୍ନେହ
ମହା ଅନନ୍ତ ସଙ୍ଗାନେ

ଅଜ ଭାବ ଭୁଲି ମଣେ ଆପଣାକୁ
ଏକୀଭୂତ ବିଶ୍ୱପ୍ରାଣେ ।

ସୁପ୍ତୋତ୍ଥିତେ ପୁଣି ସେ କ୍ଷୁଦ୍ର ହୃଦୟେ
ସଙ୍କୁଚିତ ବିଶ୍ୱସାର,

ଭିତର ବାହାର କଲା ଏକାକାର
ଅମୃତ ସଙ୍ଗୀତଧାର ।

ହୋଇ ଏକ ଧ୍ୟାନ ମିଳାଇଣ ତାନ
ବିଶ୍ୱ-ସଙ୍ଗୀତ ଲହରେ,

ଗାଏ ଧର୍ମପଦ ପରମ ଆନନ୍ଦେ
'ଜୟ ଜଗନ୍ନାଥ ହରେ ।'

"ନମୋ ନିରଞ୍ଜନ ନିଖିଳ ନିଦାନ
ବ୍ୟାପ୍ତ ସର୍ବ ଚରାଚରେ,

ପ୍ରଭୁ ଦୟାମୟ ମଙ୍ଗଳ-ଆଳୟ
ଜୟ ଜଗଦୀଶ ହରେ ।

ନମୋ ନିରାକାର ସର୍ବ ଗୁଣାଧାର
ବ୍ୟକ୍ତ ବାହ୍ୟ ଅଭ୍ୟନ୍ତରେ,

ପ୍ରଭୁ ବିଶ୍ୱପତି ଅଗତିର ଗତି
ଜୟ ଜଗଦୀଶ ହରେ ।

ଧନ୍ୟ ତୁମ୍ଭ ବଳ ବହଇ ଅନଳ
ଅନ୍ତରୀକ୍ଷେ ନିରନ୍ତରେ,

ଆଦେଶେ ଜଳଧି ନ ଲଙ୍ଘେ ଅବଧି
ଜୟ ଜଗଦୀଶ ହରେ ।

ତବ ଦିବ୍ୟଜ୍ୟୋତି ପରକାଶେ ନିତି
ଗ୍ରହ ତାରା ନୀଳାମ୍ବରେ,

ତବ ପୁଣ୍ୟ ହାସେ କୁସୁମ ବିକାଶେ
ଜୟ ଜଗଦୀଶ ହରେ ।

ନଗ୍ନ ବନ ଗିରି ଭୀମକାନ୍ତ ଶିରି
ତୁମ୍ଭର କଟାକ୍ଷେ ଧରେ,

ଗାଏ ତୁମ୍ଭ ଗୀତ ଏ ବିଶ୍ୱ-ଭରିତ
ଜୟ ଜଗଦୀଶ ହରେ ।

ଅନନ୍ତ ମହିମା ଅତୁଳ ସୁଷମା
ଦଶେ ଦଶେ ସ୍ତରେ ସ୍ତରେ,
ତବ ମହାପ୍ରେମେ ଖେଳେ ଚରାଚରେ
ଜୟ ଜଗଦୀଶ ହରେ ।

ସେ ମହାମହିମା କି ବୁଝିବ ସତେ,
କ୍ଷୁଦ୍ର ନର କଳେବରେ,
କି ଭାଷାରେ ତବ କହିବ ହେ ପ୍ରଭୁ
ଜୟ ଜଗଦୀଶ ହରେ ।

ଦେଶ କାଳ ସୀମା— ଅତୀତ ମହିମା
ଅଗୋଚର ସ୍ୱର ନରେ,
ଏକ ଅଦ୍ୱିତୀୟ ପୂର୍ଣ୍ଣ ପ୍ରେମମୟ
ଜୟ ଜଗଦୀଶ ହରେ ।

ତୁମ୍ଭ ପରାତ୍ପର ପରମ ଈଶ୍ୱର
ଆସ୍ଥା ଦଅ ଶ୍ରୀପଦ୍ମରେ,
ପୂରୁ ତବ ଇଚ୍ଛା ଏ ନର ପରାଣେ
ଜୟ ଜଗଦୀଶ ହରେ ।

ତୁଭାଶି କରୁଣା ଯେ ପୁଣ୍ୟ ପ୍ରେରଣା
ଦେଉଅଛ ମୋ ଅନ୍ତରେ,
ତବ ତାହା ସିଦ୍ଧି କରୁଣା-ବାରିଧି
ଜୟ ଜଗଦୀଶ ହରେ ।

ମୋ ହୃଦୟ-ସ୍ୱାମୀ, ତୁମ୍ଭେ ଅନ୍ତର୍ଯ୍ୟାମୀ,
ଦେଖାଉଛ ଯାହା ଥରେ,
ସେ ଅମୃତ-ଗନ୍ଧ ଦିଅ ପ୍ରାଣପନ୍ତ !
ଜପୁ ଜଗଦୀଶ ହରେ ।

ଚନ୍ଦ୍ରଭାଗା ମୋର ଘେନ ନମସ୍କାର
ଦିଅ ମୋତେ ନିଜ ଅଙ୍କ,
ବନ୍ଧୁ ମାତୃସ୍ନେହ ମିଶାଅ ଏ ଦେହ
ଅତଳ ଜଳଧି ସଙ୍ଗେ ।"

ଗାଇ ଏତିକରି ଡୁବି 'ହରି ହରି'
ଡେଇଁଲା ସେ ନଈଜଳେ,
ନ ରହିଲା ତାର ଚିହ୍ନ କି ଆକାର
ଗଲା ମହାସିନ୍ଧୁ ତଳେ ।

ଆଉ ଦିନ ରବି ଉଇଁଣ ଚମ୍କିଲା
ଧର୍ମ ଶୁଭ୍ର ମନ୍ଦିର-ଚୂଡ଼,
ନ ଜାଣିଲେ କେହୁ କଏ ସେ ମୁଢ଼ିଲା
କୋଣାରକେ ଏ ଦେଉଳ ।

ନଷ୍ଟ ଗିରି ବନେ ସାଗର କାନନେ
ମିଶିଗଲା ହାଡ଼ ମାଂସ,
"ଧର୍ମପଦ" ନାମ କାଳସିନ୍ଧୁ ଜଳେ
ସମୁଦ୍ର-ଗରଭେ ଗ୍ରାସ ।

ଲୁବ୍ଧ ରହେ ନାହିଁ ସତ୍ୟ ଆଚରଣ
ଯାରେ ହୁଏ ତା ପ୍ରବୃତ୍ତି,
ନାହିଁ ଧର୍ମପଦ, ଭକ୍ତି ରୁ ସେବନ
ଅଛୁ ଏବେ ଜନଶ୍ରୁତ ।

# ବ୍ରହ୍ମତତ୍ତ୍ୱ

ବା

# ନଚିକେତା ଉପାଖ୍ୟାନ



## ପ୍ରଥମ ଅଧ୍ୟାୟ

### ପ୍ରଥମ ବଲ୍ଲୀ

ଥିଲେ ଋଷି ଉଦ୍ଦାଳକ ପୁରଣ-ପ୍ରଧାନ
ବାଜଶ୍ରବା ତାଙ୍କ ବଂଶେ ସୁଯୋଗ୍ୟ ସନ୍ତାନ ।

ସ୍ୱର୍ଗଲାଭ ଆଶେ କଲେ ବିଶ୍ୱଜିତ ଯାଗ
ଧନ ଦାନେ ସର୍ବସ୍ୱାନ୍ତ ହେଲେ ମହାଶୟ ।

ବିଚକ୍ଷଣ ନଚିକେତା ଥିଲେ ତାଙ୍କ ସୁତ
ବାଳକାଳୁଁ ତାଙ୍କ ମନ ସଦା ଶୁଦ୍ଧପୂତ ।

ଦେଉଥିଲେ ପିତା ଯେବେ ବୃଦ୍ଧା ଗାଭୀ ଦାନ
ଦେଖି ଦୁଃଖେ ଅବସନ୍ନ ନଚିକେତା-ପ୍ରାଣ ।

ମର୍ମେ ବ୍ୟଥା ପାଇ ମନେ କଲେ ସେ ବିଚାର,
"ଏଭଳି ଗୋଦାନେ ଅଛି କିବା ଉପକାର ?

ଏ ସକଳ ଗୋରୁ ଆହା ଜୀର୍ଣ୍ଣ କ୍ଷୀଣ ଅଙ୍ଗ
ଚାଇଛନ୍ତି, ଇନ୍ଦ୍ରିୟ ଲୋପ, ଯାଉଛନ୍ତି ଶକତି ।

ପିଇଛନ୍ତି ଶେଷ ଢୋକ ଚରଢନ ପାଣି
ଖାଇଛନ୍ତି ଶେଷ ଘାସପୁଡ଼ା ଏଦ୍ରୁ ଗାଣ୍ଠ ।

ଦୁଧ ଦେବା ଲାଗି ଆଉ ନାହିଁ ଦେହେ ବଳ
ଏ ଗୋଦାନେ ଦୁଃଖମୟ ଲୋକ ସିନା ଫଳ !"

ପିତାଙ୍କୁ ସେ ନଚିକେତା ପୁଛନ୍ତି ବଚନ,
"କାହା ଦାନ ଲାଗି ମୋତେ କଲ୍ପିଛ ଆପଣ ?"

ବାରମ୍ବାର ପଚାରନ୍ତେ ପିତା ବିରକତେ
କହିଲେ, "ଯମଙ୍କୁ ଦେବି ଏହି ଲାଗେ ତତେ ।"

ଶୁଣି ଏ ବଚନ ପୁତ୍ର ଭାବନ୍ତି ହୃଦୟେ,
"କପାଇଁ ପେଷିବେ ପିତା ମୋତେ ଯମାଳୟେ ?

ଛନ୍ତି ପିତାଙ୍କର ପୁତ୍ର ଶିଷ୍ୟ ଯେତେ ଜଣ
ସେବାଧର୍ମେ ମୁଁ ତ ନୁହେଁ ଅତି ଅକଞ୍ଚନ ।

ନ ହେବି ଉତ୍ତମ ମଧ୍ୟେ ଯେବେ ଶ୍ରେଷ୍ଠତମ
ମଧ୍ୟମ କୋଟିରେ କେବେ ନୁହେ ମୁଁ ଅଧମ
ଯାହାହେଉ କ୍ରୋଧ ପିତା କହିଲେ ଯେ କଥା
ପାଳିବି ତା, ନ କରିବି କେବେ ହେଁ ଅନ୍ୟଥା ।"

କ୍ଷଣେ ଅନ୍ତେ ପିତାଙ୍କର କ୍ରୋଧ ଉପଶମେ ।
'କି କହିଲି' ବୋଲି ବ୍ୟଥା ପାଇଲେ ମରମେ ।

ତହୁଁ ନଚିକେତା ସ୍ନିଗ୍ଧ କୋମଳ ବଚନେ
ଭଣନ୍ତି, "ହେ ପିତା, କିପାଁ ଦୁଃଖ କର ମନେ ?

ଆମ୍ଭ ପିତୃ ପିତାମହ ପୂର୍ବ ଆଚରଣ
ଯେଉଁ ବିଧାନେ ଚଳୁଛନ୍ତି ଏବେ ସାଧୁଗଣ ।

ଶୁଦ୍ଧ ବୁଦ୍ଧ ଚିତ୍ତେ ତାହା କର ହେ ବିଚାର
କର ନାହିଁ କେବେ ନିଜ ଉକ୍ତି ପ୍ରତ୍ୟାହାର ।

ବ୍ରୀହି ପରି ଶସ୍ୟ ସମ ମରଇ ମାନବ
ଶସ୍ୟସମ ହୁଏ ପୁଣି ତାହାର ଉଦ୍ଭବ ।

ଜନମ-ମରଣ-ବଶ ଅନୁକ୍ଷଣ ଲୋକ
ପେଷ ମୋତେ ଯମପୁରେ କର ନାହିଁ ଶୋକ ।"

ପିତୃସତ୍ୟ ରକ୍ଷା ଲାଗି ସେ ଯୋଗ୍ୟ ତନୟ
ଆଜ୍ଞା ଶିରେ ବହି ବେଗେ ଗଲେ ଯମାଳୟ ।

ନଚିକେତା ପ୍ରବେଶିଲେ ଯେବେ ଯମପୁରେ
ଥିଲେ ଯମ ଘରବାସେ କାହିଁ ବହୁ ଦୂରେ ।

ବାହୁଡ଼ନ୍ତେ ତିନି ଦିନ ଅନ୍ତେ ନିଜ ବାସେ
ଭୃତ୍ୟଗଣ ଜଣାଇଲେ ଶମନ ସକାଶେ ।

"ଅଗ୍ନି ସମ ବ୍ରହ୍ମଦୀପ୍ତି ରୂପ କାନ୍ତିମନ୍ତ
ବ୍ରାହ୍ମଣ ଅତିଥି ତବ ଗୃହେ ଉପଗତ ।

ତିନି ଦିନ ହେଲା ବିପ୍ର ଅଛନ୍ତି ନିରାହାରେ,
ପୂଜ ତାଙ୍କୁ ଅନୁକ୍ଷଣ ଉଚିତ ଉପଚାରେ ।

ବ୍ରାହ୍ମଣ ଅତିଥି ଗୃହେ ହେଲେ ଅନାଦୃତ
ନାଶନ୍ତି ଅନଳ ପ୍ରାୟେ ସକଳ ସୁକୃତ ।

ଗୃହସ୍ଥର ଗୃହେ ଯେବେ ଅତିଥି ବ୍ରାହ୍ମଣ
ହରନ୍ତି ନ ପାଇ ଯଥାବିହିତ ଭୋଜନ ।

ସେ ମନ୍ଦମତିର ଯାଏ ସର୍ବ ଧର୍ମ ନାଶ
ନ ରହେ ତାହାର କେବେ ପଶୁପୁତ୍ର ଆଶ ।

ବାଞ୍ଛା ସିଦ୍ଧି ନୁହେ, ଆଶା ନ ହୁଏ ପୂରଣ
ପ୍ରିୟ ସତ୍ୟ ସମ୍ଭାଷଣ ତାର ଅକାରଣ ।

ଯଜ୍ଞ କଲେ ଯଜ୍ଞଫଳ ନ ହୁଏ ପ୍ରାପତ
ତଡ଼ାଗ ଉଦ୍ୟାନ ଦାନେ ନୁହେ ପୁଣ୍ୟାନ୍ୱିତ ।

ନ ଲଭେ ଜୀବନେ କେବେ ସାଧୁସଙ୍ଗ ଫଳ
ନିଷ୍ଫଳ ହୁଅନ୍ତି ତାର ସୁକୃତ ସକଳ ।"

ଏଷମ ବାରତା ଶୁଣି ଭୃତ୍ୟଗଣ ମୁଖେ
ନଚିକେତା ସନ୍ନିଧାନେ ଯମରାଜା ଦୁଃଖେ
କହନ୍ତି କାତର ଚିତ୍ତେ ବିନମ୍ର ବଚନ,

"ଦ୍ୱିଜ ଧନ ନମସ୍କାର ମୋ ଗ୍ରହ ଆପଣ !

ଆପଣ ଅତିଥି ପୁଣି ବିଶେଷେ ବ୍ରାହ୍ମଣ
ତେଣୁ ମୋର ନିତ୍ୟ ପୂଜା ଅର୍ଚ୍ଚନା ଭଜନ ।

କ୍ଷମ ଅପରାଧ ବିପ୍ର, ନମେ ତବ ପଦ
ହେଉ ମୋର ସର୍ବ ଶୁଭ ନ ଘଟୁ ବିପଦ ।

ଅନ୍ନ ଗଣ ଲାଗି ଯାଏ ଇଚ୍ଛା ଅନ୍ନ ବାର
ମାଗ ନଦ ଅତିଥି ଦେବ ସତ୍ୟ ଏ ସଂସାର ।”

ଯମ ବାକ୍ୟ ନଚିକେତା ଭଣନ୍ତି ଏଥର,
“ମୋଠାରେ ଆପଣ ଯେବେ ହେଲ ସୁପ୍ରସନ୍ନ ।
ପିତା ମୋର ବାଜଶ୍ରବା ଗୌତମ ତାପସ
ମୋ ବିରହ-ଭାବନାରେ ନୁହନ୍ତୁ ଅବଶ ।

ନ ଜନମୁ ତାଙ୍କ ହୃଦେ କୋପ ମୋହ ପୁଣ
ରହନ୍ତୁ ସଦା ସେ ଶାନ୍ତ ସୁପ୍ରସନ୍ନ ମନ
ତବ ପୁରୁ ଫେରିଗଲେ ଦେଖି ମୋ ବଦନ
ଚିହ୍ନନ୍ତୁ କରନ୍ତୁ ପୁଣି ପ୍ରିୟ ସମ୍ଭାଷଣ ।
ମୋ ପ୍ରତି ସଦୟ ଯେବେ ତବ ଦଣ୍ଡଧର
ଦେଇ ଆଜ୍ଞା ଦଅ ମତେ ଏ ପ୍ରଥମ ବର ।”

କହେ ଯମ, “ନଚିକେତା ଦେଲି ମୁଁ ଏ ବର
ତବ ବିରହରେ ପିତା ନ ହେବେ କାତର ।
ସୁଖେ ପୁହାଇବେ ନିଶି ନିଶ୍ଚିନ୍ତ ଶୟନେ
ତୁମ୍ଭ ପ୍ରତି ପୂର୍ବ ପ୍ରୀତି ରଖିଥିବେ ମନେ ।

ମୃତ୍ୟୁମୁଖୁଁ ଲେଉଟିବା ଦେଖି ନିଜ ଘରେ
ନ କରି ସେ କୋପ, ନେବେ ତୁମ୍ଭଙ୍କୁ ସାଦରେ ।”

କହେ ପୁଣି ନଚିକେତା, “ସ୍ୱର୍ଗେ ନାହିଁ ଭୟ,
ନାହିଁ ମୃତ୍ୟୁ, ନାହିଁ ଜରା, ନାହିଁ କିଛି ଭୟ ।

ନଜାଣନ୍ତି ସ୍ୱର୍ଗଲୋକେ କ୍ଷୁଧା ତୃଷା ତ୍ରାସ
ଅତିକ୍ରମି ଶୋକ ସଦା କରନ୍ତି ଉଲ୍ଲାସ ।

ଯେ ଅଗ୍ନି ପ୍ରସାଦେ ଲଭି ଅକ୍ଷୟ ଅମୃତ
ସ୍ୱର୍ଗଲୋକ ନରନ୍ତର ହୁଏ କୃତକୃତ୍ୟ ।

ସେ ଅଗ୍ନି ତଥ୍ୟ ତତ୍ତ୍ୱ ତୁମ୍ଭର ଗୋଚର
କହ ଏ ଶ୍ରଦ୍ଧାଧୀ ଜନେ—ଏ ଦ୍ୱିତୀୟ ବର ।”

“ସ୍ୱର୍ଗ-ସିଦ୍ଧି ଦାତା ଅଗ୍ନି ନିଗୂଢ଼ ବୃତ୍ତାନ୍ତ
ଜାଣେ ମୁଁ ନଚିକେତା” କହନ୍ତି କୃତାନ୍ତ ।

“ଲଭଇ ଅନନ୍ତ ସୁଖ ସ୍ୱର୍ଗଧାମେ ନର
ପ୍ରସନ୍ନ ହେଲେ ଯେ ଦିବ୍ୟ ଅଗ୍ନି ବୈଶ୍ୱାନର ।

ସର୍ବ ଲୋକ ସ୍ଥିତି ହେତୁ ସେ ପୁଣ୍ୟ ପାବକ
ସର୍ବ ଅନ୍ତର୍ଯ୍ୟାମୀ ସର୍ବ ବୁଦ୍ଧି-ନିୟାମକ ।

କହୁଛି ଏଣୁ ଯେ ତତ୍ତ୍ୱ ହେତୁ ଜଣ ଜାଣି”
ଆଚର ବୁଝାନ୍ତି ସତ୍ପ୍ରେ ଦେବ ଜନ୍ତୁବଣ ।

ସର୍ବଲୋକ ଆଦି ହେତୁ ଅନଳ ବର୍ଣ୍ଣନ
ଯଜ୍ଞ ଇଷ୍ଟକର ସଂଖ୍ୟା ପ୍ରକାର ପ୍ରମାଣ ।

ଯଜ୍ଞ ଆମନ୍ତ୍ରିତ ଅଗ୍ନି ଅର୍ଚ୍ଚନ ବିଧାନ
ଯମ ମୁଖୁଁ ଶୁଣି ସବୁ ଗୂଢ଼ ତତ୍ତ୍ୱ ଜ୍ଞାନ ।

ସ୍ଥିର ଚିତ୍ତେ ନଚିକେତା କରନ୍ତି ଆବୃତ୍ତି
ତୁଷ୍ଟ ହେଲେ ଯମରାଜା ଦେଖି ତାଙ୍କ ବୃତ୍ତି ।

ସୁଯୋଗ୍ୟ ଶିଷ୍ୟ ନଚିକେତା ବୁଝିଲେ ଅନ୍ତରେ
କହିଲେ ମହାତ୍ମା ତାଙ୍କୁ ଅତି ପ୍ରୀତଭରେ—

"ତୁମ୍ଭଙ୍କୁ ଦେବି ମୁଁ ଆଜ ଅନ୍ୟ ଏକ ବର
ତବ ନାମ ବୋଲାଇବେ ସ୍ୱର୍ଗ-ବୈଶ୍ୱାନର ।

ନଚିକେତା ଅଗ୍ନି ବୋଲି ଦେବ ସେ ବହ୍ନିର
ଲଭ କର୍ମମୟ ସ୍ୱର୍ଗ ଚଭ ଆନନ୍ଦର ।

ପିତାମାତା ଗୁରୁଜନ ଆଜ୍ଞା ସେନି ଶିରେ—
ପ୍ରତ୍ୟେକ ଯେ ତିନି ସନ୍ଧ୍ୟା ଅଗ୍ନି ଜପନ୍ତି ବିଧିରେ

ଯଜ୍ଞ ଦାନ ଅଧ୍ୟୟନ ରତ ଅନୁକ୍ଷଣ
ତରଇ ସେ ଜନ୍ମ-ମୃତ୍ୟୁ ଦୁସ୍ତର ବନ୍ଧନ ।

ହିରଣ୍ୟ ଗର୍ଭଙ୍କ ଜାତ ବିଶ୍ୱପ୍ରକାଶକ
ବନ୍ଦ୍ୟବନ୍ଦ୍ୟ ସର୍ବଜ୍ଞାତା ସେ ଦେବ ପାବକ ।

ଆତ୍ମା ରୂପେ ପ୍ରାଣୀହୃଦେ ବସନ୍ତି ସତତ
ଯୁକ୍ତି ସେହୁ ଅନୁଭବେ ଆଣଇ ଏ ତତ୍ତ୍ୱ ।

ଲଭଇ ସେ ଅନୁପମ ଅଚଣ୍ଡ ସନ୍ତୋଷ
ଚିରଦିନ ଲାଗି ତୁଟେ ଭବଭ୍ରାନ୍ତି ଦୋଷ ।

ସ୍ୱଗତ ଇଷ୍ଟକେ ବେଦୀ କରି ଯେ ରଚନା
ସାଧେ ନଚିକେତା ଅଗ୍ନି ତ୍ରିବାର ଅର୍ଚ୍ଚନା

ଆତ୍ମବଳେ ଧ୍ୟାୟେ ତିନି କରି ଏକ ଲୟ
ମୃତ୍ୟୁପାଶ କାଟେ ସେହୁ ନୋହୁ ତାକୁ ଭୟ;

ସ୍ୱର୍ଗ ଦ୍ୱେଷ ଆଦି ଯେତେ ଦୁଃଖର ନିଦାନ
ମାନବ ଜନମେ ତାର ପାଏ ଅବସାନ ।

ଶୋକେ ଦୁଃଖେ କେବେ ସେଥି ନ ହୁଏ ବିହ୍ୱଳ
ଭୁଞ୍ଜେ ମର୍ତ୍ତ୍ୟେ ମହାମୋଦ ସ୍ୱର୍ଗଲୋକ ଫଳ ।

କହିଲି ଏ ନଚିକେତା ଅଗ୍ନି ବିବରଣ ।
ଲୋଡ଼ିଲ ଦ୍ୱିତୀୟ ବରେ ଯେ ତତ୍ତ୍ୱ ଆପଣ ।

ତବ ନାମେ ହେବେ ଏହି ଅଗ୍ନି ଲୋକେ ଖ୍ୟାତ
କି ତୃତୀୟ ବର ମାଗ କହ ଏବେ ତାତ !"

କହେ ନଚିକେତା, "ମନେ ଲାଗେ ମୋ ସନ୍ଦେହ
କି ହୁଏ ମାନବ ? ଯେବେ ତେଜେ ନରଦେହ ।

କହନ୍ତି କେତେକ ଆତ୍ମା ଯାଏ ପରଲୋକେ
ବିଶ୍ୱାସ କରନ୍ତି ନାହିଁ ପରଲୋକେ ଥୋକେ ।

ଚିରକାଳ ରହିଛି ଏ ସଂଶୟ ଜଗତେ
ଦିଅ ଉପଦେଶ ଯେହ୍ନେ ଯିବ ମୁଁ ପରତେ ।

ପରଲୋକ ତତ୍ତ୍ୱ ପ୍ରଭୁ ହେଉ ମୋ ଗୋଚର
ଦୟାକରି ଦିଅ ମୋତେ ଏ ତୃତୀୟ ବର ।"

କହେ ଯମ, "ପଚାରିଲ ଯେ ତତ୍ତ୍ୱ ଆପଣ
ସଂଶୟ-ଜଡ଼ିତ ତହିଁ ପୂର୍ବେ ଦେବଗଣ ।

ଆତ୍ମଧର୍ମ ତତ୍ତ୍ୱ ଏହି ସୂକ୍ଷ୍ମ ସୁଗହନ
ବୁଝିବେ ସହଜେ କାହିଁ ଜନସାଧାରଣ ?

ଏ ବର ବଦଳେ ଆନ କଥାଇ ନ ବର
ତ୍ୟଜ ଏହା ନଚିକେତା, ମାଗ ଅନ୍ୟ ବର ।"

ବୋଲେ ନଚିକେତା, "ଯାହା କହିଲ ଆପଣ
ଏ ତତ୍ତ୍ୱ ସନ୍ଦେହ ପୂର୍ବେ କଲେ ଦେବଗଣ ।

ଉତ୍ତର ଜାଣିବା ଏହା ନୁହଇ ସୁଗମ
ସତ୍ୟ. ମାତ୍ର ତୁମ୍ଭ ପରି କାହିଁ ଅନ୍ୟତମ ।

ଏ ତତ୍ତ୍ୱର ଜ୍ଞାନଯୁକ୍ତ ବକ୍ତା ଦଣ୍ଡଧର
ଏହା ବିନୁ ନାହିଁ ମୋର ଲୋଡ଼ା ଅନ୍ୟ ବର ।"

ଦେଖିବାକୁ ନଚିକେତା ହୃଦୟ-ଦୃଢ଼ତା
କହିଲେ ଦେଖାଇ ଲୋଭ ସେ ଯମ ଦେବତା—
"ଶତ ବର୍ଷ ଯାଏ ଜୀବୀ ପୁତ୍ରପୌତ୍ରବସ୍ତୁ
ମାଗ ଅଗଣିତ ଧେନୁ ସ୍ୱର୍ଣ୍ଣ ହସ୍ତୀ ହୟ ।

ମାଗ ନେ ଧରଣୀ ତଳେ ମହା ଆୟତନ
ଯେତେକାଳ ଇଚ୍ଛା ରହ ଧରିଣ ଜୀବନ ।

ଅବା ଏହିପରି ଅନ୍ୟ ଯାହା ବାଞ୍ଛା ତବ
ମାଗ ଚିରସୁଖ, ମାଗ ଅତୁଳ ବିଭବ !
ବିଶାଳ ମଣ୍ଡଳେ ତୁମ୍ଭେ ହୁଅ ଅଧୀଶ୍ୱର
ପୂର୍ଣ୍ଣ କରିବି ମୁଁ ଯେତେ କାମନା ତୁମ୍ଭର ।

ଯେ ସୁଖ ସୌଭାଗ୍ୟ ନିତି ଲୋଡ଼ଇ ମାନବ
ମର୍ତ୍ତ୍ୟବାସୀ-ନରେ ଯାହା ଅତ୍ୟନ୍ତ ଦୁର୍ଲ୍ଲଭ ।

ସ୍ୱଚ୍ଛନ୍ଦ ମାଗ ସେ ସବୁ କର ଯା କାମନା
ଦେଖୁଅଛ ଏଥି ଯେତେ ଅମର-ଅଙ୍ଗନା ।

ସ୍ୱର୍ଣ୍ଣରତ୍ନ ସୁଖଚିତ ସୁନ୍ଦର ସ୍ୟନ୍ଦନ
ଶୁଣୁଛ ଯେ ତୁରୀ ଭେରୀ ବାଦିତ୍ର ନିଃସ୍ୱନ ।
ମାନୁଷଦୁର୍ଲ୍ଲଭ ଏହୁ ଅଶେଷ ସମ୍ପଦ
ଖଟନ୍ତୁ ଏ ସର୍ବେ ହୃଷ୍ଟ ସଦା ତୁମ୍ଭ ପଦ ।

କିନ୍ତୁ ନଚିକେତା, ଶୁଣ ମୋର ନିବେଦନ
ନ ପଚାର ମୃତ୍ୟୁତତ୍ତ୍ୱ କଦାପି ଆପଣ ।”

କହେ ନଚିକେତା, “ଯେ ଯେ ସମ୍ପଦ ସମ୍ଭୋଗ
କହିଲ ଅନ୍ତକ ନୁହେ ମୋର ଉପଯୋଗ ।

ମାନବ ଇନ୍ଦ୍ରିୟ ତେଜ, ଇନ୍ଦ୍ରିୟ ବିଳାସ
ବିଳାସ-ସାମଗ୍ରୀ, ସବୁ ଯାଏ କ୍ଷଣେ ନାଶ ।

ସଂସାର-ସମ୍ପଦରାଶି କ୍ଷଣକାଳସ୍ଥାୟୀ
ଆଜି ଅଛି ଯାହା ପୁଣି କାଲିକି ତା ନାହିଁ ।

ଯାଚୁଛ ପରମ ଆୟୁ ଆପଣ ଯେ ମତେ
କେତେ କାଳ ସ୍ଥାୟୀ ତାହା କହ ହେ ଜଗତେ ?

ବ୍ରହ୍ମମୁକ୍ତ ହେଲେ ସୁଧା ପାଏ ହେନେ କ୍ଷୟ
ନାହିଁ ମୋର ଲୋଡ଼ା ଆୟୁ ରଥ ହସ୍ତୀ ହୟ
ବାହନ ବନିତା, ନୃତ୍ୟ ଗୀତେ ପ୍ରୟୋଜନ
ନାହିଁ, ସେ ସକଳ ଥାଉ ତୁମ୍ଭର ଶମନ !

ଉପୁଜ ଭୋଗେ ନର ନ ପାଏ ତୃପତି
ବିଶେଷ ସାକ୍ଷାତ ତବ ଯେବେ ଜନ୍ମପତି !

ଫଳିଛି ମୋ ଭାଗ୍ୟ, ତତ୍ତ୍ୱ ଚିନ୍ତନ ଅସ୍ତୁପ୍ତ
ନବ ଯମଚରଣ ମୋର ନାହିଁ ମୃତ୍ୟୁଭୟ ।

ତେଣୁ ମୋର ଅନ୍ୟ ବାଞ୍ଛା ନାହିଁ ଯମରାଜ !
ଦିଅ ଆଦେଶ କର ଜଡ ମୃତ୍ୟୁତତ୍ତ୍ୱ ଆଜ ।

ଅଜର ଅମରଗଣ ସନ୍ନିଧାନେ ଆସି
ଜନ୍ମମୃତ୍ୟୁ ଚକ୍ର କିଏ ଧରାତଳବାସୀ ?

ଜାଣି କ୍ଷଣସ୍ଥାୟୀ ସୁଖ ସୌଭାଗ୍ୟ ସମାପ୍ତି
ଧନଜନ ରୂପ ରାଜ୍ୟ କନ୍ୟାଙ୍ଗନା ଲଭେ ।

ଭଙ୍ଗେ ଲେଉଟ କ୍ଷମା ସ୍ୱାଦ ଜୀବନ
ବୃଦ୍ଧି ଅଜ ଲଭ୍ୟ ମହାମୂଲ୍ୟ ପ୍ରୟୋଜନ ?

ପରମ ଅଭୀଷ୍ଟ ସିଦ୍ଧି ହେବ ଯେ କୃପାରେ
ପରଲୋକ, କହାଅ ସେ ତତ୍ତ୍ୱ ଯମରାୟେ !

ମରଣ ଅନ୍ତରେ ଆତ୍ମା ଥାଏ କି ନ ଥାଏ
ମର୍ତ୍ତ୍ୟେ ଲୟ ପାଏ କିବା ପରଲୋକେ ଯାଏ ?

ଚିରଦିନ ମାନବର ରହିଛି ସଂଶୟ
ଅତି ଗୁପ୍ତ ଗହନ ଏ ନିଗୂଢ଼ ବିଷୟ ।

ଦିଅ ଉପଦେଶ, କର ସଂଶୟ ମୋଚନ
ନାହିଁ ମୃତ୍ୟୁ, ମୋର ଅନ୍ୟ ବରେ ପ୍ରୟୋଜନ ।”



## ଦ୍ୱିତୀୟ ବଲ୍ଲୀ

ଜାଣିଲେ ପରୀକ୍ଷା କରି ଏବେ ଦେବ ଯମ
ନଚିକେତା ଦୃଢ଼-ନିଷ୍ଠା ବୈରାଗ୍ୟ ପରମ ।

ଉପଯୁକ୍ତ ଶିଷ୍ୟ ବୋଲି ବୁଝି ଦଣ୍ଡଧାରୀ
ବିଦ୍ୟା ଅବିଦ୍ୟାର ତତ୍ତ୍ୱ କହିଲେ ବିସ୍ତାରି ।

"ବ୍ରହ୍ମବିଦ୍ୟା କହେ ଦେବ ଶୁଣ ନଚିକେତ !
ଯେ ଜନେ ବ୍ରହ୍ମଜ୍ଞାନ ତବ ଅଭିପ୍ରେତ ।

ଶ୍ରେୟ ତାହା ମାନବର ମୋକ୍ଷ ବିଧାୟକ
ପ୍ରେୟ ଯାହା ଲୋଡ଼େ ନର, ତହିଁରୁ ପୃଥକ ।

ଶ୍ରେୟ ପ୍ରେୟ ବେନି ଭାବେ ଆଛେ ମାନବ
ପ୍ରେୟ ପଥେ ଭଜଇ ସେ ସଂସାର-ବିଭବ ।

ଶ୍ରେୟ ପଥ ଅନୁସରି କାଟେ ଭବପାଶ
ପାଏ ପୁରୁଷାର୍ଥ ଯା'ର ନାହିଁ କେବେ ନାଶ ।

ଲୋଡ଼ଇ ଯେ ପ୍ରେୟ ପଥ ଧନ-ଦାର-ଲୋଭେ
ହରଇ ପରମାର୍ଥ ପଡ଼ି ଚିରକ୍ଷୋଭେ ।

ମାନବ-ସନ୍ମୁଖେ ଅଛି ଶ୍ରେୟ ପ୍ରେୟ ବେନି
ବିବେକୀ ବିଚାର କରେ ଗୁଣ ଦୋଷ ଘେନି ।

ଗୁଣ ଦୋଷ ବୁଝିକରେ କର୍ତ୍ତବ୍ୟ ନିଶ୍ଚୟ
ହଂସ ଯଥା ପିଇ କ୍ଷୀର ଛାଡ଼ିଯାଏ ପୟ ।

ଦେହୁ ତେଜ ହେଲେ ଧୀର ଶେଷକ୍ଲା ପାଦରେ
କାମଚ୍ଛଳେ ମୃତ୍ୟୁଜନ ଦେଖୁ ଅନୁସରେ ।

ଲେଉଟି ମତ ଧନଜନ ଅଙ୍ଗ ଜମିତାସୁ
ଧୀର ବାଞ୍ଛି ମୋକ୍ଷପଥ ଅନନ୍ତ ଅକ୍ଷୟ ।

ସ୍ୱର୍ଗ ଧନ ରାଜ୍ୟ ଆଦି ରମ୍ୟ ବସ୍ତୁ ଚୟ
ରୂପସୀ ରମଣୀ ଅବା ସୁଯୋଗ୍ୟ ତନୟ ।

ରମ୍ୟ ଲୋକମାନ୍ୟ ଯାହା ଦେଖାଇ ମାନବ
ବୁଦ୍ଧିଅନ୍ଧ ବାଞ୍ଛାଧୀ ହୁଏ ସେ ସରବ ।

ତେଣୁ ମୁଁ ଯାଚିଲେ ସୁଧା ନ କଲ ଗ୍ରହଣ
ଧନ୍ୟ ତୁମ୍ଭେ ନଚିକେତା ବଡ଼ ବିଚକ୍ଷଣ !

ଲୋଭର ଯେ ମଣିମୟ ବସ୍ତୁ ବନ୍ଧହାରେ
ବନ୍ଧ ମୂଢ଼ଜନ ବୁଡ଼ିମରନ୍ତି ସଂସାରେ ।

ଦେଖିଲେ ହେଁ ସେ ଉତପାଶ ଅତି ମନୋରମ
ନ ନେଲ ନ ଦେଲ ତହିଁ ତବ ମନଭ୍ରମ ।

ବିଦ୍ୟା ଅବିଦ୍ୟାର ତତ୍ତ୍ୱ କଲ ହେ ବିବୃତ
ଉପରେ ଅଛଇ ସେ ଉଭୟ ପ୍ରକୃତ ।

ନିଶ୍ଚିନ୍ତ ଆଲୋକ ଏକ, ଅନ୍ୟ ଘୋର ତମ,
ମୁକତି ଏକର ଫଳ, ଅନ୍ୟର ବନ୍ଧନ ।

ଜାଣିଲି ତୁମ୍ଭଙ୍କୁ ବତ୍ସ ବିଦ୍ୟା-ଅଭିଳାଷୀ
ନୁହ ନଚିକେତା, କାମସମ୍ଭୋଗ-ପ୍ରୟାସୀ ।

ବସ୍ତୁ କାମ ପ୍ରତିଲାଭେ ନ ଟଳଇ ମନ
ନ ଛାଡ଼ଇ ଶ୍ରେୟପଥ ଧନ୍ୟ ବିଚକ୍ଷଣ !

ପରିବୃତ ହୋଇ ଘୋର ଅଜ୍ଞାନ-ଅନ୍ଧାରେ
କାମତୃଷ୍ଣେ ବିମୋହିତ ସଦା ଯେ ସଂସାରେ

ମନେନ୍ତି ନିଜକୁ ଧୀର ପଣ୍ଡିତ ପ୍ରବୀଣ
ଆଧି ବ୍ୟାଧି ଜରାମୃତ୍ୟୁ ଦୁଃଖ ଚିରଦିନ ।

ଭୋଗନ୍ତି ସେ ଅବିବେକୀ ବସ୍ତୁ ବହୁଗତି
ଏକ ଅନ୍ଧ ଆନ ଅନ୍ଧେ ଚଳାଏ ଯେ ମତି ।

ବାଳକ ସ୍ୱଭାବ ଯେହ୍ନ, ନୂତନ ବୁଦ୍ଧିମନ୍ତ
ମନ ଯାଇ ବିତ୍ତ ମୋହେ ମୋହିତ ସତତ;

ପ୍ରମାଦଜନିତ ମତି ଯେ ମୂଢ଼ ପାମର
ନ ବୁଝେ ମରଣ ଅନ୍ତେ ଅଛି ଲୋକାନ୍ତର ।

ଏ ସଂସାର ସବୁ, ନାହିଁ ଆନ ଏହା ପରେ
ଏମୂଢ଼ ବିଶ୍ୱାସ ଯେହ୍ନ ଘୋଷଇ ଅନ୍ତରେ ।

ବାରମ୍ବାର ମୋର ବଶେ ଆସଇ ସେ ଜନ
ନ ତୁଟେ ତା ଜନ୍ମ ଜନ୍ମ-ମରଣ-ବନ୍ଧନ ।

ଆଶ୍ଚର୍ଯ୍ୟ ଏ ଆତ୍ମତତ୍ତ୍ୱ କେତେ ଲୋକେ ଜାଣେ
କେତେ ବା ସୁଯୋଗ ପାଏ ଏ ତତ୍ତ୍ୱ ଶ୍ରବଣେ ।

ଶୁଣି ସୁଦ୍ଧା ଅତି ଅଳ୍ପ ବୁଝନ୍ତି ଏ ତତ୍ତ୍ୱ
ଆତ୍ମାର ଯଥାର୍ଥ ତତ୍ତ୍ୱ ପ୍ରକୃତ ମହତ୍ତ୍ୱ ।

ଆତ୍ମତତ୍ତ୍ୱ ପ୍ରକାଶକ ବକ୍ତା ବିଚକ୍ଷଣ
ଅତ୍ୟନ୍ତ ବିରଳ, ମିଳେ କାହିଁ କଦାଚନ ।

ସୁଯୋଗ୍ୟ କୁଶଳ ଶ୍ରୋତା ଜଗତେ ଦୁର୍ଲ୍ଲଭ
ଲଭି ଉପଦେଶ ପୁଣି ଆତ୍ମ ଅନୁଭବ ।

କୋଟିକେ ଗୋଟିଏ କରେ ବହୁତ ପ୍ରୟାସେ
ଯେ ତତ୍ତ୍ୱ ରହସ୍ୟ ତୁମ୍ଭ ପୁଚ୍ଛିଲ ମୋ ପାଶେ ।

ଇତର ପ୍ରାକୃତ ବୁଦ୍ଧେ ଗୁରୁ ଉପଦେଶେ
ଆତ୍ମତତ୍ତ୍ୱ ପରିଜାଣ ନ ହୁଏ ବିଶେଷେ ।

ଆତ୍ମତତ୍ତ୍ୱ ନାନା ଭାବେ କରି ଯେତୁ ଧ୍ୟାନ
ବହୁରୂ ଆତ୍ମାଙ୍କୁ କେବେ ନ ଦେଖନ୍ତି ଆନ ।

ସେହି ବିଚକ୍ଷଣ ଗୁରୁ ଦେଲେ ଉପଦେଶ
ସଂଶୟ ହୃଦୟୁ ଆଉ ନ ରହଇ ଲେଶ ।

ଜଗତର ଭେଦବୁଦ୍ଧି ପାଏ ଅବସାଦ
ସର୍ବତ୍ର ପ୍ରକଟ ଏକ-ବ୍ରହ୍ମ ଆତ୍ମ ଜ୍ଞାନ ।

ଗୁରୁ ଉପଦେଶ ବିନା ତର୍କ ଅନୁମାନେ
ଅଥବା ନିଜ ସ୍ୱଗ୍ରାହ୍ୟ ପ୍ରତ୍ୟକ୍ଷ ପ୍ରମାଣେ ।

ନୁହଇ ଏ ଆତ୍ମତତ୍ତ୍ୱ ମାନବ-ଗୋଚର
ତର୍କେ ବହୁ ଦୂର ଆତ୍ମା ସୂକ୍ଷ୍ମ, ସୂକ୍ଷ୍ମତର ।

ଆତ୍ମତତ୍ତ୍ୱ ଲଭ୍ୟେ ତବ ବଳିଷ୍ଠ ଯେ ମତି
ନୁହଇ କେବଳ ତର୍କେ ଏହାର ପ୍ରାପତି ।

ବ୍ରହ୍ମ ଆତ୍ମା ଦେହ ମଧ୍ୟ ନାହିଁ ଭେଦାଭେଦ
ଯେ ଆଶ୍ଚର୍ଯ୍ୟ ଜାଣନ୍ତି ଏ ଗୂଢ଼ ସାର ବେଦ ।

ତାଙ୍କ ଉପଦେଶ ଶୁଣେ ଏଣୁ ଅଭିଳାଷ
ପୂର୍ଣ୍ଣ ଆତ୍ମଜ୍ଞାନ ଯେବେ ଅନ୍ତରେ ପ୍ରକାଶ ।

ପ୍ରିୟତମ ଧନ୍ୟ ସ୍ୱ-ମ୍ଭ, ଧନ୍ୟ ସତ୍ୟ ଧୃତି
ନାନାଲୋଭେ ନ ଟଳିଲ, ତୁମ୍ଭ ଏକା କୃତୀ ।

ନଚିକେତ ! ତୁମ୍ଭ ପରି ତତ୍ତ୍ୱ ଅଭିଳାଷେ
ଶ୍ରଦ୍ଧାବନ୍ତ ଶିଷ୍ୟ ବହୁ ଆସନ୍ତୁ ମୋ ପାଶେ ।

ସ୍ୱର୍ଗଭୋଗ ନୁହେ ନିତ୍ୟ, ଜାଣଇ ମୁଁ ଭଲେ
ଲଭଇ ମାନବ ଯାହା ନିଜ କର୍ମଫଳେ ।

ବ୍ରହ୍ମପଦ ନିତ୍ୟ ସତ୍ୟ ସୁଧ୍ରୁବ ଶାଶ୍ୱତ
ନୁହେ ସେ ଅଧ୍ରୁବ କର୍ମ ସାଧନେ ଲଭିତ ।

ନଚିକେତ ସ୍ୱର୍ଗେ ଯେ ମୁଁ କଲି ଆରାଧନା
ଇଷ୍ଟକଚୟ ପାରେ କରି ସାଦରେ ସ୍ଥାପନା ।

ବହୁତ ଅନିତ୍ୟ ଦ୍ରବ୍ୟ ଦେଇ ଉପହାର
ମିଳିଛି ସେ ଫଳେ ମତେ ଯମ ଅଧିକାର ।

ମର୍ତ୍ତ୍ୟଲୋକ ତୁଳନାରେ ଚିର ଯମପଦ
ଯଥାର୍ଥ ନୁହେ ଏ ନିତ୍ୟ ଶାଶ୍ୱତ ସମ୍ପଦ ।

ନଚିକେତ, ଧୈର୍ଯ୍ୟଗୁଣେ ଦୃଢ଼ କରି ମନ
ବୁଦ୍ଧିଅଛ ଆତ୍ମତତ୍ତ୍ୱ ତୁମ୍ଭେ ବିଚକ୍ଷଣ ।

ଧର୍ମାଚର ଯହିଁ ନର କାମନାବଶରୁ
ନଶ୍ୱର ବସ୍ତୁର ଯାହା ପରମ ଆଶ୍ରୟ,

ଲଭେ ନର ଆତ୍ମା ଯହିଁ ପରମ ସ୍ଥିତି
ପରାହତ ଯହିଁ ଜନ୍ମ ଜରା ମୃତ୍ୟୁ ଭୀତି,

ଅଣିମାଦି ଯୁକ୍ତ ମହାବନ୍ଦନୀୟ ପଦ
ଯଜ୍ଞର ଅନନ୍ତ ଫଳେ ମିଳେ ଯେ ସମ୍ପଦ,

ଧୀର ଚିତ୍ତେ ଏ ସବୁର କରି ସୁବିଚାର
ସଂସାର ସମ୍ଭୋଗରାଶି ଦୂରେ ପରିହର
କରିଅଛ ନଚିକେତା, ଧନ୍ୟ ମହାମନା
ଧନ୍ୟ ତୁମ୍ଭ ସ୍ଥିର ମତି, ଧୀର ଆଲୋଚନା ।

ଯେ ଆତ୍ମା ସାକ୍ଷାତ ଲାଗି ତବ ଅଭିଳାଷ
ଅତି ସୂକ୍ଷ୍ମ ସୁମହତ ସେ ଆତ୍ମା ପ୍ରକାଶ ।

ପୁଣି ରହିଅଛି ଆତ୍ମା ବିଶ୍ୱ ଅଭ୍ୟନ୍ତରେ
ବର୍ତ୍ତମାନ ମାନବର ହୃଦୟ-କନ୍ଦରେ ।

ବୁଦ୍ଧି ଉପଲବ୍ଧ ତେଣୁ ବୁଦ୍ଧି ଅଧିଗତ ।

ଅନାଦି ଆଦ୍ୟ କାରଣ ପୁରାଣ ଶାଶ୍ୱତ ।

ଦୁଃସାଧ୍ୟ କଠିନ ଅତି ଆତ୍ମାଦରଶନ
ଦେଖନ୍ତି ଆଧ୍ୟାତ୍ମ ଯୋଗେ ସିଦ୍ଧ ସାଧୁଜନ ।

ଲଭି ଆତ୍ମାଦରଶନ ପ୍ରତ୍ୟକ୍ଷ ପ୍ରଜ୍ଞାତ
ହର୍ଷ ଶୋକ ତେଜି ଧୀର ହୁଏ ଦ୍ୱନ୍ଦ୍ୱାତୀତ ।

ଗୁରୁ ମୁଖୁଁ ଉପଦେଶ ଶୁଣି ମର୍ତ୍ତ୍ୟ ନର
ଜାଣଇ ଆତ୍ମାର ସୂକ୍ଷ୍ମ ସ୍ୱରୂପ ଗୋଚର ।
ଶରୀରାଦି ଜଡ଼ବସ୍ତୁଁ ଆତ୍ମା ବିଲକ୍ଷଣ
ମହାମୋଦଦାୟୀ ବସ୍ତୁ ଜଗତ ଧାରଣ ।

ଆତ୍ମାର ସ୍ୱରୂପ ତତ୍ତ୍ୱ ବୁଝି ଜ୍ଞାନବନ୍ତ
ଲଭଇ ପରମ ସୁଖ ଅମୃତ ଅନନ୍ତ ।

ନଚିକେତ, ପଣ୍ଡିତର କାମନାରହସ୍ୟ
ବ୍ରହ୍ମଜ୍ଞାନେ ଅଧିକାରୀ ତୁମ୍ଭେ ନିଃସଂଶୟ ।

ଫିଟିଅଛି ତୁମ୍ଭ ଲାଗି ବ୍ରହ୍ମପୁର ଦ୍ୱାର
ମୋକ୍ଷ ଅଭିମୁଖୀ ତୁମ୍ଭେ କରେ ମୁଁ ବିଚାର ।"

ଶୁଣି ଯମରାଜା ବାଣୀ ବୋଲେ ବିପ୍ରବର,

"କହିଛ ଅନ୍ତକ, ମୋର ପ୍ରଶଂସା ବିସ୍ତର ।

ଯଥାର୍ଥରେ ଯୋଗ୍ୟ ବୋଲି ମତେ ଯେବେ ମଣ
ଯଥାର୍ଥ ମୋ ପ୍ରତି ଦେବ ଯେବେ ସୁପ୍ରସନ୍ନ,

କହ ତେବେ ମତେ ଆତ୍ମ ତତ୍ତ୍ୱ ବିବରଣ
ସର୍ବୋପର ବୋଲି ଯାହା ଜାଣନ୍ତି ଆପଣ ।

ଧର୍ମାଧର୍ମ ବୋଲି ଯାହା ଶାସ୍ତ୍ରେ ନିରୂପିତ
ଅଟଇ ଯେ ଆତ୍ମତତ୍ତ୍ୱ ତହିଁରୁ ଅତୀତ,

କାର୍ଯ୍ୟ-କାରଣରୁ ଯେହୁ ତତ୍ତ୍ୱ ବିଲକ୍ଷଣ
ଭୂତ ଭବ୍ୟ ବର୍ତ୍ତମାନୁଁ ଯେହୁ ପୁଣି ଅନ୍ୟ

ପଶି ଅନନ୍ତ ଦେଶ କାଳ ବ୍ୟବଧାନ
ଲଭ ମୁକ୍ତିଦେବ, ସେହି ଅମୃତତ୍ତ୍ୱ ସାର ।"

ବୋଇଲେ ଈଶ୍ୱର ମମ ଏମନ ଉତ୍ତରେ,
"ଶୁଣ ବେଦଗାଏ ଜନେ ଦୃଢ଼ ସମସ୍ତରେ ।

ଯେ ପଦ ଗଣନ୍ତି ଯାଣ ଏକାନ୍ତ ପ୍ରାଣେ,
ବୋଧମତେ ମାନବର ମୁଖ୍ୟତମ ରତ୍ନ ।

ତପ ବ୍ରହ୍ମଚର୍ଯ୍ୟ ଆଦ୍ୟ ଶୁଦ୍ଧ ସାଧନ
ଯେ ପଦ ପ୍ରାପତେ ଆଶେ ଆଚରନ୍ତି ଜନ ।

ସଂକ୍ଷେପେ କହୁଛି ଶୁଣ—ସେ ପଦ 'ଓଁ' କାର
ଓଁକାର ସାକ୍ଷାତେ ବ୍ରହ୍ମ ପ୍ରତ୍ୟାକାର ।

ଯେ ଉତ୍ତମ ଅଧିକାରୀ ଓଁକାର ସ୍ମରଣେ
ବ୍ରହ୍ମର ପ୍ରତ୍ୟକ୍ଷ ରୂପ ଆପଣାକୁ ମଣେ ।

ଓଁ କାରରେ ବ୍ରହ୍ମରୂପ କରି ଆରୋପଣ
ଅଳ୍ପ ଅଧିକାରୀ ଜନ କରିବ ଭଜନ ।

ଓଁକାର ପରମ ବ୍ରହ୍ମ ଓଁକାର ଅପର,
ବୁଝିଣ ଏ ତତ୍ତ୍ୱ ଯେହୁ ପୂଜେ ଏ ଅକ୍ଷର,

ପୂରଣ ହୁଅଇ ତାର କାମନାନିଚୟ
ଆଉ ନାହିଁ ପୁଣି ଜନ୍ମ-ଜରା-ମୃତ୍ୟୁଭୟ ।

ଅପର ପୂଜନେ ନର ଯାଏ ବ୍ରହ୍ମଲୋକେ ,
ପଡ଼େ ନାହିଁ ଆଉ କେବେ ଭବ-ଦୁଃଖଶୋକେ ।

ଯାର ଉପାସନେ ହୁଏ ସ୍ୱୟଂ ବ୍ରହ୍ମରୂପ
ଛିଣ୍ଡେ ଯେବେ ମୋହଜାଲ, ଛୁଟେ ତମସ୍ତୂପ ।

ବ୍ରହ୍ମପ୍ରାପ୍ତି ସାଧନାର ମୁଖ୍ୟ ଆଲମ୍ବନ
ଓଁକାରେ ଗଣଇ ମନ ସତତ ଯେ ଜନ ।

ହୁଏ ବ୍ରହ୍ମରୂପ ଲଭି ପୂର୍ଣ୍ଣ ବ୍ରହ୍ମଜ୍ଞାନ
କିବା ବ୍ରହ୍ମଲୋକ ପାଏ ସମ ପୂଜ୍ୟ ସ୍ଥାନ ।

ଆତ୍ମଜ୍ଞାନ ଲଭେ ଯେବେ ଶୁଣ ବ୍ରହ୍ମମୟ
ନାହିଁ ଜନ୍ମ, ନାହିଁ ମୃତ୍ୟୁ, ନାହିଁ ବୃଦ୍ଧି-କ୍ଷୟ ।

ନାହିଁ ଅନ୍ୟ ହେତୁ ଯହିଁ ଆତ୍ମାର ସମ୍ଭବ
ନୁହଇ ଆତ୍ମାରୁ ଅନ୍ୟ ବସ୍ତୁ ସମ୍ଭବ ।

ଜନ୍ମ ବିରହିତ ଆତ୍ମା ନିତ୍ୟ ସନାତନ
ନିର୍ବିକାର ଶାଶ୍ୱତ ସେ ସର୍ବଦା ନୂତନ ।

ନଶ୍ୱର ବସ୍ତୁ ଉଚ୍ଛେଦ୍ୟ, ଉଚ୍ଛେଦ୍ୟ, ଆତ୍ମା ସ୍ୱପ୍ରକାଶ
ଶରୀର ବିନାଶେ ଆତ୍ମା ପାଏ ନାହିଁ ନାଶ

ଆତ୍ମଜ୍ଞାନହୀନ ଆତ୍ମା ସ୍ୱରୂପ ନ ଜାଣେ
ଜଡ଼ ଶରୀରକୁ ଆତ୍ମାରୂପେ ପରମାଣେ

ଏ ସମ ବିମୂଢ଼ ଯେବେ ଆନ ମୂଢ଼େ ହାଣେ
ଏକ 'ହତ୍ୟା କଲି' ଆନ 'ହତ ହେଲି' ଜାଣେ

ଆପଣାକୁ ନ ଚିହ୍ନନ୍ତି ସେ ବେଦ ଅଜ୍ଞାନେ,
ହୁଏ ନାହିଁ ଆତ୍ମା ହତ କିବା ନାହିଁ ହାଣେ

ସୂକ୍ଷ୍ମତମ ପରମାଣୁ ତହିଁ ସୂକ୍ଷ୍ମାକାର
ବୃହତ୍ତମୁଁ ବୃହତ୍ତମ ଆତ୍ମାର ବିସ୍ତାର ।

ପ୍ରାଣିଗଣ ହୃଦେ ଆତ୍ମା ନିହିତ ନିଭୃତ
ଗିରି ଦରୀ ଅଭ୍ୟନ୍ତରେ ହୀରକ ଯେମନ୍ତ ।

କାମ ତ୍ୟାଗେ ପବିତ୍ର ଯାହାର ଅନ୍ତର
ଦୁଃଖ ଶୋକ ଅତିକ୍ରମ କରନ୍ତି ସେ ନର,

ଆତ୍ମାର ମହିମା ସେହୁ ଦେଖେ, ଉପଭୋଗେ
ପ୍ରସନ୍ନ ଇନ୍ଦ୍ରିୟ ମନ ଶୁଦ୍ଧ ବୁଦ୍ଧି ଯୋଗେ ।

ଅଚଳ ସ୍ଥିତିର ଆତ୍ମା କିନ୍ତୁ ଭ୍ରମେ ଦୂରେ
କାର୍ଯ୍ୟହୀନ ଗତିହୀନ ଯାଏ ଶୟନ ପୁରେ ।

ସ୍ଥିତି ଗତି ଆଦି ନାନା ଭାବ ବିପରୀତ
ଏକାଧାରେ ଏକାବେଳେ ଯହିଁ ସମନ୍ୱିତ ।

ସେ ଆତ୍ମାର ତତ୍ତ୍ୱ ଅତି ଅଭେଦ୍ୟ ଦୁସ୍ତର
ମୋ ବିନା ନୁହଇ ଅନ୍ୟ କାହାର ଗୋଚର ।

ଅନିତ୍ୟ ନଶ୍ୱର ପ୍ରାଣୀ ଦେହେ ବିରାଜିତ
ନାହିଁ ରୂପ ନାହିଁ ତନୁ ବିକାର ବର୍ଜିତ ।

ଦେଶକାଳ ଗୁଣେ ନୁହେ ଆତ୍ମା ପରିଛିନ୍ନ
ସର୍ବବ୍ୟାପୀ ସର୍ବେଶ୍ୱର ସର୍ବୋପର ଭିନ୍ନ ।

ବୁଝେ ଏହୁ ଆତ୍ମାତତ୍ତ୍ୱ ସୁଧୀର ସୁଜ୍ଞାନୀ
ତରେ ଶୋକ, ଆପଣାକୁ ଆତ୍ମା ବୋଲି ଜାଣି ।

ମିଳେ ନାହିଁ ଆତ୍ମଜ୍ଞାନ ଶାସ୍ତ୍ର ଅଧ୍ୟୟନେ
ଶାସ୍ତ୍ରାର୍ଥ ଶ୍ରବଣେ ଅବା କେବଳ ଧାରଣେ ।

ଆତ୍ମାର ସ୍ୱରୂପ ଜ୍ଞାନେ କରେ ଯେ ସାଧନା
ଦୂରେ ପରିହରି ହୃଦୁଁ ସକଳ କାମନା;

ନିଜ ପରମାର୍ଥ ରୂପ ସେ ସାଧକ ପାଶେ
ମୋହ ଅନ୍ଧକାର ନାଶି ଆତ୍ମା ପରକାଶେ,

ହୁଏ ତାର ଆତ୍ମଲାଭ, ଆପଣାକୁ ଆପେ
ଦେଖାଇ ସେ ଆତ୍ମ ରୂପ, ନ ପଡ଼େ ବିଭାସେ ।

ଦୁଶ୍ଚରିତ ପାପଠୁଁ ନୁହେ ଯେ ବିରତ
ଶିକ୍ଷାବଳେ ନୁହେ ଯାର ଇନ୍ଦ୍ରିୟ ସଂଯତ ।

ନୁହେ ଯାର ଚିତ୍ତ ଦୃଢ଼ ଏକାଗ୍ର ନିଶ୍ଚଳ
ଚେଳ ନାହିଁ ମନ ଯାର ଢଷନ୍ତୁ ପଟଳ,

ବୈରାଗ୍ୟ ନିର୍ମଳ ଶାନ୍ତ ହୋଇ ନାହିଁ ମତି
ହୁଏ ନାହିଁ ତାର କେବେ ଆତ୍ମା ପରାପତି ।

ନିତ୍ୟ ସମାହିତ ଶାନ୍ତ ଦୃଢ଼ତ ସଂଯତ
ଲଭେ ବ୍ରହ୍ମଜ୍ଞାନ ବଳେ ଗୂଢ଼ ଆତ୍ମତତ୍ତ୍ୱ ।

ବ୍ରାହ୍ମଣ କ୍ଷତ୍ରିୟ ଆଦି ଉତ୍ତମ ମଧ୍ୟମ
ଅନନ୍ତ ଜଗତେ ଯେତେ ସ୍ଥାବର ଜଙ୍ଗମ ।

ଆତ୍ମାର ଆହାର ସବେ ଆତ୍ମାର ଅଧୀନ
ଆତ୍ମା ଅଭ୍ୟନ୍ତରେ ... ଆତ୍ମାରେ ବିଲୀନ ।

କହେ ମୃତ୍ୟୁ ଭବେ ସେତୁ ସକଳ ବିନାଶେ
ଲଭେ ମୃତ୍ୟୁ ଦଣ୍ଡେ ଯେବେ ଅସ୍ମାର ରସେ ।

ଆତ୍ମା ଅନ୍ତର୍ଭୂତ ଦୃଷ୍ଟି ସମ୍ପିତ ହୃଦୟ
ଲୋକେ ଯାହା ବପର୍ଯ୍ୟୟ ନୁହେ ତା ବଳୟ ।

ଏବନ ସ୍ୱରୂପ ଆତ୍ମା ସର୍ବ ଭଦ୍ୟମାନ
ଦୁଃସାଧ୍ୟ ସାଧନେ ଲଭ୍ୟ ସେ ନତ୍ୱ ସ୍ଥାନ ।

ଇତର ଜନର ନୁହେ ସହଜ ଗୋଚର
ନଚିକେତ, ଜାଣି ଏହା ମନେ ହେଳୁ କର ।”



## ତୃତୀୟ ବଲ୍ଲୀ

“ଶୁଣ ନଚିକେତ, ଜୀବ ପରମ ପ୍ରଭେଦ
ଭେଦଲେ ଯେ ତତ୍ତ୍ୱ ଆଉ ନ ରହିବ ଖେଦ ।

ପରମାତ୍ମା ଜୀବଆତ୍ମା ଏକତ୍ର ଉଭୟେ
ପ୍ରବିଷ୍ଟ ମାନବ ବୁଦ୍ଧି-ଗୁଡ଼-ଗୁହାଶୟେ ।

ଜନ୍ତୁର ହୃଦୟାକାଶେ ବେନଙ୍କ ପ୍ରକାଶ
ଏକ ଭୁଞ୍ଜେ, ଅନ କରେ ଶର ଉପବାସ ।

ସୁକୃତ ଦୁଷ୍କୃତ ଅବ କର୍ମ ଫଳାଫଳ
ଦେହେ ଜୀବ ଭୋଗେ ଦେଖେ ପରମ କେବଳ ।

ଅନ୍ଧକାର ଜୀବ; କିନ୍ତୁ ଆଲୋକ ପରମ
ବ୍ରହ୍ମଜ୍ଞାନୀ କୁହନ୍ତି ଏ ଭେଦାଭେଦ ମର୍ମ ।

ଆଉର ଯେ ପଞ୍ଚଅଗ୍ନି କରନ୍ତି ଅର୍ଚ୍ଚନା
କରନ୍ତି ଯେ ନଚିକେତା ଅଗ୍ନି ଆରାଧନା

ସେ ସକଳ ଉପାସକ କର୍ମନିଷ୍ଠ ଜନ
ଜାଣନ୍ତି ପରାପର ପ୍ରଭେଦ ଏସନ ।

ପରାପର ବ୍ରହ୍ମଜ୍ଞାନ ଦୁଃସାଧ୍ୟ ନିଶ୍ଚିତ
ନୁହେ କିନ୍ତୁ ମାନବର ସାଧନା ଅତୀତ ।

ଆରାଧି ଯେ ନଚିକେତା ଅଗ୍ନି ଯଜମାନ
ଦୁଃଖ-ସିନ୍ଧୁ ପାରେ ଲଭେ ମହାପୁଣ୍ୟ ସ୍ଥାନ

ସେ ଅଗ୍ନିର ତତ୍ତ୍ୱ ବୁଝି ବହିତ ଯତ୍ନେ
ସମର୍ଥ ସକଳେ ଆମ୍ଭେ ରଖ ଏହା ମନେ

ଭବାର୍ଣ୍ଣବ ଆର ପାରେ ନାହିଁ ଯହିଁ ଭୟ-
ଯାଏ ଜ୍ଞାନୀଜନ ଲଭି ଯେ ବ୍ରହ୍ମ ଆଶ୍ରୟ ।

ସେ ପର ଅକ୍ଷର ବ୍ରହ୍ମତତ୍ତ୍ୱ ଅଭିଜ୍ଞାନେ
ସକ୍ଷମ ହେ ନଚିକେତ, ସର୍ବେ ଆମ୍ଭେମାନେ ।

ଜୀବାତ୍ମା ଅପର ବ୍ରହ୍ମ ମିଳେ କର୍ମଫଳେ
ଲଭଇ ପରମବ୍ରହ୍ମ ଜ୍ଞାନୀ ଜ୍ଞାନବଳେ ।

ଏ ନର ଶରୀର ଏକ ଅପୂର୍ବ ସ୍ୟନ୍ଦନ
ଚକ୍ଷୁ ଆଦ ପଞ୍ଚ ଅଶ୍ୱ ଏଥିରେ ବାହନ ।

ଜୀବ ରଥୀ, ପୁଣି ବୁଦ୍ଧି ସାରଥି ଏ ରଥେ
ଦଶଇନ୍ଦ୍ରି ଅଶ୍ୱେ ରୂପ ରସ ଆଦି ପଥେ ।

ମନ-ଲଗାମକୁ ଟାଣି ସତତ ସାରଥି
ନିରୋଧେ ଚଞ୍ଚଳ ଅଶ୍ୱ ଉଚ୍ଛୃଙ୍ଖଳ ଗତି ।

ଦେହ ମନ ଇନ୍ଦ୍ରିୟାଦି ଉପାଧି ଜଡ଼ିତ
ଜୀବ ଭୋଗେ ସୁଖ ଦୁଃଖ କହନ୍ତି ପଣ୍ଡିତ ।

ସାରଥି ଲଗାମ ସଦା ନ ଧରିଲେ କସି
ଅଳପେ କୋହଳ ଯେବେ ହୁଏ ମନ-ରଶି ।

ଦୁର୍ଦ୍ଦାନ୍ତ ତୁରଙ୍ଗ ସମ ଇନ୍ଦ୍ରିୟ ସକଳ
ନ ରହି ସାରଥି ବଶେ ହୁଏ ଉଚ୍ଛୃଙ୍ଖଳ

ହିତାହିତ ଜ୍ଞାନ ହରେ ଘଟିଲେ ଏ ଗତି
ଅଶ୍ୱ ସଞ୍ଚଳନେ ମୃତ ଯେସନ ସାରଥି ।

ସେହି ଜ୍ଞାନବନ୍ତ ଯାର ସୁସଂଯତ ମତି
ବୁଝଇ ସେହି ତା ହିତ ସୁଗତି ଦୁର୍ଗତି ।

ଇନ୍ଦ୍ରିୟ ସକଳ ତାର ସଦା ନିଜ ବଶ
ପ୍ରବୀଣ ସାରଥି ବଶେ ଯଥା ଶିକ୍ଷି ଅଶ୍ୱ ।

ନୁହେ ଯେହୁ ସୁବିବେକ ଶୁଚି ଜ୍ଞାନବନ୍ତ
ନୁହେ ମନ ଯାର ସଦା ବୁଦ୍ଧି ଅଧିଗତ ।

ସେ ପରମ ପଦ ପ୍ରାପ୍ତି ନ ହୁଏ ତାହାର
ଜନ୍ମ-ମୃତ୍ୟୁମୟ ଭବେ ଆସେ ବାରବାର ।

ଜ୍ଞାନବନ୍ତ ଧୃତିବନ୍ତ ସଯତ ମାନସ
ଅନ୍ତରୁ ଛୁଟିଛି ଯାର ଅଜ୍ଞାନ-କଳୁଷ,

ସେ ପରମପଦ ଏକା ପାଏ ସେହି ରଥୀ
ନାହିଁ ଯହିଁ ଜନ୍ମାନ୍ତର ଅବା ପ୍ରତ୍ୟାଗତି ।

ସୁବିବେକ ବୁଦ୍ଧି ଯାର ସାରଥି ନିରତ
ମାନସ ପ୍ରଗ୍ରହ ଯାର ଆପଣା ଆୟତ୍ତ,

ସେହି ଏକା ଭବ-ପଥ ସୀମା ପାରେ ଯାଏ
ପରମାତ୍ମା ବିଷ୍ଣୁପଦ ସେହି ଏକା ପାଏ ।

ରୂପ ରସ ଆଦି ଯେତେ ସମ୍ଭୋଗ୍ୟ ବିଷୟ
ପ୍ରକାଶ ହୁଅନ୍ତି ଲଭି ଇନ୍ଦ୍ରିୟ ଆଶ୍ରୟ ।

ଇନ୍ଦ୍ରିୟର ଅର୍ଥ ଯେଣୁ ବିଷୟ ନିଚୟ
ସେ ସବୁ ଇନ୍ଦ୍ରିୟୁଁ ବଳେ ଶ୍ରେଷ୍ଠ ଅତିଶୟ ।

ଇନ୍ଦ୍ରିୟ ବିଷୟ ଗଣି ମାନସ ଗୋଚର
ଇନ୍ଦ୍ରିୟାର୍ଥୁଁ ବଳି ତେଣୁ ମନ ଶ୍ରେଷ୍ଠତର ।

ଇନ୍ଦ୍ରିୟ ସାହାଯ୍ୟେ ମନ ଭୋଗଇ ବିଷୟ
ବିଷୟ ସମ୍ଭୋଗେ କିନ୍ତୁ ନାହିଁ ତା ନିଶ୍ଚୟ ।

ବୁଦ୍ଧି ପାଶେ ମନ କରେ ବିଷୟ ବଦନ
ଭଲ ମନ୍ଦ ବୁଝି ବୁଦ୍ଧି କରେ ତା ଗ୍ରହଣ ।

ମନ ଚହୁଁ ବୁଦ୍ଧି ତେଣୁ ଅଧିକ ପ୍ରଧାନ
ବୁଦ୍ଧି ପରେ ଦେହସ୍ୱାମୀ ଜୀବ ବିଦ୍ୟମାନ ।

ଜୀବାତ୍ମା ଇନ୍ଦ୍ରିୟ ଆଦି ସଂଯୋଗର ସାର
ମନ ବୁଦ୍ଧି ଇନ୍ଦ୍ରିୟାଦି ପାର ଓଈଶ୍ୱର ।

ହିରଣ୍ୟଗର୍ଭ ସେ ସର୍ବ ବୁଦ୍ଧି ମୂଳୀଭୂତ
ମହତ ଜୀବାତ୍ମା ଆଦ୍ୟ ପ୍ରକୃତି ସମ୍ଭୂତ ।

ମହତ ଜୀବାତ୍ମା ଠାରୁଁ ବଳ ମହତ୍ତର
ପ୍ରକୃତି ଯା'ହାର ନାମ ରୂପ ଅଗୋଚର ।

ଅବ୍ୟକ୍ତ ପ୍ରକୃତି ନତ୍ୟ ରହିଛି ଜଡ଼ିତ
ଓତଃପ୍ରୋତ ଭାବେ ସୃଷ୍ଟି ପରମାତ୍ମା ସହିତ ।

ସୂକ୍ଷ୍ମ ବଟବୀଜ ଦେହେ ପ୍ରଚ୍ଛନ୍ନେ ଯେ ମତ
ନିହିତ ଯଣାକ ଦ୍ରୁମ ଅଶ୍ୱତ୍ଥ ଶକତ ।

ଅବ୍ୟକ୍ତ ପ୍ରକୃତି ପରେ ପୁରୁଷ ପ୍ରଧାନ
ପରମାତ୍ମା ଚିନ୍ମୟ ରୂପ ଅନାଦି ନିଦାନ
ପୁରୁଷ ଉପରେ ଆଉ ନାହିଁ ପରସ୍ଥାନ
ଧ୍ରୁବର ମହତ୍ତ୍ୱ ଆତ୍ମଭାବ ଅବସାନ ।

ଏହା ହିଁ ସଂସାର ଜୀବ ପରମ ଆଶ୍ରୟ
ନାହିଁ ଯହୁଁ କେବେ ଆଉ ପ୍ରତ୍ୟାଗମ ଭୟ ।

ପରମାତ୍ମା ସର୍ବଭୂତେ ଗୁପ୍ତ ବିଦ୍ୟମାନ
ଭୂତଙ୍କ ଉଜ୍ଜ୍ୱଳ-ବହ୍ନି ସମିଧ ସମାନ ।

ମୃତ୍ତିକାର ଆବରଣେ ଥିଲେ ବହ୍ନିଶି
ନ ଦିଶଇ ଜନନେତ୍ରେ ଯେସନେ କଦାପି ।

ଇନ୍ଦ୍ରିୟ ବିଷୟ ମୋହେ ଆବୃତ୍ତ ଚେତନ
ନ ଦେଖନ୍ତି ପରମାତ୍ମା ରୂପ ସନାତନ ।
ସ୍ଥୂଳୁଁ ସୂକ୍ଷ୍ମତର, ତହୁଁ କ୍ରମେ ସୂକ୍ଷ୍ମତମ
ଇନ୍ଦ୍ରିୟରୁ କ୍ରମେ ଯେତୁ ଭେଦନ୍ତି ପରମ ।
ସେହି ଯୋଗସିଦ୍ଧ ଧୀର ସୂକ୍ଷ୍ମଦର୍ଶୀ ଜନ
ସୂକ୍ଷ୍ମ ବୁଦ୍ଧି ବଳେ ଆତ୍ମା କରନ୍ତି ଦର୍ଶନ ।

ଇନ୍ଦ୍ରିୟ, ଇନ୍ଦ୍ରିୟ-ଅର୍ଥ, ମନ, ବୁଦ୍ଧି, ମହତ
ଅବ୍ୟକ୍ତ ପୁରୁଷ କ୍ରମେ ସୂକ୍ଷ୍ମଙ୍କୁ ବୁଝିବ ।
ଏହୁଁ ଏକ ସୂକ୍ଷ୍ମତର ଶେଷେ ସୂକ୍ଷ୍ମତମ
ପୁରୁଷ ଅନ୍ତିମ କାଷ୍ଠା ପ୍ରଧାନ ପରମ ।

ସ୍ଥୂଳର କାରଣ ସୂକ୍ଷ୍ମ, ସୂକ୍ଷ୍ମୁଁ ସ୍ଥୂଳ ଜାତ
ଏ ନିୟମେ ହୁଏ ସୃଷ୍ଟି ତତ୍ତ୍ୱ ପ୍ରକଟିତ ।
ବୁଝି ପ୍ରାଜ୍ଞଜନ ଏହି ସୃଷ୍ଟି ତତ୍ତ୍ୱଗତ
ସାଧିଲେ ସଂଯମ ହୁଏ ପରମ ପ୍ରାପତ ।
ଇନ୍ଦ୍ରିୟ ସକଳ କର ମନ ଅଧିଗତ
ବୁଦ୍ଧି ସୁଶାସନେ ମନ ରଖିବ ସଂଯତ ।
ମହତ ହିରଣ୍ୟ ଗର୍ଭ ଜୀବାତ୍ମା ଶାସନେ
ନିବେଶିବ ବୁଦ୍ଧି ସେଥି ଅବ୍ୟକ୍ତ ନିୟମେ ।
ନିବେଶିବ ଅନ୍ତେ ପୁଣି ଶୁଦ୍ଧ ଆତ୍ମଜ୍ଞାନେ
ଶାନ୍ତ ପରମାତ୍ମା ତହିଁ ସତ ଯୋଗଧ୍ୟାନେ ।

ପ୍ରକାଶିବ ଯେବେ ଶୁଦ୍ଧ ଜ୍ଞାନ ସୁଦର୍ଶନ
ପରମ ଦିଶିବ ଏକ ଆତ୍ମା ଝଳଝଳ ।

ଛୁଟିବ ଅଶେଷ ମୋହ ଫୁଟିବ ସଦ୍‌ଜ୍ଞାନ
ଦେହ ନାମରୂପ ହିସ୍ୱା ଭବ ଅବଧାନ ।

ଉଠ ହେ ମୁମୁକ୍ଷୁ ଯେବେ ଜାଗ ହେ ସତ୍ୱର
ଭବ ଘୋର ମୋହ ନିଦ୍ରା ଦୂରେ ପରିହର ।

ବରେଣ୍ୟ ବ୍ରହ୍ମଜ୍ଞ ଗୁରୁ ପଦାଶ୍ରୟେ ଆସି
ପ୍ରବୁଦ୍ଧ ଜାଗ୍ରତ ହୁଅ ହେ ମୋକ୍ଷପ୍ରାର୍ଥି !

କହନ୍ତି ବିଜ୍ଞାନଦର୍ଶୀ କ୍ଷୁରଧାର ସମ
ବ୍ରହ୍ମଲବ୍ଧ ମାର୍ଗ ଏହୁ ଶାଣିତ ଦୁର୍ଗମ ।

ସୁଦୃଢ଼ ସାଧନା ବିନା ଅସାଧ୍ୟ ଅଭ୍ୟାସ
ଉଠ ନର ଜାଗ ଲଭ ସିଦ୍ଧି ସୁନିଶ୍ଚୟ ।

ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧ ବିବର୍ଜିତ
ଇନ୍ଦ୍ରିୟ ଅଜ୍ଞେୟ ନିତ୍ୟ ଆଦ୍ୟନ୍ତ ରହିତ ।

ନାହିଁ ଯାର ଜନ୍ମ ନାଶ, ଚିର ନିରାମୟ
ନାହିଁ ରୂପାନ୍ତର, ଧ୍ରୁବ, ଅବ୍ୟୟ ଅକ୍ଷୟ ।

ମନତ ବୁଦ୍ଧିରୁ ଯେହୁ ଭିନ୍ନ ମହତ୍ତର
ଉଭାସେ ଯେ ସାକ୍ଷୀରୂପେ ନିଖିଳ ଅନ୍ତର ।

ଶ୍ରବଣ ମନନ ଧ୍ୟାନେ କର ସୁନିଶ୍ଚୟ
ଦେଖିଲେ ଥିରେ ସେ ବ୍ରହ୍ମସ୍ୱରୂପ ଚିନ୍ମୟ ।

ମୃତ୍ୟୁ ମୁଖୁଁ ଲଭେ ଜୀବ ତର ଅବ୍ୟାହତ
ଅବିଦ୍ୟା ପଟଳ ଛୁଟି ମନେ ମୋକ୍ଷଗତ ।"

ଋଷିପୁତ୍ର ନଚିକେତେ ଅନ୍ତକ କଥିତ
ସୁପବିତ୍ର ସନାତନ ଏ ଗ୍ରନ୍ଥ ଚରିତ ।

ଯେ ମେଧାବୀ ଶ୍ରଦ୍ଧାପୂର୍ବେ ଶୁଣେ ବା ଶୁଣାଏ
ବ୍ରହ୍ମରୂପେ ବ୍ରହ୍ମଲୋକେ ନିତ୍ୟ ପୂଜା ପାଏ ।

ପରମ ନିଗୂଢ଼ ଏହି ତତ୍ତ୍ୱ ସୁମହତ
ଶ୍ରଦ୍ଧାରେ ଯେ ଜନ ମନ କରି ସୁସଂଯତ,

ବ୍ରାହ୍ମଣ ସମାଜେ ପଢ଼ି କରିବ ବ୍ୟାଖ୍ୟାନ
ଶ୍ରାଦ୍ଧକାଳେ ଗାଇବ ବା ଏ ପୁଣ୍ୟ ଉପାଖ୍ୟାନ,

ସେ ସୁକୃତେ ସୁବହୁର ଫଳ ହୁଏ ପ୍ରାପ୍ତ
କଠୋପନିଷଦ ଆଦ୍ୟ ଅଧ୍ୟାୟ ସମାପ୍ତ ।



## ଦ୍ୱିତୀୟ ଅଧ୍ୟାୟ

### ପ୍ରଥମ ବଲ୍ଲୀ

ସ୍ୱୟମ୍ଭୂ ଯେକାଳେ କଲେ ଜଗତ କଳ୍ପନା
ବାହ୍ୟ ଅଭିମୁଖେ କଲେ ଇନ୍ଦ୍ରିୟ ରଚନା !

ହୋଇଛି ଇନ୍ଦ୍ରିୟଗଣ ପ୍ରଥମୁ ଆହତ
ତେଣୁ ବାହ୍ୟ ବସ୍ତୁ ମୁଖେ ଧାଏଁ ଅବିରତ ।

ବାହ୍ୟ ବିଷୟକୁ ଜୀବ ଦେଖେ ଅନୁକ୍ଷଣ
ନ ଦେଖଇ ଅନ୍ତରାତ୍ମା ଫେରାଇ ନୟନ ।

ଅମୃତତ୍ୱ ଅଭିଳାଷୀ କେହି ଅବା ଧୀର
ବିଷୟୁ ଫେରାଇ ନେଇ କରି ମନ ସ୍ଥିର ।

ନିରୋଧି ଇନ୍ଦ୍ରିୟଗଣେ ହୋଇ ଏକ ଲୟ
ଦେଖନ୍ତି ଅନ୍ତରେ ଆତ୍ମା ଚିଦାନନ୍ଦମୟ ।

ଚପଳ ବାଳକମତି ଅବିବେକୀ ନରେ
ଅନୁରାଗ ପ୍ରକାଶନ୍ତି ବାହ୍ୟ ବିଷୟରେ ।

ସୁଖଶଯ୍ୟା ଧନ ମାନ ବନିତା ବିଳାସ
ଏ ଆଦି ଅନର୍ଥ୍ୟ ଲାଗେ କରନ୍ତି ପ୍ରୟାସ ।

ସୁବିସ୍ତୀର୍ଣ୍ଣ ମୃତ୍ୟୁପାଶେ ହୁଅନ୍ତି ସେ ବନ୍ଦୀ
ଅବିଦ୍ୟା-ଅନ୍ଧାରେ ବୃଥା କାମକର୍ମେ ଛନ୍ଦି ।

ଜନ୍ମ ମୃତ୍ୟୁ ଜରା ବ୍ୟାଧି ଯନ୍ତ୍ରଣା ଅପାର
ଲଭନ୍ତି ଏ ମର୍ତ୍ତ୍ୟଧାମେ ଆସି ବାରମ୍ବାର ।

ବିବେକୀ ପୁରୁଷ ତେଣୁ ତେଜି ଭୋଗରାଶି
ଅମୃତତ୍ତ୍ୱ ଲାଗି ହୁଏ ଏକାନ୍ତ ପ୍ରୟାସୀ ।

ଜାଣନ୍ତି ସେ ସ୍ୱର୍ଗେ ନାହିଁ ପ୍ରକୃତ ଅମୃତ
ପୁଣ୍ୟକ୍ଷୟେ ସ୍ୱର୍ଗୁଁ ଜୀବ ହୁଏ ଭ୍ରଷ୍ଟାଭୂତ ।

ଆତ୍ମଲଭେ ମିଳେ ଏକା ଚିର ଅମୃତତ୍ତ୍ୱ
ବୁଝି ଜ୍ଞାନୀଜନ ଏହି ସତ୍ୟ ସାରତତ୍ତ୍ୱ ।

ଆତ୍ମା ଧ୍ରୁବ ଅନ୍ୟ ସବୁ ଅଧ୍ରୁବ ଜଗତେ
ନିର୍ଦ୍ଧାର୍ଯ୍ୟ ଜାଣି ଏ ତଥ୍ୟ ନିଜ ହୃଦଗତେ

ଅନିତ୍ୟ ବିଷୟେ କେବେ ନ କରେ କାମନା
ଲୋଡ଼େ ନାହିଁ ପୁତ୍ର ବିତ୍ତ ଲୋକ ସମ୍ଭାବନା ।

ବିଜ୍ଞାନ ସ୍ୱରୂପ ଆତ୍ମା, ଆତ୍ମାର ପ୍ରେରଣେ
ଜାଣନ୍ତି ବିଷୟରାଶି ଅନୁଭବେ ଜନେ ।

ମୈଥୁନ ସମ୍ଭୂତ ଅଙ୍ଗ ପୁଲକ ପରଶ
ଜିହ୍ୱା ଅନୁଭୂତ ସ୍ନିଗ୍ଧ ସୁମଧୁର ରସ ।

ଦୃଷ୍ଟି ପ୍ରିୟ ରୂପରାଶି ନୟନମୋହନ
ସୂକ୍ଷ୍ମ ସୁଲଳିତ ଶବ୍ଦ କର୍ଣ୍ଣ ରସାୟନ ।

ସୁରଭି ନାସିକା ମୋଦ ସୁଗନ୍ଧ ସମ୍ଭାର
ଇନ୍ଦ୍ରିୟ ବିଷୟ ଏ ଯେ ବିବିଧ ପ୍ରକାର ।

ଆତ୍ମାର ପ୍ରଭାବେ ଲୋକ ହୁଏ ଅବଗତ
ଆତ୍ମଜ୍ଞାନେ ପ୍ରକାଶେ ଏ ନଖିଳ ଜଗତ ।

ଆତ୍ମା ଅଧିଗମ୍ୟେ ମୋକ୍ଷ ଲଭିଲେ ମାନବ
ସକଳ କ୍ଷତବ୍ୟ ତାର ହୁଏ ଅନୁଭବ ।

ଏହି ସେ ସର୍ବଜ୍ଞ ଆତ୍ମା ପରମ ଆଶ୍ରୟ
ଜାଣି ନଚିକେତା ମନୁଁ ଭୁଞ୍ଜାଅ ସଂଶୟ ।

ହୁଏ ଯେତେ ଅନୁଭୂତି ସ୍ୱପ୍ନ ଜାଗରଣେ
ଜାଣେ ସେ ସମସ୍ତ ଲୋକ ଆତ୍ମାର ପ୍ରେରଣେ ।

ମହତ ମହେଶ ଆତ୍ମା ସର୍ବ ମୂଳାଧାର ।
ଜାଣି ଏହା ତରେ ଧୀର ଶୋକ-ପାରାବାର ।

ଜୀବାତ୍ମା ସକଳ ଘଟେ ଛନ୍ତି ବିଦ୍ୟମାନ
ଭୂତ ଭବ୍ୟ ବର୍ତ୍ତମାନ ତ୍ରିକାଳ ଈଶାନ ।

ଭୋଗନ୍ତି ସେ ସୁଖ ଦୁଃଖ କର୍ମଫଳ ନିତି
ଜାଣି ଏହା ଦେଖେ ଯେହୁ ହୃଦେ ତାଙ୍କ ସ୍ଥିତି ।

ବ୍ରହ୍ମଜ୍ଞାନ ଫଳେ ତାର ଭୁଟେ ସର୍ବ ଭୟ
ଅଶେଷ ସର୍ବଭୂତ ସେହୁ ଦେଖେ ବ୍ରହ୍ମମୟ ।

ଦ୍ୱୈତଜ୍ଞାନେ ଭୟ ପାଏ ଏକ ତତ୍ତ୍ୱଁ ଆନ
ଘଟେ ଭୟ ଉପୁଜଇଲ ବ୍ରହ୍ମାତ୍ମୈକ ଜ୍ଞାନ

ଏହି ସେହି ଆତ୍ମତତ୍ତ୍ୱ ଦେବେ ଅଗୋଚର
ବୁଝି ନଚିକେତ, ଏହା ଦୃଢ଼େ ହୃଦେ ଧର

ଏ ଜଗତ ସୃଷ୍ଟି ଯେବେ ନ ଥିଲା ପ୍ରକାଶ
ଥିଲା ନାହିଁ ଜଳ ସ୍ଥଳ ପବନ ଆକାଶ ।

ଯୋଗମଗ୍ନ ଯେବେ ଏକା ବ୍ରହ୍ମ ଜ୍ଞାନମୟ
ସର୍ବତହୁଁ ହେଲା ଯାର ପ୍ରଥମ ଉଦୟ ।

ହିରଣ୍ୟଗର୍ଭ ସେ ଆଦ୍ୟ ସ୍ୱୟମ୍ଭୂ ସମ୍ଭୂତ
ଯାର ପରେ ସୃଷ୍ଟି ହୁଏ ପଞ୍ଚ ମହାଭୂତ ।

ହିରଣ୍ୟଗର୍ଭାଖ୍ୟ ସେହି ପୁରୁଷ ପ୍ରଧାନ
ସର୍ବ ପ୍ରାଣୀ ହୃଦେ ପଶି କଲେ ଅଧିଷ୍ଠାନ ।

ଲଭି ପଞ୍ଚଭୂତମୟ ଦେହାଦି ସଂଯୋଗ
କରନ୍ତି ସେ ଶବ୍ଦ ଆଦି ବିଷୟ ସମ୍ଭୋଗ ।

ଦେଖେ ଯେହୁ ଏ ପୁରୁଷେ ନିତ୍ୟ ହୃଦାକାଶେ
ତା ନେତ୍ରେ ପରଂବ୍ରହ୍ମ ସର୍ବଦ ଉଦ୍ଭାସେ ।

ହିରଣ୍ୟଗର୍ଭ ସେ ବ୍ରହ୍ମ. ସମ୍ଭବ ପ୍ରଥମ
ତହୁଁ ଦେବାସୁର ନର ସ୍ଥାବର ଜଙ୍ଗମ ।

ଶବ୍ଦାଦି ଅଦନ୍ତୁଁ ଖ୍ୟାତ ଅଦିତି ନାମରେ
ପ୍ରାଣ ରୂପେ ପ୍ରକାଶିଲେ ସକଳ ଅନ୍ତରେ ।

ପଞ୍ଚ ମହାଭୂତ ସଙ୍ଗେ ମିଳି ସେ ଅଦିତି
ପ୍ରାଣୀ ହୃଦ-ଗୁହାଶୟେ କଲେ ଅବସ୍ଥିତି ।

ସେ ଆଦ୍ୟ ଦେବତା ରୂପ ଦେଖେ ଯେଉଁ ଜନ
ସେହି ଏକା କରେ ଆତ୍ମା ସ୍ୱରୂପ ଦର୍ଶନ ।

ଗର୍ଭବତୀ ନାରୀ ଯଥା ସୁପଥ୍ୟ ଭୋଜନେ
ଗର୍ଭସ୍ଥ ତନୟ ପାଳେ ନିତ୍ୟ ସୁଯତନେ ।
ନାନା ହବନୀୟ ଦ୍ରବ୍ୟ ଆହୁତି ପ୍ରଦାନେ
ସଦାଗ୍ନିର ଶୁଚିବନ୍ତ ହୋଇ ସାବଧାନେ ।
ପୋଷନ୍ତି ଯାଜ୍ଞିକେ ତଥା ଯଜ୍ଞେ ହୁତାଶନ
ଆରଣି ଉଦରୁ ଜାତ ମନ୍ତ୍ରେ ଆବାହନ ।
ସାଧୁ ଜ୍ଞାନୀ ଜନେ ପୁଣି ସଦା ଏକ ଲୟେ
ଜାଗ୍ରତ ପୁରୁଷେ ତଥା ପୂଜନ୍ତି ହୃଦୟେ ।
କରନ୍ତି ଏ ରୂପେ ଯାର ଅର୍ଚ୍ଚନା ସତତ
କର୍ମୀ ଜ୍ଞାନୀଗଣେ ବ୍ରତ ଧ୍ୟାନ ସୁସଂଯତ ।
ଅନ୍ତରେ ଅଧ୍ୱରେ ଯାର ନିତ୍ୟ ଅଧିଷ୍ଠାନ
ଯାତବେଦା ଆତ୍ମା ସେହି ନଚିକେତ ଜାଣ ।

ପ୍ରାଣୁ ସୂର୍ଯ୍ୟ ପ୍ରତିଦିନ ହୁଅନ୍ତି ଉଦିତ
ପ୍ରାଣେ ପୁଣି ପ୍ରତିଦିନ ଯାନ୍ତି ଅସ୍ତମିତ ।
ଏହା ନିଶ୍ଚି ସମସୃଷ୍ଟି ପ୍ରଳୟ ବିଧାନ
ପ୍ରାଣୁଁ ସୂର୍ଯ୍ୟ ସୃଷ୍ଟ ପୁଣି ପ୍ରାଣେ ତିରୋଧାନ ।
ଇନ୍ଦ୍ର ଅଗ୍ନି ବରୁଣାଦି ଦେବତା-ଜଗତେ
ପ୍ରକାଶ ଇନ୍ଦ୍ରିୟ ଯେତେ ପ୍ରାଣୀ ଦେହଗତେ ।
ବର୍ତ୍ତି ରହିଛନ୍ତି ସର୍ବେ ପ୍ରାଣେ ଆଶ୍ରା କରି
ତୁମ୍ବ ଅବଲମ୍ବେ ଯଥା ଚକ୍ରେ ଅରାବଳି ।

ପ୍ରାଣ ସର୍ବବ୍ୟାପୀ ବ୍ରହ୍ମ ସକଳ ଆଶ୍ରୟ
ଯହିଁ ସର୍ବ ବିଶ୍ୱ ସୃଷ୍ଟି ସ୍ଥିତି ପ୍ରଳୟ ।
ପ୍ରାଣେ ବଳ ହୋଇଥାରେ କଏ ଅନ୍ତଗାମୀ
ସେ ଯେ ସର୍ବାତ୍ମକ ବ୍ରହ୍ମ ସର୍ବ ଅନ୍ତର୍ଯ୍ୟାମୀ ।
ବ୍ରହ୍ମରୁ ସ୍ଥାବରଯାଏ ସର୍ବତ୍ର ସମାନ
ଏକ ଅଦ୍ୱିତୀୟ ଆତ୍ମା ସର୍ବଭୂତ ପ୍ରାଣ ।
ଯେ ଆତ୍ମା ଚୈତନ୍ୟ ରୂପ ହୃଦେ ପ୍ରତିଫଳେ
ଚନ୍ଦ୍ରବିମ୍ବ ଝଲେ ଯଥା ସରୋବର ଜଳେ ।
ଈଶ୍ୱର-ଚୈତନ୍ୟ ତହୁଁ ହୁଅଇ ସେ ଭିନ୍ନ
ମାୟାବଶେ ହେଣ ଜୀବ କେବଳ ବିଚ୍ଛିନ୍ନ ।
ଜୀବ କାର୍ଯ୍ୟ, ପରମାତ୍ମା ଚୈତନ୍ୟ କାରଣ
ନାହିଁ ସେ ଉଭୟ ଭେଦ ନାହିଁ ତହିଁ ଅନ୍ୟ ।
ଅଜ୍ଞାନେ ପ୍ରଭେଦ ତହିଁ ଦେଖେ ଯେଉଁ ଜନ
ମରଣାନ୍ତେ ବାରବାର ଭେଟେ ସେ ମରଣ ।
ବ୍ରହ୍ମ ତହୁଁ ଆପଣାକୁ ନ ମଣେ ସେ ଆନ
ଦେଖେ ନିଜ ହୃଦେ ପୂର୍ଣ୍ଣ ବ୍ରହ୍ମ ବିଦ୍ୟମାନ ।
ସର୍ବ ହୃଦେ ଦେଖେ ପୁଣି ପୂର୍ଣ୍ଣ ବ୍ରହ୍ମରୂପ
ଅଶ୍ରମେ ସେହି ଏଡ଼ା ଭବ-ଅନ୍ଧକୂପ ।
ଗୁରୁ ଉପଦେଶେ ଶାସ୍ତ୍ରବିହିତ ବିଧାନେ
ମାନସ ଦର୍ପଣ ଶୁଦ୍ଧ କରି ଏକଧ୍ୟାନେ ।

ବ୍ରହ୍ମଜ୍ଞାନ ଲଭେ ସୁଧୀ ହୁଅନ୍ତି ସକ୍ଷମ
ତତ୍ତ୍ୱବିତ ହୁଏ ତେବେ ହୁଦୁଁ ଭେଦ ଭ୍ରମ ।

ଅପହୃତ ହେଲେ ଘୋର ଅଜ୍ଞାନ-ଅନ୍ଧାର
ସର୍ବତ୍ର ପ୍ରକାଶେ ବ୍ରହ୍ମ ଅଖଣ୍ଡ ଆକାର ।

ଅଜ୍ଞାନ ପ୍ରଭାବେ ଭେଦ ଦେଖେ ଯେଉଁ ଜନ
ମରଣାନ୍ତେ ବାରବାର ଭେଟେ ସେ ମରଣ ।

ଦେହ ଅଭ୍ୟନ୍ତରେ ହୃଦପଦ୍ମ ବିଦ୍ୟମାନ
ଜୀବାତ୍ମା ପୁରୁଷ ତହିଁ ଅଙ୍ଗୁଷ୍ଠ ପ୍ରମାଣ ।
ଭୂତ ଭବ୍ୟ ବର୍ତ୍ତମାନ ତ୍ରିକାଳ ଈଶାନ
ଛୁଟେ ଭୟ ହେଲେ ଜୀବ-ବ୍ରହ୍ମ ଏକ ଜ୍ଞାନ ।
ଜୀବାତ୍ମା ପୁରୁଷ ସେହି ଅଙ୍ଗୁଷ୍ଠ ପ୍ରମାଣ
ନିର୍ଧୂମ ଉଜ୍ଜ୍ୱଳ ଜ୍ୟୋତି ପ୍ରାଏ ତେଜସ୍ୱାନ ।

ଭୂତ ଭବ୍ୟ ବର୍ତ୍ତମାନ ତ୍ରିକାଳ ଈଶ୍ୱର
ଆଜ ସେହି କାଲି ସେହି ନିତ୍ୟ ଅନଶ୍ୱର ।

ନାହିଁ ଆତ୍ମା ସମ କିବା ଆତ୍ମା ଭିନ୍ନ ଆନ
ସର୍ବତ୍ର ସର୍ବଦା ଏକ ଆତ୍ମା ବର୍ତ୍ତମାନ । !

ପର୍ବତ ଦୁର୍ଗମ ଶିଖେ ବରଷିଲେ ବାରି
ନାନା ଧାରେ ବହେ ସ୍ରୋତ ନାନା ଦିଗଭ୍ରଷ୍ଟ ।

ଗିରିପଦେ ନିମ୍ନ ଦେଶେ ଧାଏଁ ଛିନ୍ନ ଭିନ୍ନ
ନାଶଯାଏ ଅବଶେଷେ ହୁଏ ନାହିଁ ଲୀନ,

ଯେସନ ଅସଂଖ୍ୟ ଦେହେ ନାନା ଅଭିମୁଖେ
ଭ୍ରମଇ ସେ ନର ଚରଜନ୍ମ ମୃତ୍ୟୁ-ଦୁଃଖେ ।

ଦେଖେ ସେ ବଭିନ୍ନ ଦେହେ ବ୍ରହ୍ମ ଭେଦାଭେଦ
ଲଭେ ନାନା ଯୋନ, ସହେ ଅସରନ୍ତ ଖେଦ ।

ସର୍ବଭୂତେ ଦେଖେ ଯେହୁ ଆତ୍ମା ନତ୍ୟ ଏକ
ସେହୁ ନଚକେତ, ମୁକ୍ତ ଜ୍ଞାନୀ ସୁବବେକ ।

ଶୁଦ୍ଧୋଦକେ ମିଶିଗଲେ ଯଥା ଶୁଦ୍ଧୋଦକ
ହୁଏ ଏକ ରୂପ ଆଉ ନ ରହେ ପୃଥକ ।

ଏକୀଭୂତ ହୁଏ ତଥା ବ୍ରହ୍ମେ ସେହୁ ଜନ
ସର୍ବତ୍ର ଦେଖେ ସେ ଏକ ଆତ୍ମା-ସନାତନ ।



## ଦ୍ୱିତୀୟ ବଲ୍ଲୀ

କ ବଚତ୍ର ପୁର ଏହୁ ନର କଳେବର
ପ୍ରାସାଦ ପ୍ରାକାର ଦୁରେ ସଜ୍ଜିତ ସୁନ୍ଦର ।

ସଂଯୋଜତ ଯଥା ସ୍ଥାନେ ଏକାଦଶ ଦ୍ୱାର
ଶୋଭ ରତ୍ନଅଙ୍କୁ ପୃଣି ସପତ ପ୍ରାକାରେ ।

ଯଥାସ୍ଥାନେ ସୁଶୋଭତ ଗବାକ୍ଷ ପନ୍ତିଖା
ମଣିପୁର ଆଦ ନାମେ କେତେ ଅଟ୍ଟାଳକା ।

କେତେ କନ୍ଦ, କେତେ ଯନ୍ତ୍ର, କେତେ ଗୁପ୍ତ ସ୍ଥାନ
ତନ୍ତୁ ଲତା ଆଚ୍ଛାଦିତ ସୁରମ୍ୟ ଉଦ୍ୟାନ ।
ରନ୍ଧ୍ରଯନ୍ତ୍ର ପ୍ରତି ଦ୍ୱାରେ ସୁଚତୁର ଦ୍ୱାସ୍ଥ
ଜାଣ କି କିଏ ଏ ଦେହ-ପୁର ଅଧିକାସ୍ଥ ?

ସେ ଚୈତନ୍ୟମୟ ଆତ୍ମା ଏଥି ଅଧିପତି
ନାହିଁ ଯାର କ୍ଷୟ ବୃଦ୍ଧି ବିନାଶ ଉତ୍ପତ୍ତି ।

ଦେହ ଅଭ୍ୟନ୍ତରେ ଯାର ହେଲେହେଁ ନିବାସ
ଆବଚ୍ୟ ପରଏ ନିତ୍ୟ ପ୍ରତ୍ୟକ୍ଷ ପ୍ରକାଶ ।

ସର୍ବଭୂତେ ଏକ ଆତ୍ମା ଦୃଢ଼ ମନେ ଧରି
ବ୍ରହ୍ମଧ୍ୟାନ କରେ ଯେହୁ ମୋହ ପରିହରି ।

ଏ ଜୀବନେ ମୁକ୍ତ, ସେହୁ ପଡ଼େ ନାହିଁ ଶୋକେ
ଅକ୍ଷୟ କୈବଲ୍ୟ ଭୁଞ୍ଜେ ଗଲେ ପରଲୋକେ ।

ଭବେ କଦାପିତେ ଆଉ ନ ଲଭେ ଉତ୍ପତ୍ତି
ପରମବ୍ରହ୍ମରେ ମିଳେ; ପାଏ ମୋକ୍ଷ ଗତି ।

ନର ଦେହ ନୁହେଁ ଏକା ଆତ୍ମାର ନିବାସ
ସର୍ବତ୍ର ସମାନ ଆତ୍ମା ବିଶ୍ୱେ ପରକାଶ ।
ସର୍ବବ୍ୟାପୀ ସର୍ବଗାମୀ ସର୍ବ ଅଧିଷ୍ଠାନ
ଉଜ୍ଜ୍ୱଳ ଦ୍ୟୁଲୋକେ ଆତ୍ମା-ରବି ଅଂଶୁମାନ ।
ଅନ୍ତରୀକ୍ଷେ ସମୀରଣ ଅନଳ ଅଧ୍ୱରେ
ସେହି ଏକା ପ୍ରତିଷ୍ଠିତ ବିଶ୍ୱବେଦୀ ପରେ ।

ଉଜ୍ଜ୍ୱଳ ପବିତ୍ର ସୋମଯୋଗେ ଶୁଦ୍ଧାଧାରେ
ନରଦେହେ ବରଦେହେ ପ୍ରକାଶ ସଂସାରେ ।
ସତ୍ୟେ ଆତ୍ମା ଅବସ୍ଥିତ ଆକାଶେ ସଞ୍ଚର
ବହ୍ନି ମହାମୂର୍ଖେ ଆତ୍ମା ସଦ ଉପସ୍ଥର ।
ଜଳେ ସ୍ଥଳେ ଧରାଧାରେ ହୁଏ ସେ ଉଦ୍ଭବ
ସରିତ ନିର୍ଝର ମୀନ ମୁକ୍ତ ବ୍ରୀହି ସବ ।
ସ୍ଥାବର ଜଙ୍ଗମ ଆଦି ଯେତେ ବସ୍ତୁଚୟ
ସେ ସକଳେ ଏକମାତ୍ର ଆତ୍ମାର ଉଦୟ ।
ସର୍ବଭୂତମୟ କିନ୍ତୁ ସତ୍ୟ ସନାତନ
ଏକ ଅଦ୍ୱିତୀୟ ନିତ୍ୟ ଅପରିବର୍ତ୍ତନ ।
ସର୍ବ ମୂଳାଧାର ସେହି ସକଳ ନିଦାନ
ଭବ କଳ୍ପିତ ବସ୍ତୁ ବ୍ରହ୍ମ ସୁମହାନ ।
ନିଗୂଢ଼ ଏ ବ୍ରହ୍ମତତ୍ତ୍ୱ ସ୍ଥିର କରି ମନ
କର ନଚିକେତ, ଏହା ହୃଦୟେ ଧାରଣ ।
ଜୀବାତ୍ମା ପୁରୁଷ ରହି ହୃଦୟ-କମଳେ
ପେଷେ ପ୍ରାଣବାୟୁ ଊର୍ଦ୍ଧ୍ୱେ ଅପାନକୁ ତଳେ ।
ମୁମୁକ୍ଷୁବରେଣ୍ୟ ନିଜେ ମଧ୍ୟ ସମାସୀନ
ଦେବରୂପୀ ଇନ୍ଦ୍ରିୟାଦି ଯାହାର ଅଧୀନ ।
ଲାଗିଥାନ୍ତି ନିରନ୍ତର ଆପଣା ବ୍ୟାପାରେ
ଭୃତ୍ୟଗଣ ଖଟେ ଯଥା ପ୍ରଭୁ ଉପସ୍ଥରେ ।

ଦେହେନ୍ଦ୍ରିୟ ପ୍ରାଣ ଆଉ ଆତ୍ମାଠୁ ବିଭିନ୍ନ
ସର୍ବ ପରେ ଆତ୍ମାସ୍ୱାମୀ ସ୍ୱତନ୍ତ୍ର ସ୍ୱାଧୀନ ।

ଗୃହ ତେଜି ଗୃହସ୍ୱାମୀ ହୋଇଲେ ଅନ୍ତର
ପଦାର୍ଥ ସେବକେ କିଏ କାହିଁ ଗୁଣ୍ଡ ଘର ।

ଶୂନ୍ୟ ଘର ହୋଇଯାଏ ଶୂନ୍ୟ ସେହିକ୍ଷଣେ
ମୋର ବୋଲି କହିବାକୁ ରହେ ନାହିଁ ଜଣେ ।

ଗୁଣ୍ଡ ଗଲେ ଦେହ ତଥା ଦେହ ଅଧୀଶ୍ୱର
କିଏ ଏଥି ରହେ ଆଉ ଜଗିବାକୁ ଘର ?

ସ୍ୱାମୀ ଥିଲାବେଳେ ଯେହ୍ନ ଥାଆନ୍ତି ଚରବେ
ସ୍ୱାମୀ ଗଲେ ପଛେ ପଛେ ଯାନ୍ତି ସେ ସରବେ ।

ମନ ପ୍ରାଣ ଇନ୍ଦ୍ରିୟାଦି ନ ରହନ୍ତି କେହି
ଗଲେ ଯେହ୍ନ, ସେହ୍ନ ଆତ୍ମା ସେହ୍ନ ଏକା ଦେହୀ ।

ପ୍ରାଣାପାନ ବାୟୁ ବଳେ ବଞ୍ଚି ନାହିଁ ନର
ଜୀଅନ୍ତି ଯା ଯୋଗେ ପ୍ରାଣାପାନୁ ସେ ଇତର ।

ନରଦେହେ ପରମାତ୍ମା ଜୀବନ ନିଦାନ
ଯାହାର ଆଶ୍ରେ ପିଣ୍ଡେ ରହେ ପ୍ରାଣାପାନ ।

ବହୁ ଉପାଦାନେ ଗଢ଼ା ପଦାର୍ଥନିଚୟ
ଆହାର ଉଦ୍ୟାନ ଶଯ୍ୟା ବସନ ଆଳୟ ।

ଲାଗେ ନାହିଁ କେବେ ଯଥା ନିଜ ପ୍ରୟୋଜନେ
ଲୋଡ଼ା ହୁଏ ସଦା ଅନ୍ୟ ସମ୍ଭୋଗସାଧନେ ।

ପ୍ରାଣାପାନ ଇନ୍ଦ୍ରିୟାଦି ଯଥା ସହଯୋଗେ
ଅହରହ କାର୍ଯ୍ୟ ରତ ଆତ୍ମ ଉପଭୋଗେ ।
ଏ ସକଳୁଁ ଆତ୍ମା ଭିନ୍ନ ନିତ୍ୟ ଅସଂହତ
ପ୍ରାଣାପାନ ଆଦି ସର୍ବେ ଆତ୍ମାର ଆଶ୍ରିତ ।

ଗୁହ୍ୟ ସନାତନ ବ୍ରହ୍ମତତ୍ତ୍ୱ ଗଉତମ
କହେ ଏବେ ଶୁଣ ଯେଣେ ଯିବ ମନୁ ଭ୍ରମ ।
ଲଭିଲେ ଯେ ଜ୍ଞାନ ମିଳେ ଚିର ମୋକ୍ଷପଦ
ପାର ହୁଏ ଜୀବ ଜନ୍ମ ମରଣ-ବିପଦ ।
ବ୍ରହ୍ମଜ୍ଞାନ ବିନା ଦେହୀ ମରି ପୁଣ ପୁଣ
ଭଜେ ଯେ ଦୁର୍ଗତି କହେଁ ନଚିକେତ, ଶୁଣ ।
ଆପଣା ଆପଣା ଜ୍ଞାନ କର୍ମ ଅନୁସାରେ
ବାର ବାର ଲଭେ ଜୀବ ଜନ୍ମ ଯୋନିଦ୍ୱାରେ ।
ଆଉ ଥୋକେ ଜୀବ ପୁଣି ଜ୍ଞାନ-କର୍ମ-ଫଳେ
ଉଦ୍ଭିଦ ସ୍ଥାବର ରୂପେ ଜନ୍ମନ୍ତି ଭୂତଳେ ।
ନୁହେଁ ଯେତେ ଦିନ ଯାଏ ସର୍ବ କର୍ମକ୍ଷୟ
ନୁହେଁ ଯେତେ ଦିନ ବ୍ରହ୍ମଜ୍ଞାନ ସମୁଦୟ,
ଭ୍ରମେ ଜୀବ ଏହିପରି ଯୋନି ଶତ ଶତ
ପୂର୍ଣ୍ଣଜ୍ଞାନେ ହୁଏ ଶେଷେ ବନ୍ଧନ ମୁକତ ।
ନିଦ୍ରାର ଉତ୍ସଙ୍ଗେ ନର ଲଭିଲେ ଅଗମ
ପ୍ରାଣ ଇନ୍ଦ୍ରିୟାଦି ଭଜେ କାର୍ଯ୍ୟରୁ ବିରତ ।

ପ୍ରାଣେନ୍ଦ୍ରିୟଗଣ ଯେବେ ନିଦ୍ରା ଅଭିଭୂତ
ସ୍ୱପନେ ଯେ ସୃଜେ ଭୋଗ୍ୟ ବିଷୟ ଅଦ୍ଭୁତ ।

ଭୋଗେ ଇଚ୍ଛାମତେ ଯେତୁ ଇଷ୍ଟ ସୁଖରାଶି
ସେହି ଶୁଦ୍ଧ ସମୁଜ୍ଜ୍ୱଳ ବ୍ରହ୍ମ ଅବିନାଶୀ ।

ଭୂଲୋକ ଦ୍ୟୁଲୋକ ଆଦି ସର୍ବେ ବ୍ରହ୍ମାଶ୍ରିତ
ନୁହେ ନଚିକେତ, କିଛି ବ୍ରହ୍ମରୁ ଅତୀତ ।

ଶରୀର ବିଭେଦେ ଆତ୍ମା ନୁହେ ଭିନ୍ନ ଭିନ୍ନ
ସକଳ ଅନ୍ତରେ ଆତ୍ମା ଏକ ଅବିଚ୍ଛିନ୍ନ ।

ଜଗତର ଅନ୍ତର୍ଗତ ଅଗ୍ନି ଯଥା ଏକ
ରୂପଭେଦେ କାଷ୍ଠାଦିରେ ପ୍ରକାଶେ ଅନେକ ।

ତଥା ଏକ ଆତ୍ମା ସର୍ବଭୂତ ଅଭ୍ୟନ୍ତରେ
ଶରୀର ବିଭେଦେ ଦିଶେ ବିଭିନ୍ନ ରୂପରେ ।

ଶରୀର ଆକାର ବର୍ତ୍ତେ ଆତ୍ମା ଅବାଧିତ
ଆକାଶ ପରିଏ ମୁକ୍ତ ବିକାର ରହିତ ।

ଏକା ବାୟୁ ରହିଛି ଯେ ସାରା ବିଶ୍ୱ ଭରି
ବସ୍ତୁଭେଦେ ଭିନ୍ନ ରୂପେ ପ୍ରକାଶେ ଯେପରି,
ସେହିପରି ଆତ୍ମା ଏକ ସର୍ବ ଭୂତାନ୍ତରେ
ଶରୀର ଭିତ୍ରେ ଯେ ଦିଶେ ବିଭିନ୍ନ ରୂପରେ ।

ଆତ୍ମାକୁ ପରଶେ ନାହିଁ ଦେହ ରୂପ ଗୁଣ
ଆକାଶ ପରିଏ ଆତ୍ମା ନିର୍ଲିପ୍ତ ଅକ୍ଷୁର୍ଣ୍ଣ ।

ସୂର୍ଯ୍ୟାଲୋକ ଦୃଷ୍ଟିଙ୍କୁ ପ୍ରକାଶେ ନୟନ
ପ୍ରତି ପ୍ରାଣୀ ନେତ୍ର ଅନ୍ତ ସତ୍ୱାସେ ରମନ ।

ଦୃଷ୍ଟିଦୋଷେ ମନ-ନେତ୍ର ହୁଏ କଳଙ୍କିତ
ସହସ୍ରାଂଶୁ କେବେ କିନ୍ତୁ ନ ହୁଏ ଦୂଷିତ

ଏକ ଆତ୍ମା ସର୍ବଭୂତେ ବିରାଜିତ ତଥା
କର୍ମ ଫଳାଫଳେ ତାକୁ ନ ଲାଗଇ ବ୍ୟଥା ।

ଲୋକ ସୁଖ ଦୁଃଖେ ଆତ୍ମା ନ ହୁଏ କ୍ଷୋଭିତ
ଆକାଶ ସମାନ ଆତ୍ମା ସଙ୍ଗବିରହିତ ।

ଜଳାଶୟ ଜଳେ ମରୁ ସିକତା ପ୍ରାନ୍ତରେ
ନୀଳାକାଶ ଦେଖେ ଦୂର ମଳିନ ପଥରେ ।

ରଜ୍ଜୁ ଦେଖି ସର୍ପ ବୋଲି ପାଏ ମନେ ଭୟ
ଶୌକ୍ତିକେ ରଜତ ବୋଲି କରେ ସୁନିଶ୍ଚୟ ।

ବୁଦ୍ଧିଦୋଷେ ଘଟଇ ଏ ଦୃଷ୍ଟି ବିପର୍ଯ୍ୟୟ
ରଜ୍ଜୁ ଆଦି ଜାଣେ ଯେବେ ଯାଏ ଭ୍ରମ କ୍ଷୟ ।

ବିପଶ୍ଚିତ ବୁଦ୍ଧି ଯୋଗେ ଦୃଷ୍ଟି ବିପରୀତ
ବୁଦ୍ଧିଦୋଷେ ରଜ୍ଜୁ ଆଦି ନ ହୁଏ ଦୂଷିତ ।

ନଚିକେତ, ଏହିପରି ଆତ୍ମଗତ ଜାଣ
ସୁଖ ଦୁଃଖ ଆଦି ସବୁ ଅବିଦ୍ୟା ଭିଆଣ ।

ସୁଖ ଦୁଃଖ ଲିପ୍ତ ନୁହେ ଆତ୍ମା ନିର୍ବିକାର
ପ୍ରକାଶେ ଏ ସତ୍ୟ ଗଲେ ଅବିଦ୍ୟା-ଅନ୍ଧାର ।

ସର୍ବଭୂତ ଅନ୍ତରାତ୍ମା ସର୍ବ ମୂଳାଧାର
ଯାର ବଶେ ଆବର୍ତ୍ତିତ ନିଖିଳ ସଂସାର ।

ବିଶୁଦ୍ଧ ବିଜ୍ଞାନ ରୂପେ ନିଜେ ନିତ୍ୟ ଏକ
ନାମ ରୂପ ଆଦି ଭେଦେ ହୁଅନ୍ତି ଅନେକ ।

ଲଭେ ସେ ଅଖଣ୍ଡ ବ୍ରହ୍ମ ସ୍ୱରୂପ ଦର୍ଶନ,
ନିଜ ହୃଦ ମୁକ୍ତାକାଶେ ଯେ ବିବେକୀ ଜନ ।

ସ୍ୱଚ୍ଛ ଦରପଣେ ଦେଖେ ଯଥା ନିଜ ମୁଖ
ଲଭେ ସେ ଶାଶ୍ୱତ ଶାନ୍ତ ଆତ୍ମାନନ୍ଦ ସୁଖ ।

ବିଷୟ ଆସକ୍ତ ଅନ୍ୟ ଅବିବେକୀ ନରେ
ନ ଦେଖନ୍ତି ଆତ୍ମରୂପ ଆପଣା ଅନ୍ତରେ ।
ପାଇବେ ଶାଶ୍ୱତ ସୁଖ କାହୁଁ ସେ ଅଧମ
ନ ଛାଡ଼ି ନିଜକୁ ନିଜେ ଅଜ୍ଞାନ ବିଭ୍ରମ ।
ସୁରାସୁର ନର ଅବା ଜଙ୍ଗମ ସ୍ଥାବର
ଚରାଚର ବିଶ୍ୱଲୋକେ ସକଳ ନଶ୍ୱର ।
ଆତ୍ମା ଏକା ଅନଶ୍ୱର ସମସ୍ତ ନଶ୍ୱରେ
ଆତ୍ମା ଏକା ନିତ୍ୟ ସର୍ବ ଅନିତ୍ୟ ଅନ୍ତରେ,
ସମସ୍ତ ଚେତନେ ଆତ୍ମା କେବଳ ଚେତନା
ଏକ ଆତ୍ମା ପୂର୍ଣ୍ଣ କରେ ଅସଂଖ୍ୟ କାମନା ।
ଆତ୍ମଦର୍ଶୀ ଜ୍ଞାନୀ ଜନେ ମିଳେ ନିତ୍ୟ ସୁଖ
ଆତ୍ମଜ୍ଞାନମୂଢ଼ ତହୁଁ ସତତ ବିମୁଖ ।

ସେ ଶାଶ୍ୱତ ଆତ୍ମାନନ୍ଦ ସେ ସୁଖ ଅଶେଷ
ଇତର ଜନ ବା କଏ କରିବ ନିର୍ଦ୍ଦେଶ ?

ଶତକାମ ଜିତେନ୍ଦ୍ରିୟ ଆତ୍ମଦର୍ଶୀ ଜ୍ଞାନୀ
ଏହି ସେହି ସୁଖ ବୋଲି କହନ୍ତି ପ୍ରମାଣି ।

ଯତିଗଣ ଅନୁଭୂତ ସେ ସୁଖ ଶାଶ୍ୱତ
କି ଉପାୟେ କି ରୂପେ ମୁଁ ହେବି ଅବଗତ

ସେ ପରମ ସୁଖ ନିଜେ ପାଏ କି ପ୍ରକାଶ ?
ନରଲଭ୍ୟ କି ସେ ? ସତେ କରିବ ବିଶ୍ୱାସ ?

'ମୁଁ' ବୋଲି ମାନବେ ଯେବେ ଆତ୍ମ-ବୁଦ୍ଧି ଯୁକ୍ତେ
ଆସେ କି ସେ ସୁଖ ? ସତେ ତାର ଦୁଃଖ ଛୁଟେ ?

ନ ହୁଅ ଅଧୀର ନର ନ ତେଜ ବିଶ୍ୱାସ
ଆନନ୍ଦମୟ ସେ ଆତ୍ମା ନିତ୍ୟ ସ୍ୱ-ପ୍ରକାଶ ।

ଆପଣେ ନିଭାସେ ଆତ୍ମା ଆପଣା ଆଲୋକେ
ସୂର୍ଯ୍ୟ ଚନ୍ଦ୍ର ତାରା ଆଦି ନାହିଁ ଆତ୍ମା-ଲୋକେ ।

ନ ଭାସେ ତପନ ତହିଁ ଚନ୍ଦ୍ରମା ନ ଝଲେ
ରତ୍ନଦୀପାବଳି ସମ ତାରକା ନ ଜଳେ ।

ନାହିଁ ତହିଁ କ୍ଷଣପ୍ରଭା ଚପଳ ଝଟକ
ଉଜ୍ଜ୍ୱଳେ ଜଳିବ କାହିଁ ଅବା ଏ ପାବକ ?

ଆତ୍ମରୂପୀ ପ୍ରଜ୍ଞାମୟ ପରମ ଈଶ୍ୱରେ
ରବି ଶଶୀ ଆଦି ସର୍ବ ସଦା ଅନୁସରେ ।

ଅଲୌକିକ ହୁଏ ସର୍ବ ସେ ବ୍ରହ୍ମ ଆଲୋକେ
ଶାନ୍ତି ମନ୍ତ୍ର ଭଣେ ଯାହା ଦ୍ୟୁଲୋକେ ଭୂଲୋକେ ।



## ତୃତୀୟ ବଲ୍ଲୀ

ସଂସାର ଅଶ୍ୱତ୍ଥ ତରୁ ଅନିତ୍ୟ ଅସ୍ଥିର
ଊର୍ଦ୍ଧ୍ୱ ମୂଳ ମେଲିଅଛି ନିମ୍ନେ ଶାଖା ଶିର ।

ଅବ୍ୟକ୍ତରୁଁ ସ୍ଥାବର ଯାଏ ନିଖିଳ ସଂସାର
ସେ ପରମପଦ ବସ୍ତୁ ଏହା ମୂଳାଧାର ।

ସଜୀବ ନିର୍ଜୀବ ଦେବ ଅସୁର ମାନବ
ପଶୁ ପକ୍ଷୀ ତରୁ ତୃଣ ଯାବତ ସଂଭବ ।

ସଂସାର ଅଶ୍ୱତ୍ଥେ ସର୍ବେ ଶାଖା ଅଗଣନ
ଅନାଦି ପ୍ରବାହ ଏ ଯେ ବୃକ୍ଷ ସନାତନ ।

ଏ ବୃକ୍ଷର ମୂଳ ବୀଜ ଉଜ୍ଜ୍ୱଳ ଭାସ୍ୱର
ସର୍ବଲୋକାଶ୍ରୟ ବ୍ରହ୍ମ ନିତ୍ୟ ଅନଶ୍ୱର ।

ଅତୀତ ନୁହଇ ତହୁଁ କିଛି ଏ ଜଗତେ
ଏ ସେ ଆତ୍ମା ନଚିକେତ, ପୃଚ୍ଛିଲ ଯା ମତେ ।

ନିଃସୃତ ପରମବ୍ରହ୍ମୁଁ ବିଶ୍ୱ ବସ୍ତୁଗଣ
ସେ ବ୍ରହ୍ମ ପ୍ରେରଣେ ସ୍ପନ୍ଦେ ବିଶ୍ୱ ଅନୁକ୍ଷଣ ।

ମହା ଭୟଙ୍କର ସେହି ପ୍ରଭୁ ବିଶ୍ୱେଶ୍ୱର
ପ୍ରଚଣ୍ଡ ଉଦାତ୍ତ ସଦା ଯଥା ବଜ୍ରଧର ।

ଯାର ଡରେ ରବି ଶଶୀ ଗ୍ରହ ତାରାପନ୍ତି
ଅବିଶ୍ରାନ୍ତ ନିଜ ନିଜ ମାର୍ଗେ ବିଚରନ୍ତି,

ଅନ୍ତରର ସାକ୍ଷୀ ସେହି ପ୍ରଭୁ ଅନ୍ତର୍ଯ୍ୟାମୀ
ଜାଣି ଯେହୁ ସଦା ତାଙ୍କ ଆଜ୍ଞା ଅନୁଗାମୀ ।

ଅମରତ୍ୱ ଲଭେ ସେହୁ ଯାଏ ଭବପାରେ
ଫେରେ ନାହିଁ କେବେ ଆଉ ଏ ଘୋର ସଂସାରେ

ସେ ବିଶ୍ୱନିଅନ୍ତୃ ଭୟେ ପ୍ରତପେ ତପନ,
ପ୍ରତାପେ ପାବକ, ବହେ ସନ୍ତତ ପବନ,

ଯଥାକାଳେ ବର୍ଷେ ଇନ୍ଦ୍ର, ପ୍ରଶାସେ ଶମନ,
ନିଜ ନିଜ କାର୍ଯେ ରତ ଦିଗପାଳଗଣ ।

ସ୍ୱାମୀରୋଷେ ଭୟସ୍ଥିତ ଥରିକର ପ୍ରାଏ ।
ପ୍ରତ୍ୟେକ ଆପଣା ପଥେ ଅବିଶ୍ରାନ୍ତ ଧାଏଁ ।

ସେ ବିଶ୍ୱକାରଣ ପ୍ରଭୁ ବିଶ୍ୱ ମୂଳାଧାରେ
ଜାଣିବାକୁ ସମର୍ଥ ଯେ ହୁଏ ଏ ସଂସାରେ,

ସ୍ୱରୂପ ତାଙ୍କର ହୃଦେ କରେ ଅନୁଭୂତି
ଦେଖେ ଏ ଅନନ୍ତ ବିଶ୍ୱ ତାଙ୍କର ବିସ୍ତୃତି ।

ମରଣ ପୂର୍ବରୁ ଏହି ମର୍ତ୍ତ୍ୟ-କଳେବରେ
ପାଏ ସେ ବିଦେହ ମୁକ୍ତି, ଭବସିନ୍ଧୁ ତରେ ।

ଲଭେ ନାହିଁ ଏଥୁ ସେହୁ ବ୍ରହ୍ମ ଅବଗତ
ମରଣାନ୍ତେ ହେଲେ ତାର ନାହିଁ ମୋକ୍ଷଗତି ।
ଏ ଦେହ ଛାଡ଼ି ସେ ପୁଣି ଆନ ଦେହ ପାଏ
କର୍ମ ଅନୁଯାୟୀ ଦେହୁଁ ଦେହାନ୍ତର ଯାଏ ।
ଅସଂଖ୍ୟ ଯୋନିରେ ଜନ୍ମେ ଭ୍ରମେ ନାନା ଲୋକେ
ଲୁଟେ ପଡ଼େ ସୁଖେ ଦୁଃଖେ ସହେ ଭବ-ଶୋକେ ।
ନିଜ ମୁଖ ପ୍ରତିବିମ୍ବ ସ୍ୱଚ୍ଛ ଦରପଣେ
ଦେଖେ ନର ଅବିକଳ ବିଶଦ ଯେସନେ ।
ସୁନିର୍ମଳ ସମୁଜ୍ଜ୍ୱଳ ବୁଦ୍ଧି ଆଦରଶେ
ତେସନେ ଆତ୍ମାର ରୂପ ଦେଖେ ଜ୍ଞାନବଶେ ।
ଅସ୍ପଷ୍ଟ ସ୍ୱପନେ ଯଥା ରୂପ ଅବସ୍ଥିତ
ପିତୃଲୋକେ ଦିଶେ ତଥା ଆତ୍ମା ଅସୌଷ୍ଠବ ।
ରୂପରେଖ ଅଙ୍ଗହୀନ ସଲିଳେ ଆକୃତି
ଆତ୍ମାର ଗନ୍ଧର୍ବଲୋକେ ତଥା ଅନୁଭୂତି ।
ବ୍ରହ୍ମଲୋକେ ଦିଶେ ଏକା ଆତ୍ମା ପରିଷ୍କାର
ସ୍ପଷ୍ଟ ବିଲକ୍ଷଣ ଯଥା ଆଲୋକ ଅନ୍ଧାର ।
ବ୍ରହ୍ମଲୋକ ପ୍ରାପ୍ତି ଅତି ଦୁଃସାଧ୍ୟ ଦୁର୍ଲ୍ଲଭ
ବହୁ ଯାଗ ଯୋଗ ଜ୍ଞାନେ ଲଭେ ତା ମାନବ ।
ହେ ଚତୁର ନର, ତେଣୁ ହୁଅ ସାବଧାନ
ଆପଣା ଅନ୍ତରେ ସଦା କର ବ୍ରହ୍ମ ଧ୍ୟାନ ।

ସ୍ୱଚ୍ଛ ଶୁଦ୍ଧ କର ନିଜ ବୁଦ୍ଧି-ଦରପଣ

ଇଚ୍ଛ ଯଦି ପାଇବାକୁ ବ୍ରହ୍ମ ଦରଶନ ।

କ୍ଷିତି ଅପ ତେଜ ବାୟୁ ବ୍ୟୋମ ପଞ୍ଚ ଭୂତ

ପଞ୍ଚେନ୍ଦ୍ରିୟ ଏ ପଞ୍ଚର ସତ୍ୟାଂଶୁ ସମ୍ଭୂତ ।

ରାଜସ ଅଂଶରୁ ପାଣି ପାଦ ଆଦି ହୁଏ

ଜ୍ଞାନକର୍ମେନ୍ଦ୍ରିୟେ କିନ୍ତୁ ଆତ୍ମା ଯୁକ୍ତ ନୁହେ ।

ସ୍ୱପ୍ନ ଜାଗରଣେ ଦେହେ ଇନ୍ଦ୍ରିୟନିଚୟ

ଦିବସେ ଦିବସେ ଯାଏ ପ୍ରଳୟ ଉଦୟ ।

ଇନ୍ଦ୍ରିୟ ଉଦୟ ଅସ୍ତ ଆତ୍ମ ଅବାଧିତ

ବୁଝନ୍ତି ଏ ଆତ୍ମତତ୍ତ୍ୱ କେବଳ ପଣ୍ଡିତ

ଆତ୍ମାର ନ ଘଟେ କେବେ ପ୍ରଳୟ ଉଦୟ

ସତତ ଜାଗ୍ରତ ଆତ୍ମା ଅକ୍ଷୟ ଅବ୍ୟୟ ।

ଆତ୍ମା ଇନ୍ଦ୍ରିୟର ବୁଝି ଏଥି ଭେଦାଭେଦ ।

ତରନ୍ତି ବିବେକୀ ଜନେ ସର୍ବ ଶୋକ ଖେଦ ।

ଇନ୍ଦ୍ରିୟ ଶକ୍ତିରେ ସାର ପ୍ରାଣୀ ଦେହ ଦ୍ୱାର

ସକଳ ଇନ୍ଦ୍ରିୟ ପରେ ମନ ଅଧିକାର ।

ଇନ୍ଦ୍ରିୟରୁ ବଳ ତେଣୁ ମନ ଶ୍ରେଷ୍ଠତର

ମନ ପରେ ବୁଦ୍ଧି, ପୁଣି ମହତ ତା ପର ।

ହିରଣ୍ୟଗର୍ଭ ନାମେ ସେ ମହତ ଖ୍ୟାତ

ବିଶ୍ୱ ବୁଦ୍ଧି ସମବାୟ ସର୍ବ ବିଶ୍ୱ ବ୍ୟାପ୍ତ ।

ସେ ହିରଣ୍ୟଗର୍ଭ ପରେ ଅବ୍ୟକ୍ତ ପ୍ରଧାନ
ସାଂଖ୍ୟେ ଯା ପ୍ରକୃତି, ମାୟା ବେଦାନ୍ତେ ଯା ନାମ ।

ଅବ୍ୟକ୍ତ ପ୍ରକୃତି ପରେ ପୁରୁଷ ଉତ୍ତମ
ସର୍ବବ୍ୟାପୀ ସର୍ବେଶ୍ୱର ସତ୍ୟ ସନାତନ ।

ନାହିଁ ଯାର ଚିହ୍ନ, ନାହିଁ ଗୁଣ ରୂପ ନାମ
ସେହି ଏକା ପରମାତ୍ମା ସେ ପରମ ଧାମ ।

ଜାଣେ ଏ ପରମ ତତ୍ତ୍ୱ, ସେ ପ୍ରାଣୀ ସଂସାରେ
ଲଭେ ଅମୃତତ୍ତ୍ୱ, ଯାଏ ଭବସିନ୍ଧୁ ପାରେ ।

ଅତ୍ମାର ସ୍ୱରୂପ ନୁହେଁ ପ୍ରତ୍ୟକ୍ଷ ଗୋଚର
ଆତ୍ମାକୁ ନୟନେ କେହି ଦେଖି ନାହିଁ ନର ।

ସୁନିଶ୍ଚିତ ବୁଦ୍ଧିବଳେ କଲେ ଧୀର ଧ୍ୟାନ
ପ୍ରକାଶେ ମାନବ-ହୃଦେ ଶୁଦ୍ଧ ଆତ୍ମଜ୍ଞାନ

ଆତ୍ମା ବ୍ରହ୍ମକୁ ଯେ ଜାଣେ ତତ୍ତ୍ୱେ କରି ଲୟ
ଅମୃତ ସେ ନରଦେହ ଧରି ମୃତ୍ୟୁଞ୍ଜୟ ।

ଚକ୍ଷୁ ଯେବେ ବାହ୍ୟ ଦୃଶ୍ୟ ଦେଖି ନ ଦେଖଇ
କର୍ଣ୍ଣ ଯେବେ ବାହ୍ୟ ନାଦ ଶୁଣି ନ ଶୁଣଇ ।

ସୁଗନ୍ଧ ଦୁର୍ଗନ୍ଧ ନାସା ନ କଲେ ଆଘ୍ରାଣ
ପରଶେ ନ ବୁଝେ ଦେହ ଶୀତ ଉଷ୍ମ ଜ୍ଞାନ ।

ଆସ୍ୱାଦେ ନ ଜାଣେ ଜିହ୍ୱା ରସ ଭେଦାଭେଦ
ବାହ୍ୟ ବିଷୟରୁ ଯେବେ ଇନ୍ଦ୍ରିୟ ନିର୍ବେଦ ।

ଅନ୍ତର୍ମୁଖେ ରହେ ଯେବେ ମାନସ ଆୟତ୍ତ
ବିଷୟ ବ୍ୟାପାରେ ବୁଦ୍ଧି ନୁହେ ଅବିରତ ।

ଏକାନ୍ତ ଉଦାର ଶୁଦ୍ଧ ହୁଏ ଯେବେ ମତି
ଜ୍ଞାନୀ ଯୋଗୀଗଣ ମତେ ସେ ପରମ ଗତି ।

ବାହ୍ୟ ବିଷୟରୁ ଯେବେ ଇନ୍ଦ୍ରିୟ ବିରତ
ହୃଦୟ-କମଳେ ହୁଏ ମନ ଅଧିଗତ ।

ମାନସ ଧାରଣା ଦୃଢ଼ ସ୍ଥିର ସୁନିଶ୍ଚିତ
ହରଷେ ବିଷାଦେ କ୍ଷଣେ ନୁହେ ବିଚଳିତ ।

ଯୋଗେ ଅଧିରୂଢ଼ ତେବେ ସାଧକର ମତ
ହୁଏ ହୃଦେ ପୂର୍ଣ୍ଣାନନ୍ଦ ଆତ୍ମା ଅବଗତ ।

କଠିନ ଏ ଯୋଗମାର୍ଗ ଦୁଃସାଧ୍ୟ ସାଧନ
ଅଳପ ବିକ୍ଷିପ୍ତ ବ୍ୟଗ୍ର ହେଲେ ଏଥି ମନ ।

ପ୍ରମାଦେ ବିଷମ ଗର୍ତ୍ତ ଘଟେ ଅକସ୍ମାତେ
ପଡ଼ଇ ସାଧକ ମହା ଦୁସ୍ତର ବିତ୍ପାତେ ।

ତେଣୁ ଅତି ସାବଧାନେ ଏକାଗ୍ର ମାନସେ
ନିରୋଧି ଇନ୍ଦ୍ରିୟଗଣ ରଜନୀ ଦିବସେ ।

ଜ୍ଞାନ-ଦୀପ ଜାଳି କର ଚିତ୍ତ ସମାହିତ
ଆତ୍ମ ଦରଶନେ ଯେବେ ବାଞ୍ଛା ନିତ୍ୟ ହିତ ।

ଅଜ୍ଞେୟ ଯେ ମନ ବାକ୍ୟ ଇନ୍ଦ୍ରିୟ ସଂଯୋଗେ
ଗୋଚର କେବଳ ହୃଦେ ଜ୍ଞାନ ଧ୍ୟାନ ଯୋଗେ ।

ଆସ୍ତିକ ବିଶ୍ୱାସୀ ଗୁରୁ ବିନା କିଏ ଆନ
ଦେଇପାରେ ସେ ଅନାଦି ବ୍ରହ୍ମତତ୍ତ୍ୱ ଜ୍ଞାନ
ପାଷଣ୍ଡ ନାସ୍ତିକଗଣ ବ୍ରହ୍ମେ ଅବିଶ୍ୱାସୀ
ଦୂରେ ତାଙ୍କ ସଙ୍ଗ ତେଜ ଅମୃତପ୍ରୟାସୀ ।
ନିର୍ଗୁଣ ସଗୁଣ ଆତ୍ମା ଉଭୟ ପ୍ରକାର
ସଗୁଣ ଉପାଧି ବଶେ ସୃଷ୍ଟି ଏ ସଂସାର ।
ବିନା କାରଣେ କାହିଁ କାର୍ଯ୍ୟର ଉଦ୍‌ଭବ ?
ଆତ୍ମା ବିନା ଏ ସଂସାରେ ସୃଷ୍ଟି ଅସମ୍ଭବ ।
ଗୁରୁ ଉପଦେଶ ଲଭି ଏ ତତ୍ତ୍ୱ ନିଶ୍ଚୟ
ଆତ୍ମାର ଅସ୍ତିତ୍ୱେ ଆଦ୍ୟେ କରିବ ପ୍ରତ୍ୟୟ ।
ଧୀର ଭାବେ ଅନୁଭବ ନିଜ ହୃଦଗତ
ଦେଖି ବିଶ୍ୱ ସୃଷ୍ଟି କିମ୍ବା ସୁସଂଗତ ମତ ।
'ଅଛନ୍ତି ସେ ପରମାତ୍ମା ନିତ୍ୟ ବିରାଜିତ'
ଏ ସତ୍ୟ ବିଶ୍ୱାସ ଯେବେ କରେ ଦୃଢ଼ଚିତ୍ତ;
ତତ୍ତ୍ୱଭାବ ହୁଏ ତେବେ ଅନ୍ତରେ ପ୍ରକାଶ
ଉପାଧି-ରହିତ ବ୍ରହ୍ମ ଉପୁଜେ ବିଶ୍ୱାସ ।
ଅବ୍ୟକ୍ତ ଅକ୍ଷୟ ନିତ୍ୟ ଆତ୍ମତତ୍ତ୍ୱ ଭାବ
ଅନୁକ୍ଷଣ ଅନୁଭବ ହୁଏ ତାର ଲାଭ ।
ହୃଦରୁ ଫୋଟିତ ଯେତେ କାମନାନିଚୟ
ତତ୍ତ୍ୱଭାବ ଲଭେ ହୃଦୁଁ ଯାଏ ସବୁ କ୍ଷୟ ।

ଏ ମର ସଂସାରେ ହେବେ ମାନବ ଅମୃତ
ଲଭେ ବ୍ରହ୍ମାନନ୍ଦ ବ୍ରହ୍ମେ ହୁଏ ଏକୀଭୂତ ।
'ମୁଁ' 'ମୋର' ମମତାମୟ ହୃଦଗ୍ରନ୍ଥି ତମ୍ଭ
ହୁଏ ଯେବେ ଛିନ୍ନ ଭିନ୍ନ ତୁଟେ ଭବବନ୍ଧ ।
ଅଜ୍ଞାନ ଜଡ଼ତା ମୋହ ଦୂରେ ଅପସରେ
ବ୍ରହ୍ମ-ଆତ୍ମା ଏକଭାବ ବାହ୍ୟ ଅଭ୍ୟନ୍ତରେ ।
ମର୍ତ୍ତ୍ୟଲୋକେ ମର ଦେହେ ମାନବ ଅମୃତ
ଏ ପରମ ଉପଦେଶ ବେଦାନ୍ତ ନିଃସୃତ ।
ପ୍ରସରିଛି ହୃଦୁଁ ନାଡ଼ୀ ଏକୋତ୍ତର ଶତ
ତା ମଧ୍ୟେ ସୁଷୁମ୍ନା ଊର୍ଦ୍ଧ୍ୱ ବ୍ରହ୍ମରନ୍ଧ୍ର ଗତ ।
ଜ୍ଞାନବନ୍ତେ ଜୀବନ୍ମୁକ୍ତ ନ ହୁଏ ଯେ ନର
ଉପାସନା ଅନୁସାରେ ପାଏ ଲୋକାନ୍ତର ।
ମରଣେ ସେ ଊର୍ଦ୍ଧ୍ୱେ ଯାଏ ସୁଷୁମ୍ନା ଆଶ୍ରୟେ
ବ୍ରହ୍ମଲୋକେ ଅମୃତତ୍ତ୍ୱ ଲଭେ ସେ ନିର୍ଭୟେ ।
ଭିନ୍ନ ଭିନ୍ନ ଲୋକେ ଯାଏ ଅନ୍ୟ ନାଡ଼ୀ ଯୋଗେ
ନିଜ କର୍ମ ଅନୁରୂପେ ସୁଖ ଦୁଃଖ ଭୋଗେ ।
ବ୍ରହ୍ମତତ୍ତ୍ୱ କଥା ଯେତେ କଲି ମୁଁ ପ୍ରଚାର
ଶୁଣ ନଚିକେତ, ଏବେ ସେ ସବୁର ସାର ।
ପ୍ରାଣୀଗତ ହୃଦପଦ୍ମେ ସଦା ବିଦ୍ୟମାନ
ଅନ୍ତରାତ୍ମା ପୁରୁଷ, ସେ ଅଙ୍ଗୁଷ୍ଠ ପ୍ରମାଣ ।

ଗୁଞ୍ଜଗର୍ଭୁଁ ମଞ୍ଜି ସମ ସେ ପୁରୁଷେ ଭ୍ରମେ
ନିଜ ଦେହୁଁ ଭିନ୍ନ କର ଧୈର୍ଯ୍ୟ ଶମ ଦମେ ।
ସେ ଅନ୍ତର୍ଯ୍ୟାମୀଙ୍କୁ ଶୁଦ୍ଧ ବ୍ରହ୍ମ ବୋଲି ଜାଣ
ସେହି ବିଶ୍ୱଆତ୍ମା, ସେହି ସର୍ବ ପ୍ରାଣୀ ପ୍ରାଣ ।"

ଯମରାଜା କହିଲେ ଯେ ବ୍ରହ୍ମତତ୍ତ୍ୱଜ୍ଞାନ
କହିଲେ ଯେ, ଯୋଗଫଳ ସାଧନ ବିଧାନ,

ବୁଝି ହୃଦେ ଅନୁଧ୍ୟାଇ ସେ ତତ୍ତ୍ୱ ସକଳ
ହେଲେ ନଚିକେତା ଶୁଦ୍ଧ ନିର୍ଦ୍ଦୋଷ ନିର୍ମଳ ।
ଅବିଦ୍ୟାର ମୋହନିଦ୍ରା ଗଲା ହୃଦୁଁ ଛୁଟି
ଉଠିଲା ଅନ୍ତରେ ପୂର୍ଣ୍ଣ ଆତ୍ମତତ୍ତ୍ୱ ଫୁଟି ।
ମୁକ୍ତ ହୋଇ ନଚିକେତା ଗଲେ ମୃତ୍ୟୁ ପାରେ
ଆତ୍ମତତ୍ତ୍ୱ ଅନ୍ୟ ଯେତେ ଜାଣିବେ ସଂସାରେ ।
ନଚିକେତା ସମ ସେହୁ ଲଭିବେ ମୁକତି
ହେବ ବ୍ରହ୍ମପଦ ପ୍ରାପ୍ତି, ଘୁଞ୍ଚିବ ଦୁର୍ଗତି ।



## ଚତୁର୍ଥ ବଲ୍ଲୀ

ଯମ ଛତୁଁ ନଚିକେତା ଲଭି ବ୍ରହ୍ମଜ୍ଞାନ
ବାହୁଡ଼ି ମିଳିଲେ ଆସି ପିତୃ ସନ୍ନିଧାନ ।

ଅଚେତନ ପିଣ୍ଡେ ଯେବେ ଜାଗିଲା ଚେତନା
ଉଠି ପୁତ୍ର କଲେ ପିତୃଚରଣ ବନ୍ଦନା ।
ଜୀବନ୍ତ ତନୟେ ଦେଖି ପିତା ହରଷିତ
ଦରିଦ୍ର ପାଇଲେ ଯଥା ରତନଗ-ଭଣ୍ଡ ।
"ଧନ୍ୟ ନଚିକେତା, ଧନ୍ୟ ତୋର ପୁଣ୍ୟରାଶି !
ଫେରି ପୁର ଜନ୍ମିଲୁ ବାବୁ ହୋଇ ମର୍ତ୍ତ୍ୟବାସୀ ।
ଦୈବବଳେ ପାଇଲୁ ତୁ ଜନମ ଆବର
ତୋର ଏ ଶରୀର ନୁହେଁ ନର କଳେବର ।
କହ ପୁତ୍ର, ଦେଖିଲୁ ତୁ କିସ ମୃତ୍ୟୁ ପରେ
କି କର୍ମେ କି ଫଳ ଜନ ଲଭେ ଯମପୁରେ ?"
ଋଷିଗଣ ମଧ୍ୟେ ତହୁଁ ଯୋଡ଼ି ବେନିକର
ସବିନୟେ ନଚିକେତ କରନ୍ତି ଉତ୍ତର,
"ତବ ଆଜ୍ଞା ମାନି ପିତା ଗଲି ଯମାଳୟେ
ଦେଖିଲି ଶମନ-ସଭା ଅତି ଶୋଭାମୟ ।
ବିଶାଳ ସେ ସଭା ଦଶ ସହସ୍ର ଯୋଜନ
ନାନା ରତ୍ନ ସୁଖଚିତ କନକ ବରଣ ।
ଦେଖି ମତେ ଯମରାଜା ଭୃତ୍ୟ ମୁଖ ଚାହିଁ
କହିଲେ ଆସନ ଆଣି ଶୀଘ୍ର ଦେବା ପାଇଁ ।
କୁମ୍ଭର ସୁରୁଚିତ ମତେ ଅର୍ଘ୍ୟାଦ ବିଧାନେ
ପୂଜିଲେ ସେ ଯମରାଜା ବହୁତ ସମ୍ମାନେ ।

ବହୁତ ଆଦର କଲେ ଯମ ଭୃତ୍ୟଗଣ
କହିଲି ମୁଁ ଜନୁଗଣେ ବିନୟ ବଚନ,

'ତବ ପାଶେ ଉପଗତ ହୋଇଛି ମୁଁ ଆଜ
ଯହିଁ ମୋ ଉଚିତ ସ୍ଥାନ କହ ଧର୍ମରାଜ ।'

କହିଲେ ସେ ଯମ ମତେ, 'ମଣ ନାହିଁ ଏବେ
ପିତା ତବ କହିଛନ୍ତି—ଦେଖ ଯମଦେବେ ।

ଅନନ୍ତପ୍ରତିମ ଋଷି କହିଲେ ସେ କଥା
କାହାର କ୍ଷମତା ତାହା କରିବ ଅନ୍ୟଥା ।
ତେଣୁ ତୁମ୍ଭେ ଆସିଅଛ ଶମନ-ସଦନେ
ଦେଖିଅଛ ମତେ ଏବେ ଯାଅ ସ୍ୱ-ଭବନେ ।

ତୁମ୍ଭଙ୍କୁ ନ ଦେଖି ପିତା ଅତ୍ୟନ୍ତ କାତର
ଶୀଘ୍ର ଯାଅ ନଚିକେତ, ବିଳମ୍ବ ନ କର ।

ମୋ ପୁରର ଅତିଥି ତୁମ୍ଭେ ଯାହା ଇଚ୍ଛା ମାଗ
ସାଦରେ ଏକ୍ଷଣେ ସବୁ ଦେବି ମହାଭାଗ !'

ଯମରାଜ ବାକ୍ୟେ ମୁହିଁ କଲି ନିବେଦନ—
'ଆସିଅଛି ତବ ପୁରେ ହେ ଯମରାଜନ !

ଏ ଦେଶକୁ ଆସି କେହି ବାହୁଡି ନ ଯାଏ
କର ଅନୁଗ୍ରହ ଯେବେ କର ଜନୁଗସ୍ୱେ ।

ଲଭନ୍ତି ସୁକୃତବନ୍ତ ଜନେ ଯେ ଯେ ଦେଶ
ଦେଖିବି ସେ ସବୁ ଦେବ କର ହେ ଆଦେଶ ।'

ତହୁଁ ଯମ କହାଇଲେ ମତେ ଦିବ୍ୟଯାନେ
ନିଜ ପୁରେ ବୁଲାଇଲେ ନେଇ ନାନା ସ୍ଥାନେ ।

ବସନ୍ତ ପ୍ରମୋଦେ ଯହିଁ ପୁଣ୍ୟବନ୍ତ ଜନ
ଦେଖିଲି ସବୁ ସେ ଦିବ୍ୟ ଗୃହ ନିକେତନ ।
ସର୍ବ ରତ୍ନ ସୁଶୋଭିତ ବିଚିତ୍ର ଗଠନ
ଉଜ୍ଜ୍ୱଳ ଅପୂର୍ବ ତେଜେ ସକଳ ଭବନ,

ଚନ୍ଦ୍ରମାମଣ୍ଡଳ ସମ ଶୁଭ୍ର ରମ୍ୟପୁର
ଯଥାସ୍ଥାନେ ଶୋଭେ ମଣି କଙ୍କିଣି ନୂପୁର ।

ବହୁତଳ ପ୍ରସାଦ ସେ ଅତି ଶୋଭାବନ
ପୁର ମଧ୍ୟେ ଗଳେ ପୁଣି ସର ଉପବନ ।

ମାଣିକ୍ୟ ବୈଦୁର୍ଯ୍ୟ ଝଳେ ରତ୍ନ ପ୍ରଭା ସମ
ସ୍ୱର୍ଣ୍ଣ ସୌଧ୍ୟ କାରୁକାର୍ଯ୍ୟ ଅତି ଅନୁପମ ।

ସ୍ଥାବର ବା ଅସ୍ଥାବର ଯାହା ସେ ଭବନେ
ସର୍ବେ ଯଥା ଝକମକ କାଳାର୍କ କିରଣେ ।

ସୂକ୍ଷ୍ମରୁ ବସନ କେତେ ସୁକୋମଳ ଶଯ୍ୟା
ହୋଇଅଛି ଶୈଳପରେ ଭକ୍ଷ ଭୋଜ୍ୟ ସଜ୍ଜା ।

ନାନା ଜାତି ଫଳ ଲତା ଯହିଁ ସୁଶୋଭିତ
ଫଳେ ଇଚ୍ଛା ଅନୁରୂପ ଫଳ ଅଗଣିତ ।

ବନେ କେତେ ନଦୀ, ଶୋଭେ ବାପୀ ପୁଷ୍କରିଣୀ
ଗିରି ଦେହୁଁ ବହେ କାହିଁ ସ୍ୱଚ୍ଛ ନିର୍ଝରିଣୀ ।

କାହିଁ ବହେ ଘୃତଧାର, କାହିଁ ଦୁଗ୍ଧଧାର
ଯାର୍ଦଶନ ଯାନକାଳେ ପୂର୍ଣ୍ଣ ପରସର ।

ଦେଖିଲ ଏପରି ବସ୍ତୁ ଅପୂର୍ବ ଭବନ
ଅବଶେଷେ ଧର୍ମରାଜେ କଲ ନିବେଦନ,

'କହ ଦେବ, ବଣେ ଏ ଯେ ସରିତ ନିବହ
ଘୃତ ଦୁଗ୍ଧ ସ୍ରୋତ ଯହିଁ ବହେ ଅହରହ ।

କାହା ଉପଭୋଗ ଲାଗି ସୃଷ୍ଟି ଏ ସକଳେ ?
ବୋଲେ ଯମ, 'ନଚିକେତ, ଶୁଣ ହେ ନିଶ୍ଚଳେ ।

କରନ୍ତି ଗୋରସ ଦାନ ଯେଉଁ ସାଧୁଜନ
ସେହି ଏକା ଏ ସରିତ ସମ୍ଭୋଗେ ଭାଜନ ।

ଯଥାବିଧି ଗୋ ପ୍ରଦାନ କରନ୍ତି ଯେ ନରେ
ପାଆନ୍ତି ସେ ଏଥୁଁ ବଳ ଭୋଗ ଲୋକାନ୍ତରେ ।

ସୁଲକ୍ଷଣବନ୍ତି ଗାଈ ବୁଝି କାଳ ବିଧି
ଯୋଗ୍ୟପାତ୍ରେ ଦାନ ଦେଲେ ମିଳେ ସର୍ବ ସିଦ୍ଧି ।'

ନାନାବିଧ ଗୋଦାନରେ ନାନାବିଧ ଫଳ
ଅବଶେଷେ କହିଲେ ଯମ ବୁଝାଇ ସକଳ ।

ଗୋଦାନେ ଭୋଗଇ ନର ସ୍ୱର୍ଗେ ମହାସୁଖ
ଗୋଦାନେ କଦାପି ପିତା ନ ହୁଅ ବିମୁଖ ।

ଉପଯୁକ୍ତ ଗାଭୀ ଦିଅ ଉପଯୁକ୍ତ ଜନେ
ଗୋଦାନର ଫଳ ମୁଁ ତ ଦେଖିଲ ନୟନେ ।

ଗୋଦାନ ସମାନ ନୁହେ ଅନ୍ୟ ଧର୍ମ ମତେ
କରନ୍ତୁ ମାନବ ସର୍ବେ ଗୋସେବା ଜଗତେ ।"

ଇହ ପରକାଳେ ସୁଖ ଗୋସେବା, ଗୋଦାନେ
ଗୋଜାତିକୁ ପାଳ ଜନେ ସଦା ସାବଧାନେ ।



# ଗୋ-ମାହାତ୍ମ୍ୟ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ।
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିଂ
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ॥
ଓଁ ନମୋ ବ୍ରହ୍ମଣ୍ୟ ଦେବାୟ ଗୋ-ବ୍ରାହ୍ମଣ ହିତାୟଚ
ଜଗଦ୍ଧିତାୟ କୃଷ୍ଣାୟ ଗୋବିନ୍ଦାୟ ନମୋ ନମଃ ।

## ପ୍ରଥମ ଅଧ୍ୟାୟ

ଗୋମତୀ-ତୀରେ ପୁଣ୍ୟବନ । ଶୀତଳ ଶୋଭିତ ପାବନ ॥
ବିରାଜେ ନାନାଜାତି ଦ୍ରୁମ । ଫୁଟଇ ବିବିଧ କୁସୁମ ॥
ମୃଗ ଶଶକ କୃଷ୍ଣସାର । କରନ୍ତି ସ୍ୱଚ୍ଛନ୍ଦେ ବିହାର ॥
ମୟୂର ହଂସ ଶୁକ ସାରୀ । କୋକିଳ ବସନ୍ତ-ବିହାରୀ ॥
ଅନେକ ଜାତି ବିହଙ୍ଗମ । କରନ୍ତି ସ୍ୱନ ମନୋରମ ॥
ନିର୍ମଳ ବହେ ନଦୀଜଳ । ବିକଶେ ଶୁଭ୍ର ଶତଦଳ ॥
ନାହିଁ ଜନତା କୋଳାହଳ । ପବନ ଶାନ୍ତ ସୁନିଶ୍ଚଳ ॥
ଦେଖିଣ ସେହି ବନଭୂମି । ଆଶ୍ରମ ବିରଚିଲେ ମୁନି ॥
ବେଦ ପୁରାଣେ ବିଶାରଦ । ସର୍ବଦା ଭକ୍ତି ଗଦଗଦ ॥
କରନ୍ତି ନାନା ହୋମବ୍ରତ । ଯୋଗ ଅଭ୍ୟାସେ ନିତ ରତ ॥
ଗୋମତୀ-ତୀରେ ପୁଣ୍ୟ ବନେ । ରହିଲେ ହରଷିତ ମନେ ॥
ମୁନିଙ୍କ ଶିଷ୍ୟ ବ୍ରହ୍ମଚାରୀ । ଅତି ସୁଶୀଳ ଶୁଭଚାରୀ ॥
ହୃଦରେ ବହି ଭକ୍ତି ପ୍ରୀତି । ଖଟନ୍ତି ମୁନି ପଦେ ନିତି ॥
ପୂଜାସାମଗ୍ରୀ ପୁଷ୍ପ ଜଳ । ଆଣନ୍ତି ଶୁଦ୍ଧ ନଦୀଜଳ ॥

ଚରନ୍ତି ପ୍ରତିଦିନ ଗାଈ । ଦୁହାଁନ୍ତି ବାଛୁରି ପିଆଇ ॥
ଶିଷ୍ୟ ସେବାରେ ସୁପ୍ରସନ୍ନ । ମୁନି କରନ୍ତି ଅଧ୍ୟାପନ ॥
ବେଦ ପୁରାଣ ଇତିହାସ । କରନ୍ତି ନିପୁଣ ଅଭ୍ୟାସ ॥
ସେ ଶିଷ୍ୟ ଅତି ବିଚକ୍ଷଣ । ଗୁରୁ ବଚନ ଅନୁକ୍ଷଣ ॥
କରନ୍ତି ଏକ ଲକ୍ଷ୍ୟେ ଧ୍ୟାନ । ଲଭିଲେ ବହୁ ତତ୍ତ୍ୱଜ୍ଞାନ ॥
ଦିନେ ସେ ନେଇଗଲେ ଗାଈ । ଅରଣ୍ୟେ ଚରାଇବା ପାଇଁ ॥
ଗାଈ ଚରାଇ ନଦୀକୂଳେ । ଶିଷ୍ୟ ବସିଣ ବୃକ୍ଷମୂଳେ ॥
ମନେ କରନ୍ତି ଆଲୋଚନା । ଏ ବିଶ୍ୱ ପ୍ରଥମ ସର୍ଜନା ॥
ତତ୍ତ୍ୱ ଚିନ୍ତାରେ ମନ ବୁଡ଼ି । ଗଲେ ସେ ଗାଈ କଥା ହୁଡ଼ି ॥
କ୍ରମେ ଦିବସ ଅବସାନ । ଶିଷ୍ୟର ହେଲା ବାହ୍ୟଜ୍ଞାନ ॥
ଦେଖନ୍ତି ତହିଁ ନାହିଁ ଗାଈ । ଖୋଜିଲେ ନାନାଦିଗେ ଧାଇଁ ॥
ନ ପାଇ ଗାଈ ମନଦୁଃଖେ । ଗୁରୁଙ୍କ ପାଶେ ଶୁଷ୍କ ମୁଖେ ॥
ମିଳିଣ କହିଲେ ସକଳେ । ମୁନି ମନରେ କ୍ଷୋଭ କଲେ ॥
ସେ ଗୁରୁ ଶିଷ୍ୟେ ବେନି ଜଣେ । ଆଶ୍ରମ ସନ୍ନିକଟ ବଣେ ॥
ଖୋଜିଲେ ବହୁତ ନିରେଖି । ଫେରିଲେ ଗାଈକି ନ ଦେଖି ॥
ସେ ରାତି କଲେ ଉପବାସ । ମନେ ପାଇଲେ ଅତି ତ୍ରାସ ॥
ସେ ଗାଈ ଆଶ୍ରମର ଧନ । ତାଠାରେ ମୁନିଙ୍କ ଜୀବନ ॥
ତାପସ-ପତ୍ନୀ ପତିବ୍ରତା । ସତତ ଗୋ-ସେବା-ନିରତା ॥
ମହି ତଣ୍ଡୁଳ କୁଣ୍ଡା ଘାସ । ଗାଈକି ନ କରଇ ଗ୍ରାସ ॥
କରନ୍ତି ନାହିଁ ସେ ଭୋଜନ । ଗାଈ ନ ଦେଖି ଅବସନ୍ନ ॥
ବାଛୁରି ଗୁହାଳେ ହମ୍ବାନାଦ । ତାପସ ମଣିଲେ ପ୍ରମାଦ ॥
ଦମ୍ପତ୍ତି ଗୁରୁ ଗୁରୁନାରୀ । ସେ ଗୁରୁଭକ୍ତ ବ୍ରହ୍ମଚାରୀ ॥
କାଟିଲେ ଅନିଦେ ରଜନୀ । ଉଦୟୁ ହୋନ୍ତେ ଦିନମଣି ॥
ଗୁରୁଙ୍କ ଅନୁମତି ପାଇ । ଗଲେ ସେ ଶିଷ୍ୟ ଖୋଜି ଗାଈ ॥
ତାପସ କଲେ ନିତ୍ୟକୃତ୍ୟ । ବ୍ରାହ୍ମଣୀ ଶୋକ-ଅଭିଭୂତ ॥
ସେ ପତିପତ୍ନୀ ବେନି ଜଣ । ନ କଲେ ସେ ଦିନ ଭୋଜନ ॥

. ପିଇଲେ ନାହିଁ ମୁଠା ଜଳ । ବାହୁଣ୍ଡ ଉଡ଼ିଲେ ସକଳ ॥
ରହିଲେ ଶିଷ୍ୟ ବାଟ ଚାହିଁ । ନ ଆସେ ଶିଷ୍ୟ ଅବା ଗାଈ ॥
ସେ ଦିନ ଗଲେ ଉପବାସ । ମନରେ ଉଦ୍‌ବେଳ ତ୍ରାସ ॥
ନାହିଁ ବା ଗାଈ ନାହିଁ ଶିଷ୍ୟ । ଚିନ୍ତନ୍ତି ଏକ ଅହର୍ନିଶ ॥
ଏପରି ଦ୍ୱିତୀୟ ଦିବସ । ଚଳାଇ ରହିଲେ ତାପସ ॥
ଗାଈ ନାହିଁ କି ଶିଷ୍ୟ ନାହିଁ । ଶେଷ ପତିପତ୍ନୀ ବୃଦ୍ଧ ବୃଦ୍ଧି ॥
ରହିଲେ ତିନି ଉପବାସେ । ଏପରି ବହୁଦିନ ମାସେ ॥
ଜାତରେ କାଟନ୍ତି ସେ ଦିନ । ନ ଖାଇ ହେଲେ ତନୁ କ୍ଷୀଣ ॥
ମୁନି ଜାଣିଲେ ଯୋଗଧ୍ୟାନେ । ନାହିଁ ସେ ଧେନୁ ଆଉ ପ୍ରାଣେ ॥
ପତ୍ନୀ ପୃଚ୍ଛନ୍ତି ଅଶ୍ରୁ ଛନ୍ନେ । କଡ଼ କି ଆସେ ଭୂମି ମନେ ॥
ଜୀବନେ ଅଛନ୍ତି କି ଗାଈ । ବ୍ରହ୍ମବତ୍ସ ବା ଦେଖ ନାହିଁ ॥
ଜହ୍ନର କହାନେ ତରୁଣୀ । ସ୍ୱାମୀଙ୍କି ପୃଚ୍ଛେ ପୁଣି ପୁଣି ॥
ଦେଖିଣ ପତ୍ନୀ ଘୋରବ୍ୟଥା । କହିଲେ ସବୁ ମନକଥା ॥
କିପାଇ କାନ୍ଦୁଛ ବିକଳେ । ଦିଶୁଛି ମୋତେ ଯୋଗବଳେ ॥
କେ ମାରୁ ଅବା କେହୁ ଖାଉ । ଧେନୁ ଜୀବନେ ନାହିଁ ଆଉ ॥
ଶିଷ୍ୟ ଆସିବ ଫେରି କାଲି । କି ପ୍ରୟୋଜନ ଆଉ ଭାଳି ॥
ଶୁଣି ଏ ଦାରୁଣ ବଚନ । ସେ ତପ୍ରନାରୀ ଅଚେତନ ॥
ମାସୁ ଅଧିକ ଉପବାସ । ନାହିଁ ଶରୀରେ ପଳେ ମାଂସ ॥
ରହିଛି ମାତ୍ର ଅସ୍ଥିଚର୍ମ । କରନ୍ତି ପୁଣି ଯଥା କର୍ମ ॥
ନାହିଁ ଦେହରେ ତିଳେ ବଳ । ହେଲେ ସେ ବିଶାଦ-ବିହ୍ୱଳ ॥
ତଳେ ପଡ଼ିଲେ ମୂରୁଛିତ । ବ୍ରାହ୍ମଣ ଅତ୍ୟନ୍ତ ଚିନ୍ତିତ ॥
ଶୀତଳ ଜଳ ଦେଲେ ଶିରେ । ବିଞ୍ଚିଲେ ବ୍ୟଜନେ ଧୀରେ ॥
ବ୍ରାହ୍ମଣୀ ପାଇଲେ ଚେତନ । ବିକଳେ କରନ୍ତି ରୋଦନ ॥
ମୁନି କରନ୍ତି ମନସ୍ତାପ । ହେଲା ଗୋ-ହତ୍ୟା ମହାପାପ ॥
କ୍ଷୁଧାରେ ପ୍ରହାରିଲେ ଯଷ୍ଟି । ରହମ ନ ଦେହ୍ନ ପାଦାନ୍ତ ॥
• ବ୍ରାହ୍ମଣୀ ନଷ୍ଟଶୌଚ ସାରି । ଆଣି ଗୋମଣ୍ଡ ନମ୍ରଭାବ ॥

ରଖିଲେ ସ୍ୱାମୀ ପୂଜାସ୍ଥଳେ । ବନ୍ଦିଲେ ତାଙ୍କ ପଦତଳେ ॥
ମକର ମାସ ଡାହାଣିଆ । ଶୀତ ପ୍ରକୋପେ କମ୍ପେ ଦ୍ୱୟା ॥
କ୍ଷୁଧାରେ ଅବସନ୍ନ କାୟା । ସ୍ୱାମୀ ଚରଣେ ବିପ୍ରଜାୟା ॥
ତେଜିଲେ ଅକସ୍ମାତେ ପ୍ରାଣ । ଗାଈ ବିଷୟ କରି ଧ୍ୟାନ ॥
ଶୁଣିଲେ ମୁନି ଜ୍ଞାନବଳେ । ଦୁନ୍ଦୁଭିନାଦ ନଭସ୍ଥଳେ ॥
ଦେଖିଲେ ଦେହୀ ଗଲେ ରଥେ । ପୁଷ୍ପ ପଡ଼ଇ ତାଙ୍କ ପଥେ ॥
ସବତ୍ସା ଧେନୁ ଶତ ଶତ । ଚାଲନ୍ତି ସେ ରଥ ଅଗ୍ରତ ॥
ଦେଖିଣ ମୁନି ହୃଷ୍ଟ ଚିତ୍ତେ । କହିଲେ ଧନ୍ୟ ଅନଢତେ ॥
ଭୂମିର ପତିବ୍ରତାପଣ । ଗୃହିଣୀ ବିହିତ ସାଧନ ॥
ଗୋରୁ ଅତିଥି ପୂଜାବିଧି । ଲଭିଲା ଆଜ ପୂର୍ଣ୍ଣସିଦ୍ଧି ॥
ନିଜ ସୁକୃତ କର୍ମଫଳେ । ତପ ସ୍ୱରଗେ ସୁନିଷ୍ଠଳେ ॥
ଗୋ ସେବା ବ୍ରତ ପୁଣ୍ୟରାଶି । ହୁଅନ୍ତୁ ମରଣୁ ସ୍ୱର୍ଗବାସୀ ॥
ଶିଖି ଲଭନ୍ତୁ ସ୍ୱର୍ଗବାସ । ଗୀତେ ଭଣିଲା ଗୋପ ଦାସ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ଗୋଭ୍ରବନସ୍ଥା ଅନାହାରେ
ଋଷିଦେହୀ ପ୍ରାଣ-ବିୟୋଗେ ନାମ ପ୍ରଥମୋଽଧ୍ୟାୟଃ ।



## ଦ୍ୱିତୀୟ ଅଧ୍ୟାୟ

ପଡ଼ିଛି 'ବ୍ରାହ୍ମଣୀଙ୍କ ଶବ । ମୁନି କରନ୍ତି ବ୍ରହ୍ମ ସ୍ତବ ॥
ଅନପ ଉଦେ ଦିନକର । ଶିଷ୍ୟ ମଥାରେ ମାରି କର ॥
ଅତି ବ୍ୟଥିତ ମନସ୍ତାପେ । ବ୍ୟାକୁଳ କରୁଣ ବିଳାପେ ॥
ଅଙ୍ଗ ଅବଶ ପଥଶ୍ରମେ । ପ୍ରବେଶ ହୋଇଲେ ଆଶ୍ରମେ ॥
ଆଶ୍ରମେ ଦେଖି ବିପରୀତ । ହେଲେ ସେ ଶୋକବିଜଡ଼ିତ ॥

ନରେଶ ଗୁରୁପତ୍ନୀ ଶବେ । କାତରେ ରଡ଼ିଲେ ମାରବେ ॥
ସାରନ୍ତେ ଗୁରୁ ଉପାସନା । କରଣା ଚରଣ ବନ୍ଦନା ॥
ତଥି ସେ ହେଲେ ମନଦୁଃଖେ । ବଚନ ନ ସ୍ଫୁରଇ ମୁଖେ ॥
କହନ୍ତି ଗୁରୁ ଶିଷ୍ୟ ଶୁଣି । କରୁଛ ଶୋକ କାହିଁ ପାଇଁ ॥
ଆଗହୁଁ ଜାଣିଛୁ ମୁଁ ଧ୍ୟାନେ । ଆଶ୍ରମ ଧେନୁ ନାହିଁ ସ୍ଥାନେ ॥
ଏ ତବ ଗୁରୁପତ୍ନୀ ସତୀ । ଧେନୁ ହରଣ ଶୋକେ ଅତି ॥
ନ କରେ ପାନ ବା ଭୋଜନ । ହରାଇ ଅଛନ୍ତି ଜୀବନ ॥
ତୁମ୍ଭେ ଆସିବା ପୂର୍ବକ୍ଷଣେ । ଟଳିଲେ ବନ୍ଦି ମୋ ଚରଣେ ॥
ଯାହା ହେବାର ସେତେବେଳେ । ହେଉଛି ବଳେ କାଳଖେଳେ ॥
ଘଟଣାସ୍ରୋତ ଅବିରତ । ତହିଁ କାହାର ନ ଆୟତ୍ତ ॥
ଅଧିକ ନ କର ବିଳାପ । କସ ଦେଖିଲ କହ ବାପ ॥
କାହିଁ ବା ଥିଲ ଏତେ ଦିନ । ଶ୍ରମେ ଦିଶଇ ତନୁ କ୍ଷୀଣ ॥
ଶିଷ୍ୟ କହଇ ଯୋଡ଼ି କର । ଯାହା ଦେଖିଲି ମୁନିବର ॥
ଭାବିଲେ ହୃଦ ଯାଏ ଫାଟି । ଭୟରେ ନ ଫିଟଇ ପାଟି ॥
ତବ ଆଦେଶ ଘେନି ଶିରେ । ଖୋଜିଲି ବହୁ ନଗାଗ୍ରରେ ॥
ଏ ପୁଣ୍ୟବନ୍ତୁଁ ବହୁ ଦୂରେ । ଭ୍ରମିଲି ନାନା ପଲ୍ଲୀପୁରେ ॥
ଦେଖିଲି ନାହିଁ କାହିଁ ଗାଈ । ସନ୍ଧାନ ନ ମିଳିଲା କାହିଁ ॥
କପରି ଫେରିବି ଆଶ୍ରମେ । ବହୁତ ଚିନ୍ତିଲି ମନେ ॥
ଗାଈର ନ କଲେ ସନ୍ଧାନ । ନଷ୍ଟେ ମୁଁ ହରାଇବି ପ୍ରାଣ ॥
ପୁଣି ଭ୍ରମିଲି ଏ ଚକ୍ରରେ । ଅନେକ ସ୍ଥାନେ ଅନାହାରେ ॥
ବଣ ପଡ଼ିଆ ହାଟ ଗାମ । ଦେଖିଲି ବୁଲି ଅବିଶ୍ରାମ ॥
ଭ୍ରମିଲି କୋଡ଼ିଏ ଦିବସ । କ୍ଷୁଧାରେ ଶରୀର ଅବଶ ॥
ଦେଖିଲି ଶେଷେ ଏକ ସ୍ଥାନେ । ନିଷ୍ଠୁର କଂସାଇ ଦୋକାନେ ॥
ଝୁଲଇ ଊର୍ଦ୍ଧ୍ୱେ ଗାଈମୁଣ୍ଡ । ତଳେ ବସିଛି ମାଂସ କୁଣ୍ଡ ॥
କଂସାଇ କୁଟେ ହାଡ଼ମାନ । ରକତେ ବୁଡ଼ିଛି ସେ ସ୍ଥାନ ॥
କଂସାଇ ପିଲା ଧରି ଛୁରି । ନିକଟେ କାଟଇ ବାଛୁରି ॥

ପଡ଼ିଛି ଅସ୍ଥି ଲୋମ ଚମ । ଦେଖି ହେଲା ମୋ ମଥାଭ୍ରମ ॥
ବୁଝି ମୁଁ ନ ପାରିଲି ସତ୍ତ୍ୱ । ଅଜ୍ଞାନେ ପଡ଼ିଗଲି ମତ୍ତ ॥
ପୁଣି କ୍ଷଣକେ ଚେତା ପାଇ । ଚିତ୍ତରେ ଏ ନୁହଇ ଗାଈ ॥
ହେବ ବା ଆନ ଅନ୍ୟ ପଶୁ । ଶୋକ ଅଧୈର୍ଯ୍ୟ ମୋହବଶୁଁ ॥
ପୁଚ୍ଛିଲି କଂସାଇଙ୍କ ଯାଇ । ତୁମେ କି କାଟ୍ ଅଛ ଗାଈ ॥
ରୁଷ୍ଟ କଣ୍ଠେ ସେ ମତେ ଚାହିଁ । ଭର୍ତ୍ସଣେ କହିଲା କଂସାଇ ॥
ତୋରୁ ହୁଡ଼େ କି ଅକ୍ଷି କଣ । ଛଦ୍ମେ ପଶୁରେ ବ୍ରାହ୍ମଣ ॥
ଦେଖୁଛୁ ଦୁଇ ଆଖି ଖୋଲି । ପଶୁରୁ ଆହୁରି କି ବୋଲି ॥
ତହୁଁ ମୁଁ ଝଗଡ଼ି ହେଲି । ଜାଣି ଚୋଟିଲା ତାର ମନ ॥
କ୍ରୋଧ ନ କର ଶୁଣ ଭାଇ । ମୋ ମନେ କଷ୍ଟ ହୁଏ ନାହିଁ ॥
ମୁଁ ବ୍ରହ୍ମଜ୍ଞାନୀ ଥାଏଁ ଯବେ । କେବେ ଦେଉଁ ଦେଲେ ମୋ ନୟନେ ॥
ଗୋଚ୍ଛେଦ ଦୃଶ୍ୟ ଆସି ନାହିଁ । ତେଣୁ ମୁଁ ପଚାରିଲି ଭାଇ ॥
ଏ ରହସ୍ୟ ବଳଦ କି କହ । କର ମୋଠାରେ ଅନୁଗ୍ରହ ॥

## ଘାତକ ଜବାବ

କିମ୍ବା ତୁମେ ଥାଅ ବନେ । ଏଥି ଅଇଲ କି କାରଣେ ॥
ଏ ସବୁ ତତ୍ତ୍ୱର କି ପାଇଁ । ଜାଣିଲ ନୁହେ ଏହା ଗାଈ ॥
କି ଅବା ତୁମେ ଗୁପ୍ତ ଚର । ମନରେ କରୁଛ ବିଚାର ॥
ଆସିଛ ଏ ଗାଈ ଦେଖାଇ । ମୋଠାରୁ କଥା ନେବା ପାଇଁ ॥
ପଶୁର ମତେ କଣ ଜାଇ । ଛଦ୍ମେ ଡାକ ଭାଇ ଭାଇ ॥
ତହୁଁ ମୁଁ ସକଳ ବୃତ୍ତାନ୍ତ । କହିଲି ତାକୁ ଆଦ୍ୟ ପ୍ରାନ୍ତ ॥
ଶୁଣି ମୋଠାରୁ ସବୁକଥା । ହେଲା ତା ମନେ ଗୁରୁବ୍ୟଥା ॥
ଧେନୁ ପ୍ରାପ୍ତିର ବିବରଣ । କଲା ସେ ବିସ୍ତର ବର୍ଣ୍ଣନ ॥
ସଂକ୍ଷେପେ କହେଁ ଗୁରୁଦେବ । ଅଧିକ କହିଲେ କି ହେବ ॥
ସମ୍ବାଦ ଅନ୍ତରେ ଯାଥିବା । ବସିଲେ ଜଣେ ଗୋରୁବଳା ॥

ବ୍ରାହ୍ମଣ ଆଦ୍ୟ ଯେତେ ଜାତି । ଗୋରୁ ଭଜସ୍ୱେ ଛନ୍ତି ମାତି ॥
ଚଳତେ କରୁଛନ୍ତି ହଳ । ସରିଲେ ସେ ବଳବ ବଳ ॥
ବିକନ୍ତି ବୃଦ୍ଧକାଳେ ହାଟେ । କଂସାଇ କିଣିନେଇ କାଟେ ॥
ଗୋ ସେବା ନ କରନ୍ତି ନର । ସରବେ ଚଷନ୍ତି ଗୋଚର ॥
ତେଣୁ ନ ପାଇ ତୃଣଜଳ । କଙ୍କାଳ ମାତ୍ର ଟଳ ଟଳ ॥
ଗୋରୁଙ୍କୁ ନ ଦେଇ ଭୋଜନ । ନିଷ୍ଠୁରେ ଖାଉଛନ୍ତି ଜନ ॥
ଗୋ-ବୃଷ ନ ପାଇ ଆହାର । ହେଲେଣି ଅତି ନାରଖାର ॥
ତେଣୁ ବଳଦ ବୃଷ ଯେତା । ଚଳେଣି ସକଳେ ଘାଡା ॥
କଂସାଇ ଗୋରୁ ବଧ କରେ । ବେଚନ୍ତି ସମସ୍ତେ ନେଇ ତାରେ ॥
ତଥାପି ଅଳ୍ପ ଧନ ପାଇ । ବିକନ୍ତି କଂସାଇକି ଗାଈ ॥
ଆଦର ଯେତେନେତ ଭକତ । ନାହିଁ ତାହାଙ୍କ ଗୋରୁ ପ୍ରତି ॥
ଗୋମାତା ନଗରୁ ଯେ ଦେବତା । ନାହିଁ ଆଜ ଏ ଶାସ୍ତ୍ରକଥା ॥
ନକଟେକ ଚଣ୍ଡାଳ ପାଷଣ୍ଡ । ଛକେ ମାରନ୍ତି ଚୋରୁ ଷଣ୍ଢ ॥
ବିକନ୍ତି ନେଇ ତାଙ୍କ ଚର୍ମ । ଲୁପ୍ତ ହେଲାଣି ଅସି ଧର୍ମ ॥
ଶୁଣି ଏ ସର୍ବ ବିବରଣ । ମୁଖେ ମୋ ନ ଆସେ ବଚନ ॥
ଆବର କହିଲ କଂସାଇ । ହାଟେ କିଣିଲି ଏ ଗାଈ ॥
ବ୍ରାହ୍ମଣ ଜଣେ ଦେଲ ଟଙ୍କା । କହିଲା ବିକୁଛି ନ ହିଁକ ॥
ଏ ଗାଈ ନଦେବ ଅଛି ପର । ନାହିଁକି ଏହାର ବାଛୁର ॥
ଏଭଳି ବୁଢ଼ୀ କାଳିଆ ଗାଈ । ଖୋଜିଲେ କାହିଁ ତ ନ ମିଳଇ ॥
କାହୁଁ ପାଇଛ ଏହୁ ଗାଈ । ମୁଁ ଅବା ଆଣିଛି ଚୋରାଇ ॥
କପଟ ନ କର ବ୍ରାହ୍ମଣ । କହିଲ ଭୂଦେବ ସେବାୟନ ॥
କେଜାଣି କାହାର ଏ ଗାଈ । ଗଲା ମୋହର କ୍ଷେତ ଖାଇ ॥
ବାହୁଡ଼ି ନ ଥିଲା ଦଣ୍ଡରେ । ବାନ୍ଧି ରଖିଲି ଆଣି ଘରେ ॥
ରଖିଲି ଜଣକ ତକାଇ । କେହି ନଇଲ ଖୋଜ ଗାଈ ॥
ତେଣୁ ମୁଁ କରୁଛି ବିକ୍ରୟ । କିଣ ନ କର ମନେ ଭୟ ॥
ତୁମେ ତ ଭୁଞ୍ଜିବ ନିକାଶ । କରି ଭକ୍ଷ ଏହା ମାଂସ ॥

ବ୍ରାହ୍ମଣଠାରୁ ଶସ୍ତା ପାଇ । କଣି ମୁଁ କାଟୁଛି ଏ ଗାଈ ॥

ମୁନି ଉବାଚ

ନ କହ ମତେ କିଛି ଆଜ । ଶୀଘ୍ର ମୋର ଏ ଗାବ ଯାଉ ॥
ଗୋ- ଜାତି ଦୁର୍ଦ୍ଦଶା ଏତର । ଅଛି କେମନ୍ତେ ବସୁନ୍ଧରା ॥
ହତ୍ୟା କମନ୍ତେ ଗୋ-ବଂଶ । ହେଲାଣି ଧର୍ମମୂଳ କ୍ଷୟ ॥
ଏତେକ କହି ମୁନି କ୍ଷଣେ । ନବେଦେ ରହିଲେ ମଉନେ ॥
ଶିଷ୍ୟ ରହିଲେ ଶଙ୍କାଚିତ୍ତେ । ଭଣିଲ ଯାକ ଗୋପ ଗୀତେ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମୁନି ସମୀପେ ଶିଷ୍ୟ ଗୋହରଣ କଥା
ବର୍ଣ୍ଣନେ ନାମ ଦ୍ୱିତୀୟୋଽଧ୍ୟାୟଃ ।



## ତୃତୀୟ ଅଧ୍ୟାୟ

ସଙ୍କର ଅନ୍ତେ ତପୋଧନ । ଭାଷିଲେ ଫିଟାଇ ନୟନ ॥
ଶୁଣ ହେ ବତ୍ସ ବ୍ରହ୍ମବଂଶ । ସ୍ଥିର କରିଛି ମୁଁ ବିଚାର ॥
ନାହିଁ ଏ ଦେହେ ପ୍ରୟୋଜନ । ମରିବି କରି ଅନଶନ ॥
କାଳର ଗତି ଭୟଙ୍କର । ପାପେ ସନ୍ତୃପ୍ତ ସର୍ବ ନର ॥
ବ୍ରାହ୍ମଣ ସର୍ବେ ହକେ ଗାଈ । ମ୍ଳେଚ୍ଛ ଘାତକେ ଧନ ପାଇ ॥
ନିଜସ୍ୱ ପରସ୍ୱ କରାରେ । ଧର୍ମ କି ଅଛି ଏ ସଂସାରେ ॥
ଅପରାପର ବର୍ଣ୍ଣମାନେ । ନ ରହି ସ୍ୱବ୍ରତ ବିଧାନେ ॥
କରନ୍ତି ଯେବେ ଗୋ-ବଣିଜ୍ୟ । ଜାଣ ଏ ବଜ୍ରପାତ ସମସ୍ତ ॥
ଗୃହସ୍ଥ ଯେବେ ଗୋରୁ ପ୍ରତି । ନ କରେ ଆଦର ଭକତି ॥
ଗୋ-ସେବା ନ କରନ୍ତି ନାରୀ । ବାଞ୍ଛନ୍ତି ନାହିଁ ଭୂଷଣାକାର ॥

ପୋଛନ୍ତି ନାହିଁ ସେ ଗୁହାକ । ଆସିଲା ଏ ଭଷମ କାଳ ॥
ଏ କଳିଯୁଗେ ଲୋକଗଣ । ଲୋଡ଼ନ୍ତି ଆପଣା ମରଣ ॥
ଯାଇଛନ୍ତି ସବୁ ଧର୍ମ ନାଶ । ଦେବତା ଗୋରୁରେ ବିଶ୍ୱାସ ॥
ଚଳାଉଥିଲା ଧର୍ମ ନାବ । ସେ ଏବେ ଘଟିଲାଣି ଅଭାବ ।
ଏ ଶେଷ ସମସ୍ତ ପ୍ରବେଶ । ଏଣିକି ମହା ଘୋର କ୍ଳେଶ ॥
ଗୋରୁ ଯେ ସାକ୍ଷାତେ ଦେବତା । ଜୀବର ହରତା କରତା ॥
ଗୋରୁ ଅମୃତ ରସଦାତା । ଜଗତ ଜନ ପିତାମାତା ॥
ଭବ ସଂସାରେ ମହାଧନ । ମରଣେ ମୁକତି କାରଣ ॥
ଏ ତଥ୍ୟ ହୁଡ଼ିଲେଣି ଲୋକେ । ମରିବେ ଏବେ ରୋଗଶୋକେ ॥
ଦେଖି ଲୋକଙ୍କରେ ଏ ବେଭାର । ଗୋ-ଜାତି ପ୍ରତି ଅତ୍ୟାଚାର ॥
ଜାଣୁଛି ଏ ଘୋର ଦୁର୍ଗତି । ପାପେ ବୁଡ଼ିବ ବସୁମତୀ ॥
ଛାଡ଼ିବି ଏବେ କଳେବର । ବଞ୍ଚିବା ନୁହେଁ ଶ୍ରେୟସ୍କର ॥
ମୋର ଏ ପତ୍ନୀ ପତିବ୍ରତା । ଥିଲା ସତତ ଧର୍ମରତା ॥
ଥିଲା ତପୃର ସେବା ବ୍ରତେ । ସେ ଏବେ ଛାଡ଼ିଗଲା ମତେ ॥
ଆଶ୍ରମ ଧେନୁ ଲାଗି ନାରୀ । ମଲା ଏ ଜାଣ ବ୍ରହ୍ମଚାରୀ ॥
ଧେନୁ ଆଶ୍ରମୁଁ ଯିବା ଦିନୁଁ । ରହିଲା ଜଳପାନ ତନୁଁ ॥
ଭୂମେ ଆସିବା ପୂର୍ବକ୍ଷଣେ । ଗଲା ଏ ଅମର ଭୁବନେ ॥
ଗଲା ଅପୂର୍ବ ଦିବ୍ୟ ରଥେ । କୁସୁମ ବରଷିଲା ପଥେ ॥
ଏ ନାରୀ ଅତି ଭାଗ୍ୟବତୀ । ଥିଲା ତପସ୍ୟା ମୂର୍ତ୍ତିମତୀ ॥
ମୋ ତପ ଏହାର ସଙ୍ଗତେ । ସମାପ୍ତ ହେଲା ଏ ଜଗତେ ॥
ମୋ ଭଳି କ୍ଷଣେ ଧୈର୍ଯ୍ୟ ଧରି । ରହି ନ ପାରେ ଏ ସୁନ୍ଦରୀ ॥
ଏ ଏବେ ସ୍ୱର୍ଗଲୋକେ ଯାଇ । ଥିବ ମୋହର ବାଟ ଚାହିଁ ॥
ନ କର ବିଳମ୍ବ ଅଧିକ । ହେବି ମୁଁ ସେ ପୁର ପଥିକ ॥
ପୁଣି ଆଶ୍ରମ ଧେନୁ ବଧ । ହୋଇଛି ସେ ଅନ୍ୟ ଆପଦ ॥
ସେ ହତ୍ୟା ପାପ ଶିରେ ବହି । ଗୋ-ରକ୍ତେ ସିକ୍ତ ଦେଖି ମହୀ ॥
ବଞ୍ଚି ରହିବା ଅକଲ୍ୟାଣ । ତେଜିବି ଯୋଗେ ଶୀଘ୍ର ପ୍ରାଣ ॥

ଗୋହତ୍ୟା ପାପୁଁ ମୁକ୍ତ ଆଶେ । ରହିବି ପୁଣି ଉପବାସେ ॥
କଠୋର ତପସ୍ୟା ପାଳନ । ଦେହ ଶୁଖିବ ଯୋଗାସନେ ॥
ଏହା ମୋ ମନେ ସୁନିଶ୍ଚିତ । ଏଥିରେ ନ ହେବ ସଂଶୟ ॥
ଶୁଣିଲ ମୋର ମନକଥା । ନ ପାଅ ବାବୁ ମର୍ମେ ବ୍ୟଥା ॥
କର ଲୌକିକ ବ୍ୟବହାର । ଏ ଗୁରୁପତ୍ନୀଙ୍କ ସତ୍କାର ॥
ମୋ ଆଶୀର୍ବାଦ ଘେନ ଶିରେ । ପ୍ରସ୍ଥାନ କର ନିଜ ଘରେ ॥
ତୁମ୍ଭ ସେବାରେ ମୁଁ ପ୍ରସନ୍ନ । ସରିଛି ତୁମ୍ଭ ଅଧ୍ୟୟନ ॥
ଲଭିଛ ଶାସ୍ତ୍ରେ ପାରଗତା । ତୁମ୍ଭେ ସୁଜ୍ଞାନୀ ସୁବକ୍ତା ॥
ସାଧିବ ବୃଦ୍ଧି ମୋ ଉଦ୍ଦେଶ୍ୟ । କି ଆଉ କହିବି ବିଶେଷ ॥
ଶିଷ୍ୟ କହନ୍ତି ପଶ୍ଚାତାପେ । ମୁଁ ଯେ ମଜ୍ଜିଲି ମହାପାପେ ॥
ମୋ ଦୋଷେ ହେଲା ଏ ଗୋବଧ । ଘଟିଲା ସମସ୍ତ ବିପଦ ॥
ଏ ଗୁରୁପତ୍ନୀ ସୁଲକ୍ଷଣୀ । ପ୍ରତ୍ୟକ୍ଷେ ଥିଲେ ମୋ ଜନନୀ ॥
ପାଳିଲେ ମତେ କି ଆଦରେ । ତନୁ ତେଜିଲେ ମୋ ଦୋଷରେ ॥
ଏବେ ଗୋ-ବଧ ମହାପାପ । ସ୍ତ୍ରୀ ବଧ ପାପେ ନାହିଁ ମାପ ॥
ତା ପରେ ପୁଣି ଗୁରୁନାଶ । ମୁଁ କି ତିପାପୁଁ ହେବି ପାର ॥
ଆପଣ ମୋ ଜୀବନ ରକ୍ଷ । ଜାଣନ୍ତୁ ଦୁଃଖ ଜ୍ଞାନ-ଚକ୍ଷୁ ॥
ମତେ ଓଟିଛି ଏ ଭବ ଜଳେ । ଲଙ୍ଘାରେ ମିବ ନିତ୍ୟସ୍ଥଳେ ॥
କିପାଇଁ ଏତେ ପାପ କରି । ରହିବି ମୁଁ ବା ଦେହ ଧରି ॥
ଏ ଯେ ଦୁସ୍ତର ପାପରାଶି । ଚାପିଛି ମତେ ଏବେ ଆସି ॥
ଏଥିରୁ କହ କି ପ୍ରକାରେ । ଉଦ୍ଧାର ପାଇବି ସଂସାରେ ॥
ସକଳ ଜଗ ମତେ ଶୂନ୍ୟ । ନାହିଁ ମୋହର ତିଳେ ପୁଣ୍ୟ ॥
ହେ ତପୋଧନ ଦୟା କରି । ଉପାୟ ମୋତେ ଦିଅ କହି ॥
ନ ହେଲେ ନିଜ ସଙ୍ଗେ ନିଅ । ସଦା ଚରଣ ସେବା ଦିଅ ॥
ବୁଦ୍ଧି ବିବେକ ମୋର ନଷ୍ଟ । ହୃଦେ ହେଉଛି ଗୁରୁ କଷ୍ଟ ॥
ଉଜ୍ଜ୍ୱଳ ଆଲୋକ ଦେଖାଅ । କର୍ତ୍ତବ୍ୟ ପଥ ମୋ ବତାଅ ॥

## ଗୁରୁ ଉବାଚ

ବଟକ ଶୁଦ୍ଧ ବ୍ରହ୍ମଚାରୀ । ଦେବ ସକଳ ପାପୁଁ ପାରି ॥
ଏ ଯେ ଜଗତ କାଳକାର । ଏଠାରେ କାହାର କ ବଶ ॥
ସମସ୍ତ କାଳର ଆୟତ୍ତେ । ଚଳନ୍ତି ନିଜ ନିଜ ପଥେ ॥
କରନ୍ତି ନିଜ କର୍ମ ଖେଳା । ମରନ୍ତି ଯେବେ ଆସେ ବେଳା ॥
ସ୍ଥାବରୁ ବ୍ରହ୍ମ ପର୍ଯ୍ୟନ୍ତେ । ଜନ୍ମ ମରଣ ଏହିମତେ ॥
ଲାଗିଛି ନିତ୍ୟ ଇହଲୋକେ । କହିଁ ଅଧୀର ଦୁଃଖ ଶୋକେ ॥
ତୁମର ଯୌବନ ଆଗମ । ରୂପ ସ୍ୱଭାବ ଅନୁପମ ॥
ହୋଇଛ ଶାସ୍ତ୍ରେ ଧୂରନ୍ଧର । ଏବେ ଗୃହସ୍ଥାଶ୍ରମ କର ॥
ସଂସାରେ ରହି ନିଜ କର୍ମେ । ଲୋକଙ୍କୁ ପ୍ରବର୍ତ୍ତାଅ ଧର୍ମେ ॥
ଗୋ-ସେବା କର ଅନୁକ୍ଷଣ । ଗୋ-ହିତେ ବ୍ୟୟ କର ଧନ ॥
ଗୋ-ମୁଖେ ଦିଅ ହେ ଆହାର । ଗୋ-ସେବା ଲୋକରେ ପ୍ରଚାର ॥
ଗୋ-ରକ୍ଷା ଉପାୟ ବିଧାନ । ସୁଯୋଗ୍ୟ ପାତ୍ରେ ଧେନୁଦାନ ॥
କର ସନ୍ତତ ମନତୋଷେ । ପଡ଼ିବ ନାହିଁ ହତ୍ୟା ଦୋଷେ ॥
ଏଣେ ସାଧିବ ଦେବ କାର୍ଯ୍ୟ । ହୋଇବ ଧନ୍ୟ ପୁଣ୍ୟ ଆର୍ଯ୍ୟ ॥
ବିତାଅ ନାହିଁ ଆଉ କାଳ । ଅଧିକ ମନରେ ନ ଭାଳ ॥
ଏପରି ଶବ ଏବେ ନିଅ । ଗୋମନ୍ତ୍ର ସ୍ଥାରେ ଯୁକ୍ତ ଦିଅ ॥
ଶଙ୍କିତ ଶାନ୍ତ ବେଗେ ସାର । ଆସ ମୋ ପାଶେ ବ୍ରହ୍ମଚାରୀ ॥
କରିବ ବ୍ରତ କର୍ମ ଶେଷ । ଦେବି ତୁମ୍ଭଙ୍କୁ ଉପଦେଶ ॥
ଗୋ-ତତ୍ତ୍ୱ ଗୋ-ମାହାତ୍ମ୍ୟମାନ । କରିବ କଣ୍ଠରେ ବ୍ୟାଖ୍ୟାନ ॥
ଆସିବ ଗୋ-ଭକ୍ତି ମମତା । ପୂଜିବେ ଲୋକେ ଗୋ-ଦେବତା ॥
ଏ କାର୍ଯ୍ୟେ ତୁମ୍ଭ ପାପ କ୍ଷୟ । ହୋଇବ ଜାଣ ହେ ନିଶ୍ଚୟ ॥
ଗୁରୁ ଆଦେଶ ଘେନି ଶିରେ । ଶିଷ୍ୟ ଗୋମନ୍ତ୍ର ନଗ୍ରଣାରେ ॥
କରି ସମ୍ବୃତ କର୍ମ ଶେଷ । ଗୁରୁ ସମୀପେ ପରବେଶ ॥
ଯୋଗ ପୂଜିତ ହୋଇ ମୁନି । ରହିଲେ କିଛି କ୍ଷଣ ତୁନି ॥

ଏସ୍ମାର ଗୋ-ମହାତ୍ମ୍ୟ ଗାଥା । ଶିଷ୍ୟବତ୍ସଳ ଜ୍ଞାନଦାତା ।
କହିଲେ ଶାସ୍ତ୍ରରୁ ଉଦ୍ଧାର । ଶୁଣ ସକଳ ନରନାରୀ ।
ପିବ ଏଥିରେ ପାପକ୍ଷୟ । ହେବ ସୁକୃତ ଭାଗ୍ୟୋଦୟ ॥
ମିଳିବ ସୁଧେନୁ ସୁବାସ । କହେ ପାମର ଗୋପ ଦାସ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ଶିଷ୍ୟ ସମ୍ବାଦେ
ନାମ ତୃତୀୟୋଽଧ୍ୟାୟଃ ।



## ଚତୁର୍ଥ ଅଧ୍ୟାୟ

### ଗୁରୁ ଉବାଚ

ଗୋ-ଜାତି ମାହାତ୍ମ୍ୟ ବିସ୍ତାର । କେବା କହିବ ବୁଦ୍ଧିବନ୍ତ ।
ଯାହାର ଶୃଙ୍ଗେ ପାଦ ଯାଏ । ଅଙ୍ଗେ ବସନ୍ତି ଦେବତାଏ ॥
ବେଦରେ ମହିମା ଯାହାର । ଗାଇଲେ ମୁନି ବାରମ୍ବାର ॥
ଅନନ୍ତେ ଦେଇଣ ଆହୁତି । ଇନ୍ଦ୍ରାଦି ଦେବେ କଲେ ସ୍ତୁତି ॥
ଦେ ଇନ୍ଦ୍ର ବର୍ଷି ସୁଧା ଜଳ । ଦେଇ ଉଦ୍ଭିଦ ଫୁଲ ଫଳ ॥
ଗୋରୁ ଚରନ୍ତି ବନସ୍ତରେ । ଦିଅନ୍ତି ଦୁଗ୍ଧ ଘୃତ ଯାଗେ ॥
ଦସ୍ୟୁ ରାକ୍ଷସେ କରି ନାଶ । ଗୋରୁଙ୍କୁ ଦିଅନ୍ତି ସେ ଗ୍ରାସ ॥
ବେଦ ବଦନେ ଲଭି ତୁଷ୍ଟି । ଇନ୍ଦ୍ର କରନ୍ତି ସୁଧା ବୃଷ୍ଟି ॥
ସତ୍ୟାଦି ଯୁଗେ ଏହି ମତେ । ଗୋ-ଜାତି ବଢ଼ିଲେ ଜଗତେ ॥
ମୁନି ଆଶ୍ରମେ ଧେନୁ ଧନ । କରନ୍ତି କାମନା ପୂରଣ ॥
ତେଣୁ ସେ କାମଧେନୁ ନାମେ । ଖ୍ୟାତି ଲଭିଲେ ତିନି ଧାମେ ॥
ଯଯାତି ଆଦି ନରଗଣ । କରି ଅସଂଖ୍ୟ ଧେନୁଦାନ ॥
ଅର୍ଜିଲେ ଅକ୍ଷୟ କୀରତି । ପୁଣ୍ୟେ ପାଇଲେ ବସୁମତୀ ॥

ତ୍ରେତାରେ ରାମ ମହାରାଜ । ଗୋ-ରକ୍ଷ ପାଳ କଲେ ରାଜ୍ୟ ॥
ଦ୍ୱାପରେ ନଭେ ଦେବ ହରି । ଗୋପେ ମାନବଦେହ ଧରି ॥
କଲେ ଗୋକୁଳ ସ୍ଥିତ ଯେତେ । ତାହା ବା କହିବ ମୁଁ କେତେ ॥
ପୂର୍ବେ ଏପରି ମହାଜନ । ପାଳିଲେ ଆଦରେ ଗୋଧନ ॥
ତେଣୁ ଐଶ୍ୱର୍ଯ୍ୟ ସୁଖଭୋଗୀ । ଥିଲେ ସେ ସର୍ବଦା ନିରୋଗୀ ॥
ମରଣେ ଗଲେ ପୁଣ୍ୟସ୍ଥାନେ । ଅତି ଦୁର୍ଲ୍ଲଭ ଦେବଯାନେ ॥
ଗୋ-ଲୋକ ଦେବଲୋକ ପରେ । ସୁରଭି ଯେ ସ୍ଥାନେ ବିହରେ ॥
ସୁରଭି ସନ୍ତତି ଗୋ-ଜାତି । ତ୍ରିଲୋକେ ଲଭିଛନ୍ତି ଖ୍ୟାତି ॥
ନିଜେ ଶଙ୍କର ଗୋ-ଗୌରବେ । ବାହନେ ବାଛିଲେ ବୃଷଭେ ॥
ବେଦ ପୁରାଣ ଇତିହାସ । କରେ ଗୋ-ମାହାତ୍ମ୍ୟ ପ୍ରକାଶ ॥
ସେ ସର୍ବ ସ୍ରଷ୍ଟା ପିତାମହ । ସଂକ୍ଷେପେ କରିଣ ସଂଗ୍ରହ ॥
ମହାଭାରତ ଯୁଦ୍ଧ ଶେଷେ । ଯୁଧିଷ୍ଠିରଙ୍କୁ ଉପଦେଶେ ॥
କହିଲେ ଜନ ଉପକାରେ । ଭୀଷ୍ମ ତା ପ୍ରଚାର ସଂସାରେ ॥
ତେବେ ଖଣ୍ଡିବ ତୁମ୍ଭ ପାପ । ବିନଷ୍ଟ ହୋଇବ ତ୍ରିତାପ ॥

## ଶିଷ୍ୟ ଉବାଚ

ହେ ଗୁରୁ କଲ ଅନୁଗ୍ରହ । କହିଲେ ଯାହା ପିତାମହ ॥
ଗ୍ରନ୍ଥେ ପଢ଼ିଛି ସେ ଚରିତ । ତଥାପି ଲୋଡ଼ଇ ମୋ ଚିତ୍ତ ॥
ଶୁଣିବି ତବ ମୁଖଁ ବାରେ । ବର୍ଣ୍ଣିବ ଅପୂର୍ବ ପ୍ରକାରେ ॥
ଏହା ଯେ ଶେଷ ଉପଦେଶ । ବିସ୍ତାରି କହ ହେ ବିଶେଷ ॥
ଆଜ କି ମୋର ହେବ ଭାଗ୍ୟ । ତବ ଚରଣେ ମହାଭାଗ ॥
ବସି ସେ ଉପଦେଶାମୃତ । ଶୁଣି ହୋଇବି କୃତ୍ୟ କୃତ୍ୟ ॥
ଆଜ ଏ ଜନ୍ମେ ନାହିଁ ଦେଖା । ନ କର ଗୁରୁହେ ଉପେକ୍ଷା ॥
ଗୋ-ସେବା ମୋ ଜୀବନ ବାଞ୍ଛା । କରିବ ତାଅ ପୂର୍ଣ୍ଣ ଇଚ୍ଛା ॥
ତବ ଆଦେଶେ ତପୋଧନ । ଗୋ-ବ୍ରତେ ଦେବ ଏ ଜୀବନ ॥

ତେଣୁ ଗୋ-ଜାତି ହିତ କଥା । ଉତ୍ପତ୍ତି ପାଳନ ବ୍ୟବସ୍ଥା ॥
ବଣଦେ କହ ହେ ତାପସ । ତୃପତ ହେଉ ମୋ ମାନସ ॥
ଏତେ କହି ସେ ଶିଷ୍ୟବର । ଧରିଣ ଗୁରୁଙ୍କ ପୟର ॥
ସାଷ୍ଟାଙ୍ଗେ ପଡ଼ିଲେ ଚରଣେ । ଗୀତରେ ଗୋପ ଦାସ ଭଣେ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ଗୁରୁପଦେ ଗୋ-ତତ୍ତ୍ୱ ଜ୍ଞାପନାୟ
ଶିଷ୍ୟ ନିବେଦନେ ନାମ ଚତୁର୍ଥୋଽଧ୍ୟାୟଃ ।



## ପଞ୍ଚମ ଅଧ୍ୟାୟ

### ଗୁରୁ ଉବାଚ

କୌରବ ପାଣ୍ଡବ ସମରେ । ଭୀଷ୍ମ ଆହତ ପାର୍ଥ ଶରେ ॥
ସମ୍ମୁଖେ ଶିଖଣ୍ଡିଙ୍କି ଦେଖି । ରହିଲେ କୋଦଣ୍ଡ ଉପେକ୍ଷି ॥
ଭୀଷ୍ମ ଆଜନ୍ମ ବ୍ରହ୍ମଚାରୀ । ନାରୀ ବା ନାରୀରୂପଧାରୀ ॥
ଦେଖିଲେ ନ କରିବେ ରଣ । ଏହା ତାଙ୍କର ଦୃଢ଼ପଣ ॥
ତେଣୁ ସେ ନ ରହି ସମରେ । ଶୋଇଲେ ଶରଶଯ୍ୟାପରେ ॥
ଉତ୍ତରାୟଣ ପରବେଶେ । ଯିବେ ଇଚ୍ଛାରେ ସ୍ୱର୍ଗଦେଶେ ॥
ସଂଗ୍ରାମ ଅନ୍ତେ ଧର୍ମରାଜ । ଫେରି ପାଇଲେ ନିଜ ରାଜ୍ୟ ॥
ଆସିଂଲ ପିତାମହ ପାଶେ । ଶାସନ ବିଧି ଶିକ୍ଷା ଆଶେ ॥
ସଙ୍ଗେ ଅନନ୍ତ ଭାଇ ଚାରି । ଯଦୁନନ୍ଦନ ଚକ୍ରଧାରୀ ॥
ବିଦୁର ଧୃତରାଷ୍ଟ୍ର ଆଦି । ଅନେକ ଋଷି ବ୍ରହ୍ମବାଦୀ ॥
ଭୀଷ୍ମେ ପୁଚ୍ଛିଲେ ଯୁଧିଷ୍ଠିର । ତୁମ୍ଭେ ତ ଗୁଡ଼ିକ ଶରୀର ॥
ଉତ୍ତରାୟଣ ପରବେଶେ । ତେଣୁ ଉଚିତ ଉପଦେଶେ ॥
ଦେଖାଅ ମତେ ଧର୍ମପଥ । ପୂରୁ ମୋହର ମନୋରଥ ॥

ସେ ଶାସ୍ତ୍ର ଜ୍ଞାନବନ୍ତ ଅତି । ଦେଖିଣ ଯୁଧିଷ୍ଠି ଭକତି ॥
କହିଲେ ନାନା ତତ୍ତ୍ୱମାନ । ପ୍ରବୃତ୍ତି ନିବୃତ୍ତି ସଦ୍‌ଜ୍ଞାନ ॥
ଶାସନଂଶାନ୍ତ ରାଜଧର୍ମ । ଗୃହସ୍ଥାଶ୍ରମେ ଯେତେ କର୍ମ ॥
ସକଳ ଧର୍ମେ ଦାନ ସାର । ସର୍ବ୍ବରେ ପର ଉପକାର ॥
ଦାନେ ଗୋଦାନ ଶ୍ରେଷ୍ଠ ଅତି । କହିଲେ ଶାସ୍ତ୍ର ମହାମତି ॥
ବୁଝାଇ ଗୋଦାନ ମହତ୍ତ୍ୱ । କହିଲେ ଯେତେ ଯେତେ ତତ୍ତ୍ୱ ॥
ଶୁଣ ତା ମନ କରି ସ୍ଥିର । ଶୁଣିଲେ ଯଥା ଯୁଧିଷ୍ଠିର ॥

## ଭୀଷ୍ମ ଉବାଚ

ହେ ଯୁଧିଷ୍ଠିର ନରପତି । ଗୋଦାନେ ମିଳଇ ଯେ ଗତି ॥
କହୁଛୁ ଏବେ ତା ନିର୍ଣ୍ଣୟ । ଶୁଣ କରିଣ ଏକଲୟ ॥
ଗୋ-ଜାତି ଉଦ୍ଭବ ବୃତ୍ତାନ୍ତ । କହିବି ଆଗେ ଶୁଣ ତାତ ॥
ସ୍ୱୟମ୍ଭୁ ବ୍ରହ୍ମା ଦକ୍ଷେ ରାଇ । କହିଲେ ପ୍ରଜାସୃଷ୍ଟି ପାଇଁ ॥
ତେଣୁ ସେ ଦକ୍ଷ ପ୍ରଜାପତି । ପ୍ରଜା ସୃଜନେ କଲେ ମତି ॥
ନ କରି ବୃତ୍ତି ସୁବନ୍ଦବତ । ପ୍ରଜା ସୃଜିବା ଅନୁଚିତ ॥
ଅମୃତ ଆଶ୍ରୟେ ଯେସନ । ସ୍ୱର୍ଗେ ବସନ୍ତି ଦେବଗଣ ॥
ତେସନେ ସୁବୃତ୍ତି ଆଶ୍ରୟ । କରି ବଞ୍ଚିବେ ପ୍ରଜାଚୟ ॥
ଅଚର ଚହୁଁ ଶ୍ରେଷ୍ଠ ଚର । ଚରଙ୍କ ମଧ୍ୟେ ଶ୍ରେଷ୍ଠ ନର ॥
ନରେ କରନ୍ତି ନାନାକର୍ମ । ଉନ୍ନତ ବୃତ୍ତି ଦାନଧର୍ମ ॥
ସେ ଫଳ ପାଇବେ ଅମୃତ । ତେଣେ ହୋଇବେ କୃତ୍ୟ କୃତ୍ୟ ॥
ତେଣୁ ଅମୃତ ସୃଷ୍ଟି ଆଣେ । ସେ ଦକ୍ଷ ପାଞ୍ଚିଲେ ମାନସେ ॥
ହୋଇଣ ଘୋର ଅଭିଭୂତ । ଆପେ ସେ ପିଇଲେ ଅମୃତ ॥
ଅମୃତ ପାନେ ମୁଖେ ବାସ । ବାହାରେ ସୁଗନ୍ଧ ନିଃଶ୍ୱାସ ॥
ନିଃଶ୍ୱାସୁଁ ସୁରଭି ଜନମ । ଅତି ସୁନ୍ଦର ଅନୁପମ ॥
ସୁରଭି ଦକ୍ଷ ଆଦ୍ୟସୁତା । ଦେବ ମାନବ ସୁଖଭୂତା ॥

ସୁରଭି ତହୁଁ ଯେତେ ଜାତ । ଗୋମାତା ବୋଲି ଲୋକେ ଖ୍ୟାତ
ହେଲେ ଅସଂଖ୍ୟ ଗୋ ବୃଷଭ । ଏତର ଜଗତେ ସମ୍ଭବ ॥
କପିଳା ଆଦି ଶତ ଶତ । ଧେନୁ ସୁରଭି ତହୁଁ ଜାତ ॥
ତହୁଁ ଅମୃତ ଶୁଦ୍ଧ ଧାର । ସ୍ରବଣ ଭସାଇଲା ଧର ॥
ଫେଣେ ସାଗର ଉର୍ମି ସମ । ଅମୃତେ ପୃଥ୍ୱୀ ମନୋରମ ॥
ହୁଟେଭି ଲେଳୁଁ ଫେଣ ବନ୍ଧ । ପଡ଼ିଲା ଆସି ଯେବେ ମଣ୍ଡି ॥
ହୁଡ଼ିଲା ଆଗେ ହର ଶିରେ । ଥିଲେ ସେ ସେକାଳେ ମଣ୍ଡିରେ ॥
ସେ ହର କୋପ କଲେ ମନେ । ଚାହିଁଲେ ଲଲାଟ ନୟନେ ।
ସୁରଭି ସୁତସୁତାଚୟ । ମନରେ କଲେ ମହାଭୟ ।
ରୁଦ୍ରନୟନ ଜ୍ୟୋତି ଯୋଗେ । ଶୋଭିଲେ ଭସ୍ମେ ନାନାରଙ୍ଗେ ॥
ଗିଲେ ଯଥା ରବିକର । ଘନେ ଅମ୍ବରେ ଜଳଧର ।
ଦେଖି ଧେନୁଙ୍କ ଆଦ୍ୟ ରଙ୍ଗ । ମହେଶ ପ୍ରକୋପେ ବଭଙ୍ଗ ॥
କ୍ରୋଧେ କହନ୍ତି ଦକ୍ଷ ବାଣୀ । ଶମ୍ଭୋ କୋପିଲେ ଶୂଳପାଣି ।
ଗୋରସ ନୁହଇ ଉଚ୍ଛିଷ୍ଟ । ଶମ୍ଭୁ ନ କର ମନେ କଷ୍ଟ ।
ଏ ଯେ ଅମୃତ ଶୁଦ୍ଧ ସ୍ରାବ । ପଡ଼ିଲା କୁମ୍ଭ ଶିରେ ଭବ ॥
ଏଣେ ହୋଇଲ ପ୍ରଜାନ୍ୱିତ । ଏ ନୁହେ କେବେହେଁ ଦୂଷିତ ॥
ହାପ ଅମୃତ କରି ପାନ । କରେ ତା ଜଗତକୁ ଦାନ ॥
ଉଚ୍ଛିଷ୍ଟ ନୁହେ ସେ ଅମୃତ । ତେଣେ ଜଗତ ଉପକୃତ ।
ଅନିଳ ସୁବର୍ଣ୍ଣ ଅନଳ । ଯେସନେ ମହୋଦଧି ଜଳ ॥
ନୁହେ ଅଶୁଦ୍ଧ ବ୍ୟବହାରେ । ଗୋରସ ବୁଝ ସେ ପ୍ରକାରେ ।
ଏ ଯେତେ ସୁରଭି ସନ୍ତତି । ପାଳିବେ ସର୍ବ ବସୁମତୀ ।
ଦେଇଣ ଘୃତ ଦଧି ପୟ । ସାଧିବେ ପ୍ରଜାଗଣ ଶ୍ରେୟ ।
ତେଣୁ ଏ ଗୋ-ଜାତି ମଙ୍ଗଳ । ବାଞ୍ଛିଲୁ ଜଗତେ ସକଳ ।
ଏତେ କହନ୍ତେ ପ୍ରଜାପତି । ଶାନ୍ତ ହୋଇଲେ ପଶୁପତି ।
ସେ ଦକ୍ଷ ଗୋ-ସଙ୍ଗେ ବୃଷଭେ । ଦେଲେ ସନ୍ତୋଷେ ମହାଦେବେ ॥
ହୃଷ୍ଟ ହୋଇ ପଞ୍ଚାନନ । କଲେ ସେ ବୃଷଭେ ବାହନ

ଆବର ଚାଲି କଲେ ଧ୍ୱଜ । ତେଣୁ ବୋଲନ୍ତି ବୃଷଧ୍ୱଜ ॥
ପାଳିଲେ ସେ ଯେଣୁ ଗୋ-ଜାତ । ଦେବେ କହନ୍ତି ପଶୁପତି ॥

## ସୂତ ଉବାଚ

ପ୍ରଜା ସୃଷ୍ଟିରେ ପୂର୍ବେ ଜାତ । ଗୋ ଜାତି ପ୍ରଜା ଜ୍ୟେଷ୍ଠଭ୍ରାତ ॥
ଗୋରୁ ଚଳାଏ ପ୍ରଜାବୃତ୍ତି । ଦଅଇ ଆହାର ସମ୍ପତ୍ତି ॥
ନନ୍ଦେ ଶଙ୍କର ଶିରେ ଥାଇ । ପଡ଼ିଲା ଆଦ୍ୟ କ୍ଷୀର ଧାଇଁ ॥
ସେ ଗାଈ ଜଗତ ପାଳନ । ଅତି ପବନ ସୁଶୋଭନ ॥
ପ୍ରଜାଗଣର ପ୍ରାଣଦାତ୍ରୀ । ସର୍ବ ଶୁଭଦା ଲୋକମାତା ॥
ତେଣୁ ଗୋ-ଜାତି ସେବା କର । ସୁଖ ଲଭିବେ ନରନାରୀ ॥
ଗୋ-ଜାତି ଜନ୍ମ ବିବରଣ । ପାଣ୍ଡବେ କଲେ ଯା ବର୍ଣ୍ଣନ ॥
ଆଦ୍ୟରେ ଭୀଷ୍ମ ପିତାମହ । ଯେ ଏହା ପଢ଼େ କରି ସ୍ନେହ ॥
କଳ କଳୁଷ ଯାଏ ତରି । ଲଭେ ସମ୍ପଦ ସୁତ ଶିରୀ ॥
ଶ୍ରଦ୍ଧାରେ କରେ ଯେ ଗୋଦାନ । ଲଭେ ସେ ସ୍ୱର୍ଗେ ଉଚ୍ଚସ୍ଥାନ ॥
ଗୋ-ଜାତି ପୂଜା ଉପକାରେ । ଧୁଜଳେ ଦକ୍ଷ ଏ ସଂସାରେ
ଏ ତତ୍ତ୍ୱ ବୁଝି ପ୍ରଜାଗଣ । ସନ୍ତତ କର ଗୋପାଳନ ॥
ହେବ ଅଶେଷ ସୁଖ ହିତ । ପାମର ଗୋପ ଭଣେ ଗୀତ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟ ମହାଭାରତାନ୍ତର୍ଗତେ
ଅନୁଶାସନକେ ପର୍ବଣି ଗୋ-ପ୍ରଭାବ କଥନେ
ନାମ ପଞ୍ଚମୋଽଧ୍ୟାୟଃ ।



# ଷଷ୍ଠ ଅଧ୍ୟାୟ

## ଶିଷ୍ୟ ଉବାଚ

ଶୁଣି ଗୋ-ଜନ୍ମ ଇତିହାସ । ମନେ ମୋ ପରମ ଉଲ୍ଲାସ ।
ସେ ଧର୍ମସୁତ ବିଚକ୍ଷଣ । ପୁଚ୍ଛିଲେ ଆଉ କି ପ୍ରଶନ ।
ଭୀଷ୍ମ କା କଲେ କି ଉତ୍ତର । କହ ବିସ୍ତାରି ମୁନିବର ॥

## ଗୁରୁ ଉବାଚ

ପ୍ରଣମି ଭୀଷ୍ମ ପାଦେ ବୀର । ପୁଚ୍ଛିଲେ ରାଜା ଯୁଧିଷ୍ଠିର ॥
ଗୋ-ଜାତି ମାହାତ୍ମ୍ୟ ଶ୍ରବଣେ । ଅତି ଆଗ୍ରହ ମୋର ମନେ ॥
ଗୋ-ଜାତି ଗୌରବ ବଖାଣ । ତୁମେ ତ ସର୍ବ ତତ୍ତ୍ୱ ଜାଣ ।
ଭୀଷ୍ମ ଅନନ୍ତ ସର୍ବଜାଣ । କହିଲେ ନାନା ଉପାଖ୍ୟାନ ॥
ନହୁଷ ରାଜା ଇତିବୃତ୍ତ । ଆଦ୍ୟେ ବର୍ଣ୍ଣିଲେ ଗଙ୍ଗାସୁତ ॥
ଗଙ୍ଗା ଯମୁନା ସଙ୍ଗମସ୍ଥଳେ । ଚ୍ୟବନ ଋଷି ଯୋଗବଳେ ॥
ନିଶ୍ୱାସ ରୋଧି କାଠ ପରି । ଜଳେ ରହିଲେ ତପସ୍ୱୀ ॥
ମାଛ ଧରିବା ଆଶେ ଥରେ । କେଉଟ ପଶି ନଦୀମାରେ ॥
ଚୌଦିଗେ ବିଛାଇଲେ ଜାଲ । ଗୋଳ କଲେ ସେ ନଦୀ ଖାଲ ।
ଟାଣି ଆଣିଲେ ଜାଲ କଳେ । ମୁନି ଆସିଲେ ମାଛ ତୁଲେ ॥
ଜାଲରେ ଛନ୍ଦି ହୋଇ ତଟେ । ଆଶ୍ଚର୍ଯ୍ୟ ମଣିଲେ କେଉଟେ ॥
ମୁନିଙ୍କି ଦେଖି ଭୟ ପାଇ । ନହୁଷ ରାଜା ପାଶେ ଯାଇ ॥
କେଉଟମାନେ ଜଣାଇଲେ । ରାଜା ଆଇଲେ ନଦୀକୂଳେ ॥
ପ୍ରଣମି ଚ୍ୟବନ ଚରଣ । କି ଆଜ୍ଞା କର ତପୋଧନ ॥
ପୁଚ୍ଛନ୍ତେ ଏସନେ ନୃପତି । କହନ୍ତି ସେ ଚ୍ୟବନ ଯତି ॥
କେଉଟ ତୋଷି ମାଛ ମୂଲେ । ମାଛଙ୍କୁ ଛାଡ଼ ନଦୀ ଜଳେ ॥
ମୁଁ ମଧ୍ୟ କେଉଟଙ୍କ ଧନ । ମୋ ମୂଲ୍ୟ ଦିଅ ହେ ରାଜନ ॥

ତେବେ ମୁଁ ପାଇବ ମୁକତି । କେଉଟ ହାତୁଁ ନରପତି ॥
ଶୁଣି ସନ୍ତୁଷ୍ଟ ସେ ନରେଶ । ସହସ୍ର ସୁବର୍ଣ୍ଣ ଆଦେଶ ॥
କଲେ କେଉଟଙ୍କ ଦେବା ପାଇଁ । ମୁନି କହନ୍ତି ରାଜା ସ୍ୱାମି ॥
ଏ ମୂଲ୍ୟ ମୋ ଉଚିତ ନୁହେ । ଶତ ସହସ୍ର ରାଜା କହେ ॥
ଲକ୍ଷେ ନୁହଇ ମୋର ମୂଲ୍ୟ । କୋଟିଏ କହନ୍ତି ଭୂପାଳ ॥
କୋଟିଏ ନୁହେ ସମ ମୋର । ରାଜାଙ୍କୁ ନ ଦିଶେ ଉତ୍ତର ॥
ରାଜ୍ୟରୁ ମୋର ଅର୍ଦ୍ଧ ଅଂଶ । ନଅନ୍ତୁ କୈବର୍ତ୍ତ ତାପସ ॥
ନୁହେଁ ଏ ମୋ ମୂଲ୍ୟ ସମାନ । ଶୁଣିଣ ରାଜା ହତଜ୍ଞାନ ॥
ଏକାଳେ ଋଷି ଗବଜାତ । ହେଲେ ସେଠାରେ ଉପଗତ ॥
ନୃପେଶ କହିଲେ ବୁଝାଇ । ଚ୍ୟବନ ମୂଲ୍ୟ ଦିଅ ଗାଇ ॥
ବର୍ଣ୍ଣେ ବ୍ରାହ୍ମଣ ସର୍ବୋତ୍ତମ । ତାଙ୍କର ମୂଲ୍ୟ ନୁହେଁ ଧନ ॥
ଧେନୁ ଉତ୍ତମ ପ୍ରାଣିକୂଳେ । ସେ ଏକା ସମ ବିପ୍ର ତୁଲେ ॥
ତେଣୁ ଚ୍ୟବନ ମୂଲେ ଗାଈ । ଦିଅ ତୁରିତେ ନର ସାଇଁ ॥
ହୋଇ ସନ୍ତୁଷ୍ଟ ସେ ନୃପତି । ପଚ୍ଛରେ ମୁନି ଅନୁମତି ॥
ଉଠ ଚ୍ୟବନ ବିପ୍ର ଋଷି । କୈବର୍ତ୍ତେ କହଇ ମୁଁ ଖୁସି ॥
ତୁମର ମୂଲ୍ୟେ ଦେବ ଧେନୁ । ସନ୍ତାପ ଛାଡ଼ ମୁନି ମନୁ ॥
ଚ୍ୟବନ ହେଲେ ହରଷିତ । ରାଜାଙ୍କୁ କହନ୍ତି ଏମନ୍ତ ॥

## ଚ୍ୟବନ ଉବାଚ

ଗୋଧନେ କିଣା ହେଲ ମୁହିଁ । ଗୋଧନ ସମ ଧନ ନାହିଁ ॥
ଗୋ-ଗୁଣ ଶ୍ରବଣ କୀର୍ତ୍ତନ । ଧେନୁ ଦର୍ଶନ ଧେନୁ ଦାନ ॥
ଅଟଇ ସର୍ବ ଶୁଭପ୍ରଦ । ଖଣ୍ଡାଇ ଦୁରିତ ବିପଦ ॥
ଲକ୍ଷ୍ମୀ ମିଳଇ ଗୋ-ସେବନେ । ନ ପଡ଼େ ପାପ କଥା ମନେ ॥
ଗୋ-ଜାତି ହେଲେ ସୁପ୍ରସନ୍ନ । ଲୋକଙ୍କୁ ମିଳେ ସୁଖେ ଅନ୍ନ ॥
ଗୋ-ଜାତି ଯଜ୍ଞରୁ ପ୍ରଧାନ । କରନ୍ତି ଯେଣୁ ଧ୍ରୁବ ଦାନ ॥

ସ୍ୱାହା ସ୍ୱଧାଦ ବଷଟ୍‌କାର । ଯଜ୍ଞର ଯେତେ ଉପସ୍କର ॥
ଗୋ-ଜାତି ଚର୍ତୁ ହୁଏ ଲଭ୍ୟ । ଅଶେଷ ଗୋ-ଜାତି ପ୍ରଭାବ ॥
ଗୋରୁ ବହନ୍ତି ଦ୍ରବ୍ୟ ରସ । ଦେବେ ହୁଅନ୍ତି ସର୍ବ ବଶ ॥
ଗୋ ତନୁ ଯେବେ କ୍ଷୀରଧାର । ପବିତ୍ର ଅମୃତ ଆହାର ॥
ଗୋ-ଜାତି ସର୍ବ ଲୋକମାତା । ଦେବତା ମାନବେ ବନ୍ଦିତା ॥
ଗୋ-ଜାତି ନିଜ ତନୁ ତେଜେ । ଅନଳ ସମାନ ବିରାଜେ ॥
ସର୍ବ ଗୋ-କୁଳ କରେ ବାସ । ନିର୍ଭୟେ ମାରଇ ନିଶ୍ୱାସ ॥
ଅତି ପବିତ୍ର ସେହି ସ୍ଥାନ । ହରଇ ଜନ ପାପମାନ ॥
ଆଦରେ ପୂଜିଲେ ଗୋ-ଜାତି । ପାଏ ମାନବ ସ୍ୱର୍ଗଗତି ॥
ପୂରଇ ସକଳ କାମନା । କଲେ ଗୋ-ପାଳନ ଅର୍ଚ୍ଚନା ॥
ସ୍ୱର୍ଗକୁ ପାହାଚ ପରାଏ । ଗୋ-ଜାତି ଜାଣ ନର ରାଏ ॥
ସ୍ୱର୍ଗେ ପୂଜନ୍ତି ଦେବଗଣ । ସାଦରେ ଗୋ-ଜାତି ଚରଣ ॥
ଧେନୁ ସାକ୍ଷାତେ ଦେବୀ ରୂପ । ଏ ତଥ୍ୟ ଭଲେ ବୁଝ ନୃପ ॥
ଗୋ-ଜାତି ମାହାତ୍ମ୍ୟ ଅଶେଷ । ମୁଁ କବା କହିବି ନରେଶ ॥
ମୁନି ବଚନ ଶେଷେ ସର୍ବେ । ବନ୍ଦିଲେ ଚରଣେ ମାରବେ ॥
କେଉଟମାନେ କରଯୋଡ଼ି । କହନ୍ତି ମୁନି ପାଦେ ପଡ଼ି ॥
ହେ ବିପ୍ର କ୍ଷମା କର ଦୋଷ । ଆମ୍ଭେ ସକଳେ ତୁମ୍ଭ ଦାସ ॥
ଗୋ ଧନେ ନାହିଁ ପ୍ରୟୋଜନ । ଏ ଗୋରୁ ନିଅନ୍ତୁ ଆପଣ ॥
କୈବର୍ତ୍ତଗଣ କଥା ଶୁଣି । ଅତି ସନ୍ତୁଷ୍ଟ ହେଲେ ମୁନି ॥
ପାଇ ସେ ମୁନି ଶୁଭାଶିଷ । କୈବର୍ତ୍ତେ ଗଲେ ସ୍ୱର୍ଗନନ୍ଦନ ॥
ଜାଲରେ ଯେତେ ମାଛ ଥିଲେ । ସେ ସର୍ବେ ମଧ୍ୟ ସ୍ୱର୍ଗେ ଗଲେ ॥
ନହୁଷ ମୁନି ଆଶୀର୍ବାଦେ । ସାମ୍ରାଜ୍ୟ କଲେ ଅପ୍ରମାଦେ ॥

ଗୁରୁ ଉବାଚ

ଗୋ-ଜାତି ମାହାତ୍ମ୍ୟ ବର୍ଣ୍ଣନ । କଲେ ଯା ମହର୍ଷି ଚ୍ୟବନ ॥

ସଂସାରେ ବୁଝିଅ ଏ ତତ୍ତ୍ୱ । ଘୋ ଜାତି ଗୌରବ ମହତ୍ତ୍ୱ ।
କୋଟି ସୁବର୍ଣ୍ଣ ରାଜ୍ୟ ଧନ । ନୁହଇ କଛୁ ଗୋ ସମାନ ॥
ଗୋରୁ ଦେବତା ବୋଲି ଜାଣି । ପୂଜନ୍ତି ଗୃହେ ଗୃହେ ପ୍ରାଣୀ ।
ଏତେଣେ ମିଳଇ ସୁଖ ଯଶ । କହଇ ଦୀନ ଗୋପି ଦାସ ॥

ଇତି ଶ୍ରୀ ଗୋ ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଅନୁଶାସନେକେ ପର୍ବଣି
ଚ୍ୟବନ ଗୋ ମାହାତ୍ମ୍ୟ କଥନେ ନାମ ଷଷ୍ଠୋଽଧ୍ୟାୟଃ ।



## ସପ୍ତମ ଅଧ୍ୟାୟ

ଆବର ଗୋଦାନ ପ୍ରସଙ୍ଗ । କହନ୍ତି ଭୀଷ୍ମ ମହାଭାଗ ।
ଗୋଦାନ ସର୍ବଦାନେ ସାର । ଏଣେ ସନ୍ତୁଷ୍ଟ ଦେବନର ॥
ତପସ୍ୱୀଗଣେ ଧେନୁଶ୍ରେଷ୍ଠ । ସେ ଯେଣୁ ହଏ ଘୃତ ପୁଷ୍ଟ ॥
ଶ୍ରୀ ମହାଦେବ ଉମାପତି । ଗୋ ଗୋଷ୍ଠେ କରନ୍ତି ବସତି ॥
କରନ୍ତି ତପ ଆଚରଣ । ଗୋଗଣ ମଧ୍ୟେ ପଞ୍ଚାନନ ।
ଗୋଗଣ ସଦା ବ୍ରହ୍ମଲୋକେ । ବିହାର କରନ୍ତି ବିଶୋକେ ॥
ସିଦ୍ଧ ବ୍ରହ୍ମର୍ଷିଗଣ ନିତି । ଗୋପଦେ କରନ୍ତି ପ୍ରଣତି ॥
ମାଗନ୍ତି ଘୃତ ଦୁଗ୍ଧ ଦଧି । ଲଭନ୍ତି ଯେଣେ ସର୍ବସିଦ୍ଧି ॥
ଗୋଚର୍ମ ଅସ୍ଥି ଶୃଙ୍ଗ ବାଳ । ହୋଇ ଲୋକ ଉପକାର ॥
ସହି ବରଷା ଖରା ଶୀତ । ଗୋରୁ ସାଧନ୍ତି ଲୋକ ହିତ ॥
କର୍ମ କରନ୍ତି ଦିନରାତି । ଜଗତ ହିତେ ଗୋରୁ ଜାତି ॥
କାନ୍ଦି ବା କେବେହେଁ ଗୋଗଣ । ନ କହେ ଆପଣା କଷଣ ॥
ଭୋଗନ୍ତି ଯେତେ ଦୁଃଖରାଶି । ସହନ୍ତି ଯେସନେ ଉଦାସୀ ॥
ତେଣୁ ଗୋ ବ୍ରହ୍ମଜ୍ଞାନୀ ପ୍ରାଏ । ଅନ୍ତେ ପରମ ପଦ ପାଏ ।
ଗୋରୁ ବ୍ରାହ୍ମଣ ଏକ ସମ । କହନ୍ତି ସର୍ବେଙ୍କ ଉତ୍ତମ ।
ଯେରନ୍ତିଦେବଙ୍କ କାରଣ । ଗାଏ ଅଦ୍ୟାପି ବସୁମତୀ ।
ପୂର୍ବେ ସେ କଲେ ମହାଯାଗ । ଦେବେ ଅର୍ପିଲେ ହବିର୍ଭାଗ ।

ସେ ରନ୍ତିଦେବ ନରପତି । ପଶୁରେ ବଢ଼ାଲେ ଗୋ ଜାତି ॥
ସେ ପଶୁଗଣ ଚର୍ମଚୟେ । ଚରମଣ୍ୱତୀ ନଦୀ ବହେ ॥
ସେ ମହାପଙ୍କେ ଗଲା ନାଶ । ଗୋରୁଜାତିର ପଶୁଦୋଷ ॥
ପଶୁଦୋଷରୁ ହୋଇମୁକ୍ତ । ଗୋ ଜାତି ଦାନ ଉପଯୁକ୍ତ ॥
ଉତ୍ତମ ସୁଜ୍ଞାନୀ ବ୍ରାହ୍ମଣେ । ତୋଷଇ ଯେହୁ ଧେନୁଦାନେ ॥
ତାହାର ସେ ସକଳ ଦୁର୍ଗତି । ନ ଭୋଗେ କେବେହେଁ ଖପତି ॥
ସହସ୍ରେ ଗୋଦାନ ଯେ କରେ । ମରଣେ ନରକୁ ନିସ୍ତରେ ॥
ଏ ଜନ୍ମେ ସଦା ପାଏ ଜୟ । ଜାଣ ହେ ତାତ ନିଃସଂଶୟ ॥
ଅମୃତ ସାକ୍ଷାତେ ଗୋ କ୍ଷୀର । କହନ୍ତି ଦେବ ସୁନାଶିର ॥
ତେଣୁ ଯେ କରେ ଧେନୁଦାନ । ସେ କରେ ଅମୃତ ପ୍ରଦାନ ॥
ହୋମରେ ଆହୁତି ଯେ ଘୃତ । ଦେବଙ୍କୁ ହୁଏ ସେ ଅମୃତ ॥
ଘୃତରୁ ଯଜ୍ଞ ଧୂପଜାତ । ଦେବତା ତହିଁରେ ତୃପତ ॥
ଗୋଦାନ ହୋମ ଦ୍ରବ୍ୟଦାନ । ତେଣୁ ଏ ଉଭୟ ସମାନ ॥
ବୃଷଭ ଧେନୁ ଗଣପତି । ସାକ୍ଷତେ ସ୍ୱରଗ ମୂରତି ॥
ତେଣୁ ଯେ ଉତ୍ତମ ବ୍ରାହ୍ମଣେ । ତୋଷଇ ବୃଷଭ ପ୍ରଦାନେ ॥
ସେ ସର୍ବଲୋକେ ପୂଜାପାଏ । ଇହ ସଂସାରେ ପ୍ରାଣ କ୍ଷୟେ ॥
ଗୋ ଜାତି ସର୍ବ ପ୍ରାଣୀ ପ୍ରାଣ । ଜାଣ ହେ କୁରୁ-ଭୂଷଣ ॥
ତେଣୁ ଯେ କରେ ଧେନୁଦାନ । ସେ କରେ ଜୀବନ ପ୍ରଦାନ ॥
ଗୋ ସର୍ବ ଭୂତର ଶରଣ । ତେଣୁ ଯେ କରଇ ଗୋଦାନ ॥
ହୁଏ ଶରଣ ସର୍ବଭୂତେ । ପାଏ ସେ ଦିବ୍ୟ ଗତି ଅନ୍ତେ ॥
ବଧ ନିମନ୍ତେ ଗୋରୁଦାନ । କଦାପି ନ କରିବ ଜନ ॥
ନୃଶଂସ ନିର୍ଦ୍ଦୟ ଘାତୁକେ । କି ଅବା ପାଷାଣ୍ଡ ନାସ୍ତିକେ ॥
କେବେ ହେଁ ଗୋରୁ ଦେବ ନାହିଁ । ଦେଲେ ନରକେ ଗତି ପାଇ ॥
ଅଥବା ଗୋ ଜୀବିକା ଯାର । ଗୋରୁ ନ ଦେବ ତାକୁ ନର ॥
ନ ମାନ ମହର୍ଷି ବଚନ । ଏ ଲୋକମାନଙ୍କୁ ଯେ ଜନ ॥
ଦିଏ ବା ବିକେ ଧନ ଲୋଭେ । ପଡ଼େ ସେ ଅକ୍ଷୟ ରୌରବେ ॥

ବାଝ ମରଣ୍ଡ ରୋଗା ଗାଇ । ଦାନରେ ଦେବା ନ ଯୋଗାଇ ॥
ଯେ ଗାଈ ଥକନ୍ତି ବା କ୍ଷୀଣ । କି ଅବା ଯେହୁ ଅଙ୍ଗହୀନ ॥
ସେ ଗାଈ ନ କରିବ ଦାନ । ସେପରି ଦାନ ଅକାରଣ ॥
ଦଶ ସହସ୍ର ଧେନୁଦାନ । ଯଥାବିଧିରେ କଲେ ଜନ ॥
ଇନ୍ଦ୍ର ସଙ୍ଗତେ ସେ ସ୍ୱର୍ଗରେ । ପ୍ରାଣାନ୍ତେ ପ୍ରମୋଦେ ବିହରେ ॥
ଯେ କରେ ଲକ୍ଷେ ଧେନୁଦାନ । ଲଭେ ଅକ୍ଷୟ ସ୍ୱର୍ଗ ସ୍ଥାନ ॥
ଗୋଦାନେ ମିଳେ ଯେ ସୁକୃତ । ଦେବେ ତହିଁରେ କୃତାକୃତ୍ୟ ॥
ଗୋଦାନ ମାହାତ୍ମ୍ୟ ଏପରି । ସେ ଧର୍ମସୁତ ଦଣ୍ଡଧାରୀ ॥
ଶୁଣି ହୋଇଲେ ତୁଷ୍ଟ ଅତି । ବିଅ ହେ ଜନେ ଏବେଣ ମତି ॥
ବୁଝି ଗୋ-ଜାତି ଉପକାର । ପାଳବ ତାଙ୍କୁ ନିରନ୍ତର ॥
ସୁଖାନ୍ଧ ଦେଖି ଶ୍ରଦ୍ଧାରତେ । ବିଅ ଆପଣ କ୍ଷେତ୍ରେ ॥
ଲଭିବ ଅଶେଷ କଲ୍ୟାଣ । କହନ୍ତି ଗୋପ ଅକିଞ୍ଚନ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଆନୁଶାସନକେ ପର୍ବଣି ଭୀଷ୍ମ ଗୋଦାନ ଫଳ କଥନେ ନାମ ସପ୍ତମୋଽଧ୍ୟାୟଃ ।



## ଅଷ୍ଟମ ଅଧ୍ୟାୟ

### ଯୁଧିଷ୍ଠିର ଉବାଚ

ହେ ଭୀଷ୍ମ କୁରୁ ପିତାମହ । ଦୟା ବହନ୍ତି ମତେ କହ ॥
କ୍ଷତ୍ରିୟ ବୈଶ୍ୟ ଭୂମିଦାନ । ବ୍ରାହ୍ମଣ କରେ ତା ଗ୍ରହଣ ॥
ଏପରି ଅଛି କେଉଁ ଦାନ । ଦେଇପାରିବ ଯା ସବୁ ବର୍ଣ୍ଣ ॥
ବେଦେ ଯେ ଦାନର ପ୍ରଶଂସା । ସହସ୍ରେ କହ ମହାଯଶା ॥

## ଭୀଷ୍ମ ଉବାଚ

ଗୋ କନ୍ୟା ଭୂମି ତିନ ଦାନ । ଫଳରେ ଅଟନ୍ତି ସମାନ ॥
ଦେଲେ ଏ ଦାନ ଯଥାବିଧି । ହୁଏ ସକଳ ଫଳସିଦ୍ଧି ॥
ଏ ତିନ ମଧ୍ୟରେ ଗୋ ଦାନ । ପ୍ରଶଂସେ ଜନସାଧାରଣ ॥
ଗୋ ଦାନେ ସତ୍ୟ ଫଳ ଲଭ୍ୟ । ସେ ପୁଣି ଅଧିକ ସୁଲଭ ॥
ଗୋରୁ ସକଳ ଭୂତମାତା । ସକଳ ଜନସୁଖଦାତା ॥
ଯେ ନର ବାଞ୍ଛେ ସ୍ୱର୍ଗବୃଦ୍ଧି । ସେ ନିତ୍ୟ ହୋଇ ସ୍ଥିରବୁଦ୍ଧି ॥
କରିବ ଧେନୁ ପ୍ରଦକ୍ଷିଣ । ହେବ ତା କାମନା ପୂରଣ ॥
କ୍ରୋଧରେ ପକାଇ ଚରଣ । ଗୋଗୋଷ୍ଠେ ନ ଗୃଳିବ ଜନ ॥
ଗୋସ୍ଥାନ ଦେବସ୍ଥଳୀ ସମ । ଗୋ ଜାତି ଦେବତା ପ୍ରତିମ ॥
ଯଜ୍ଞାର୍ଥେ ଗୋରୁ ପ୍ରୟୋଜନ । କରନ୍ତି ଭୂମି କରଷଣ ॥
ଭୂମି କର୍ଷଣେ ଅନ୍ନଲଭ । ତେଣେ ବଞ୍ଚନ୍ତି ସର୍ବ ଜୀବ ॥
ଯଜ୍ଞରେ ସନ୍ତୁଷ୍ଟ ଦେବତା । ଏଣୁ ଗୋ ସର୍ବ ଶୁଭଦାତା ॥
ରକ୍ଷିବ ଗୋରୁଙ୍କୁ ଯତନେ । ନିର୍ମଳ ସୁକୋମଳ ସ୍ଥାନେ ॥
ଦଉଡ଼ାଇବ ନାହିଁ କେବେ । ଯଷ୍ଟିରେ ଧଇଁସଇଁ ହେବେ ॥
ଗୋରୁଙ୍କୁ ନ ରଖିବ ରୋଷେ । କିବା କଠିନ ରୁକ୍ଷ ଦେଶେ ॥
ତୃଷା ଆତୁର ହୋଇ ଗାଈ । ଯାହା ଆଡ଼କୁ ଚାଏ ଚାହିଁ ॥
ସେ ଯେବେ ନ ହରେ ତା ଶୋଷ । ସବଂଶେ ଯାଏ ନିଶ୍ଚେ ନାଶ ॥
ବାସଭବନ ଶ୍ରାଦ୍ଧସ୍ଥାନ । ଆଦରେ ଦେବ ଆସ୍ତରଣ ॥
ହୁଅଇ ଶୁଦ୍ଧ ଯାର ମନେ । ତା ଚର୍ମ କେ ଶୁଦ୍ଧ ଭୂତଳେ ॥
ନ କରି କାହୁଁ ହିଁ ଗିରସ । ଗୋରୁଙ୍କୁ ଦିଅଇ ଯେ ଘାସ ॥
ପ୍ରତ୍ୟହ ପାଳଇ ନିଯୁତ । କରଷେ ଯାଏ ଏହି ବ୍ରତ ॥
ଲଭଇ ପୁତ୍ର ଧନ ଯଶ । ସର୍ବ ଅଶୁଭ ଯାଏ ନାଶ ॥
ଦୁଃସ୍ୱପ୍ନ କେବେ ସେ ନ ଦେଖେ । ସବଂଶେ ସଦା ରହେ ସୁଖେ ॥

## ଯୁଧିଷ୍ଠିର ଉବାଚ

କି ଭଳି କଲେ ଧେନୁଦାନ । କହିବା ଶାସ୍ତ୍ରର ପ୍ରମାଣ ॥

## ଭୀଷ୍ମ ଉବାଚ

ଅସାଧୁ ସ୍ୱଭାବ ହେ ନର । ଯେ କରେ ପାପିଷ୍ଠ ଆଚାର ॥
ସେ ଲୋଭୀ କବୀ ମିଛ କହେ । ଗୋ-ଦାନ ନେବା ସେ ଯୋଗ୍ୟ ନୁହେ ॥
ଶୁଦ୍ଧ ଯାହାର ଆଚରଣ । ଯେ ସାଧେ ଅପର କଲ୍ୟାଣ ॥
ସକଳ ଭୂତେ ଭାଞ୍ଚେ ହିତ । ଦାନର ପାତ୍ର ସେ ବିହିତ ॥
ତାଙ୍କର ଧର୍ମ କର୍ମବଳ । ସାଧଇ ଦାତାର ମଙ୍ଗଳ ॥
ପାତ୍ର ନ ଦେଖି ଦେଲେ ଦାନ । ଯାଏ ସେ ମାତ୍ର ଅକାରଣ ॥
ଅପାତ୍ରେ ଯେ ଦାନ ପ୍ରଦତ୍ତ । ଫଳେ ସେ ଫଳ ବିପରୀତ ॥

## ସୂତ ଉବାଚ

ସେ ଭୀଷ୍ମ ଜ୍ଞାନୀ ମହାବୁଦ୍ଧି । ଧେନୁ ପ୍ରଦାନ ନାନାବିଧି ॥
ଗୋ ଜାତି ମାହାତ୍ମ୍ୟ ବିଶେଷ । ବୁଝାଇ ଦେଲେ ଉପଦେଶ ॥
ସେ ଉପଦେଶ ମାନି ଜନେ । ଲାଗନ୍ତୁ ସଦା ଗୋ-ପାଳନେ ॥
କରନ୍ତୁ ଗୋ-ପାଳନ ଶିକ୍ଷା । ଦୀନ ଗୋପର ଏହି ଇଚ୍ଛା ॥
ଏଣେ ମିଳିବ ସର୍ବସିଦ୍ଧି । ହୋଇବ ଧନଜନ ବୃଦ୍ଧି ॥

**ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଆନୁଶାସନିକେ ପର୍ବଣି ଗୋଦାନପାତ୍ର ଗୁଣବର୍ଣ୍ଣନେ ନାମ ଅଷ୍ଟମୋଽଧ୍ୟାୟଃ ।**



# ନବମ ଅଧ୍ୟାୟ

## ଭୀଷ୍ମ ଉବାଚ

ଯେ କରେ ଗୋଧନ ହରଣ । ତାହାର ଗତି ଏବେ ଶୁଣ ॥
ଗୋ-ଧନ ଅପହାରୀ ନର । ନରକେ ପଡ଼େ ଯୁଧିଷ୍ଠିର ॥
ଥିଲେ ବା ଦେବର ସୁକୃତ । ପଡ଼ନ୍ତି ନରକୁ ହୁଏ ମୁକ୍ତ ॥
ଶୁଣ କହୁଛି ଇତିବୃତ୍ତ । ନୃପତି ନୃଗଙ୍କ ଚରିତ ॥
ହେଲେ ସେ ରାଜା ବଡ଼ ଦାନୀ । ବେଦପୁରାଣ ମହାଜ୍ଞାନୀ ॥
ତାଙ୍କର ଘଟିଲା ଯେ ଗତି । ଜାଣନ୍ତି କୃଷ୍ଣ ଯଦୁପତି ॥
ଦ୍ୱାରକାପୁର ନରନାରୀ । ଅଜଣା ନୁହଇ କାହାର ॥
ଅତି ପ୍ରାଚୀନ ଏକ କୂପ । ଦ୍ୱାରକାପୁରେ ଥିଲା ନୃପ ॥
ଆବଦ୍ଧ ଥିଲା ବହୁ ଦିନୁ । ଲୋକଙ୍କ ବ୍ୟବହାର ବିନୁ ॥
ବହୁତ ଘାସ ଗଛ ଲତ । ଥିଲା ସେ କୂପକୁ ଘୋଡ଼ାଇ ॥
ସେଠାର ଲୋକଙ୍କ ବିଗ୍ରହ । କୂପକୁ କରିବେ ସଂସ୍କାର ॥
କାଟିଲେ ଗଛ ଲତା ଘାସ । କୂପେ ଦେଖିଲେ କୃକଳାସ ॥
କୃକଳାସକୁ କୂପୁଁ କାଢ଼ି । ଆଣିବା ଲାଗି ଠେଙ୍ଗାବାଡ଼ି ॥
ହେଲା ବହୁତ ଆୟୋଜନ । ନଗଁ ଆସିଲେ ବହୁତ ଜନ ॥
କଲେ ସେ ସକଳେ ପ୍ରୟାସ । କୂପୁଁ ନ ଆସେ କୃକଳାସ ॥
ଆବର ମିଶିଲେ ବହୁତ । ଟାଣନ୍ତି ଯେତେ ଶକ୍ତିମତ ॥
ଲଗିଲା ବହୁତ ଦଉଡ଼ି । ତଥାପି ନ ପାରିଲେ କାଢ଼ି ॥
ପରେ ସେ ନଗର ଜନତା । କୃଷ୍ଣଙ୍କୁ ଦେଲେ ଏ ବାରତା ॥
ଶ୍ରୀକୃଷ୍ଣ ଆସି କୃକଳାସେ । ହାତ ଲଗାନ୍ତେ ଅନାୟାସେ ॥
କୂପରୁ ହେଲା ସେ ବାହାର । ଅତି ସୁନ୍ଦର କଳେବର ॥
ଲଗାଇ କୃଷ୍ଣପଦେ ମଥା । କହିଲା ତାର ପୂର୍ବକଥା ॥
ଥିଲି ମୁଁ ପୂର୍ବେ ନୃପରାଜା । ଲୋକେ ପାଇଲି ବହୁ ପୂଜା ॥

କଲ ବହୁତ ଦାନପୁଣ୍ୟ । ସର୍ବେ ବୋଲିଲେ ଧନ୍ୟ ଧନ୍ୟ ॥
ଏକଦା ଏକ ବିପ୍ର ଗାଈ । ପଶିଲ ଗୋଗୋଷ୍ଠୁ ପଳାଇ ॥
ମରଣ ପୂର୍ବେ ଏକ ଦିନ । କଲ ସହସ୍ର ଧେନୁ ଦାନ ॥
ଚିହ୍ନି ନ ପାରି ଭ୍ରମବଶେ । ଗୋପାଳ ଗଣିଲା ସହସ୍ରେ ॥
ମିଶାଇ ସେ ବିପ୍ର ଗାଈକି । ମୁଁ ତାହା ଦାନେ ଦେଲି ଟେକି ॥
ଯେ ବିପ୍ର ଗଲା ଦାନ ନେଇ । ତା ଘରେ ଦେଖି ନିଜ ଗାଈ ॥
ପଛରେ ଗାଈ ଅଧିକାରୀ । ପାଇଲ ଏ ଗାଈ କପଟ ॥
ଏ ମୋର ଗାଈ ଦିଅ ମୋତେ । କହ ନା ପାଇଲ କେମନ୍ତେ ।
ଯେ ବିପ୍ର ନେଇଥିଲା ଦାନ । ଦେଲା ସେ ଆପଣା ପ୍ରମାଣ ।
ସେ ବେନି ବିପ୍ର ମୋର ପାଶେ । ପ୍ରବେଶ ହେଲେ ଅତି ରୋଷେ ॥
ପ୍ରତିଗ୍ରାହକ ବିପ୍ରେ ମୁହିଁ । କହିଲି ଅନେକ ବୁଝାଇ ॥
ଆଉ ସହସ୍ରେ ଗାଈ ନିଅ । ଏ ବିପ୍ର ଗାଈକି ଫେରାଅ ॥
କଲା ନାହିଁ ସେ ସ୍ୱୀକାର । ବୋଲେ ତୋ ଦାନ ଭୁଞ୍ଜ ଘର ॥
ସେ ଧେନୁ ଅଧିକାରୀ ଦ୍ୱିଜେ । କହିଲି ପୁଣି ଭୟ ଲାଜେ ॥
ମୋ ଗୋଷ୍ଠପାଳର ଏ ଭ୍ରମ । ହେ ବିପ୍ର ମୋର ଦୋଷ କ୍ଷମ ॥
ସହସ୍ରେ ଅବା ଲକ୍ଷେ ଗାଈ । ଦେବି ଏ ଗୋଟିକର ପାଇଁ ॥
ନ ହେଉ ମୋର ଅପରାଧ । କ୍ଷମା କର ଏ ପରମାଦ ॥
ମଣିଲେ ନାହିଁ ସେ ବ୍ରାହ୍ମଣ । କହିଲେ ନ ନେବି ମୁଁ ଆନ ॥
ମୋର ଲକ୍ଷେ କି ପ୍ରୟୋଜନ । ମୋ ଗାଈ ଦିଅ ହେ ରାଜନ ॥
ପଡ଼ି ମୁଁ ଉଭୟ ସଂକଟେ । ମରଣ ଭେଟିଲି ନିକଟେ ॥
ଗଲି ମୁଁ ଯେବେ ଯମପୁର । ପାଇଲି ବହୁତ ଆଦର ॥
ଯମ କହିଲେ ନୃପରାଜ । ସାଧିଛ ବହୁ ପୁଣ୍ୟ କାର୍ଯ୍ୟ ॥
ଗୋଷ୍ଠପାଳର ଭ୍ରମବଶେ । ପଡ଼ିଛ ଏକମାତ୍ର ଦୋଷେ ॥
ହୋଇଛ ଧେନୁ ଅପହାରୀ । ପ୍ରଦାନ କଲ ନ ବିଚାରି ॥
ଏ ପାପ ଫଳରେ ଯେ ଗତି । କେବେ ଭୋଗିବ ନରପତି ॥
ପାପର ଫଳ ଗଲେ କ୍ଷୟ । ଲଭିବ ସମ୍ଭୋଗ ଅକ୍ଷୟ ॥

ଆନେକ ବା ପଚ୍ଛେ ପାପ ଭୋଗ । ଉତ୍ତର କହ ରାଜା ନୃଗ ॥
ପାପର ଫଳ ଦୁଃଖ ଅତେଶ୍ର । ଶୁଣି ମୋ ଚହ୍ମୁଁ ଯମ ବ୍ୟଗ୍ରେ ॥
କହ୍ନିଲେ ହୁଅ କୃକଳାସ । ଦ୍ୱାରକା କୂପେ କର ବାସୀ ॥
ଲକ୍ଷ ସହସ୍ର ବର୍ଷ କାଳ । ଏହା ଭୁଞ୍ଜିବ ପାପଫଳ ॥
ଶ୍ରୀକୃଷ୍ଣ ବସୁଦେବ ସୁତ । ସ୍ପର୍ଶିଲେ ତୁମ୍ଭେ ହେବ ପୂତ ॥
ପୁଣି ଆସିବ ସ୍ୱର୍ଗପୁର । ଲଭିବ ସଂଭୋଗ ଅପାର ॥
ତବ ପରଶେ ଯଦୁପତି । ପାଇଲି ମୁଁ ଆଜ ମୁକତି ॥
ନମିଲେ ନୃଗ କୃଷ୍ଣପଦେ । ସ୍ୱର୍ଗେ ଚଳିଲେ ମହାନନ୍ଦେ ॥

## ସୂତ ଉବାଚ

ଶୁଣି ଏ ପୁଣ୍ୟ ସୁସବୃତ୍ତ । ପାଣ୍ଡୁ ନନ୍ଦନ କୃତକୃତ୍ୟ ॥
ନ ଜାଣି ଗୋରୂଦ୍ରବ୍ୟର ଦୋଷେ । ଭୋଗିଲେ ବରଷ ସହସ୍ରେ ॥
ସେ ନୃଗ ଧାର୍ମିକ ରାଜନ । ହୁଅ ହେ ଜନେ ସାବଧାନ ॥
ନ ରଖ କେବେ ଅନ୍ୟ ଗାଈ । ଜାଣି ବା ନ ଆଣ ଚୋରାଇ ॥
ଗୋ ଅପହରଣେ ଯେ ଦୋଷ । ନୁହଇ କୋଟିକାଳେ ଶେଷ ॥
ଇହ ସଂସାରେ କାରାବାସ । ଲୋକେ ହୁଅଇ ଅପଯଶ ॥
ମରଣେ ଦଣ୍ଡ ଯମଦ୍ୱାରେ । ନରକ ଯନ୍ତ୍ରଣା ନ ସରେ ॥
ହେ ଶିଷ୍ୟ ତୁମ୍ଭେ ଏଥୁଁ ପାଇ । ଲୋକଙ୍କୁ କହିବ ବୁଝାଇ ॥
ନ କର କେହି ଗୋରୁ ଚୋର । କିବା ଗୋପନେ ଅପହର ॥
ଗୋରୁଙ୍କୁ ଅବସ୍ଥ ନ କର । ଏ ପାପ ଅଟେ ଭୟଙ୍କର ॥
ଲୋଭରେ କର ଯେ କରିବ । ଅକାଳ ଧନେ ସେ ମରିବ ॥
ହୁଅ ହେ ଜନେ ସାବଧାନ । ନ ହର କାହାର ଗୋଧନ ॥
ନୋପ କହଇ ବାରବାର । ଏ କଥା ସର୍ବେ ହେଜୁ କର ॥

ଇତି ଶ୍ରୀ ଗୋ ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଆନୁଶାସନିକେ ପର୍ବଣି
ଗୋ ହରଣ ପାପ କଥନେ ନାମ ନବମୋଽଧ୍ୟାୟଃ ।



## ଦଶମ ଅଧ୍ୟାୟ

### ଶିଷ୍ୟ ଉବାଚ

ହେ ମୁନି କର ଅନୁଗ୍ରହ । ଆଉରି ଗୋ ମାହାତ୍ମ୍ୟ କହ ॥
ଶାସ୍ତ୍ର କହିଲେ ଧର୍ମସୂତ୍ରେ । ଗୋ ଦାନେ ପୁଣ୍ୟ ହୁଏ ଯେତେ ॥
ଗୋ ଜାତି ମାହାତ୍ମ୍ୟ ଅପାର । ଗୋ ଅପହାରେ ପାପ ଘୋର ॥
ମାତ୍ର କହ ହେ ଗୁରୁଦେବ । ଜଗତ୍ରୁ କିଏ ଅନୁଭବ ॥
କେ ଅବା ଦେଖିଛୁ ନୟନେ । ମିଳେ ଯେ ସ୍ୱର୍ଗ ଧେନୁ ଦାନେ ॥
ପ୍ରତ୍ୟକ୍ଷ ପ୍ରମାଣ ପ୍ରକାଶ । ଜନ୍ମିବ ଯହିଁରେ ବିଶ୍ୱାସ ॥

### ଗୁରୁ ଉବାଚ

ତୁମ୍ଭ ଏ ପ୍ରଶ୍ନର ଉତ୍ତର । ଦେଇଅଛନ୍ତି ଶାସ୍ତ୍ର ସାର ॥
ବୈଦିକ ଯୁଗର କାହାଣୀ । ଯାହା କହିଲେ ଶାସ୍ତ୍ର ଜ୍ଞାନୀ ॥
ଶୁଣ ଏବେ ସେ ଇତିହାସ । ତୁଟିବ ମନୁ ଅବିଶ୍ୱାସ ॥
ଥିଲେ ପୂର୍ବେ ଉଦ୍ଦାଳକ । ଋଷି ସୁଜ୍ଞାନୀ ସୁବିବେକ ॥
ପୁତ୍ର ତାଙ୍କର ବିଶ୍ୱଜିତ । ସକଳ ଲୋକରେ ବନ୍ଦିତ ॥
କଲେ ସେ ଯଜ୍ଞ ଅନୁଷ୍ଠାନ । ଦେଲେ ବହୁତ ଧେନୁଦାନ ॥
ତାଙ୍କର ପୁତ୍ର ନଚିକେତ । ଗୋ ଦାନ କାଳେ ଉପଗତ ॥
ପିତାଙ୍କୁ ପଚାରେ ନନ୍ଦନ । ମତେ କାହାକୁ ଦେବ ଦାନ ॥
କର୍ମରେ ଥିବାରୁ ନିୟୁକ୍ତ । ବିରକ୍ତ ହେଲେ ବିଶ୍ୱଜିତ ॥
କହିଲେ ତତେ ଦେବି ଯମେ । କହନ୍ତେ ଏହା ମତିଭ୍ରମେ ॥
ସେ ପୁତ୍ର ଗଲା ଯମପୁର । ରହିଲା ନିର୍ଜୀବ ଶରୀର ॥
ପଡ଼ିଲା ଶବ ଯଜ୍ଞସ୍ଥାନେ । ପୁଣି ତିନ କି ଚାରିଦିନେ ॥
ବାହୁଡ଼ି ଆସିଲା ନନ୍ଦନ । ହେଲା ସେ ଶବ ସଚେତନ ॥

ପୁତ୍ର ନମିଲା ପିତାପଦେ । ଆନନ୍ଦେ ଭକ୍ତି ଗଦଗଦେ ॥
ସକଳେ ଦେଖି ଆଚମ୍ବିତ । ପିତା ହୋଇଲେ ହରଷିତ ॥
ଦଣ୍ଡବତ୍ ଯେହ୍ନେ ହସ୍ତ ଧରି । ପାଳଣ ହୁଅଇ ଜଷତ ॥
ପିତା ହୋଇଲେ ଧନ୍ୟ ଧନ୍ୟ । କହିଲେ ମୋର ବହୁ ପୁଣ୍ୟ ॥
କହନ୍ତି ପୁତ୍ରେ ପରଶଂସି । ତୁ ନୋହୁ ବାବୁ ମର୍ତ୍ତ୍ୟବାସୀ ॥
ନବ ଜନମ ଦୈବ ବଳେ । ପାଇଲୁ ନିଜ କର୍ମଫଳେ ॥
କହ ତନୟ ଫେଡ଼ି ମୋରେ । କସ ଦେଖିଲୁ ମୃତ୍ୟୁପୁରେ ॥
କପର କର୍ମଫଳ ନରେ । ଭୁଞ୍ଜନ୍ତି ଯାଇ ଯମପୁରେ ॥
ପିତା ବଚନେ ଯୋଡ଼ି କର । ସେ ପୁତ୍ର ଦଅଇ ଉତ୍ତର ॥
ହେ ପିତା, ଅନ୍ୟ ଋଷିଗଣେ । ଯାହା ମୁଁ ଦେଖିଲି ନୟନେ ॥
ଏଠାରୁ ଯାଇ ଯମପୁର । ଅତି ଆଶ୍ଚର୍ଯ୍ୟ ଚମତ୍କାର ॥
ମତେ ଦେଖିଣ ଜନୁବ୍ରଣ । କଲେ ବହୁତ ସନମାନ ॥
କହିଲି ତାଙ୍କୁ ସବିନୟେ । ସଦୟ ହୁଅ ଯମରାୟେ ॥
ଆସିଛି ତବ ସନ୍ନିଧାନ । ଆଦେଶ ମୋ କହିବ ସ୍ଥାନ ॥
ଯମ କହିଲେ ଯାଅ ଫେରି । ତୁମ୍ଭ ଆୟୁଷ ନାହିଁ ପୂରି ॥
ପିତା ଆଦେଶ ଯମପୁର । ଦେଖିଛ ଏବେ ଯାଅ ଘର ॥
ସେ ଋଷି ଅନଳ ସମାନ । କଲେ ଯା ମୁଖେ ଉଚ୍ଚାରଣ ॥
ଅନ୍ୟଥା ନୁହେ ସେ ବଚନ । ତେଣୁ ଆସିଛ ମୋ ଭବନ ॥
ତୁମ୍ଭଙ୍କୁ ନ ଦେଖି ପିଅର । ଶୋକରେ ଅତ୍ୟନ୍ତ କାତର ॥
ତୁରିତେ ଯାଅ ମର୍ତ୍ତ୍ୟପୁରେ । ପ୍ରଣମି ପିତାଙ୍କ ଛାମୁରେ ॥
ଆପଣ ଅତିଥି ମୋ ଦ୍ୱାରେ । ପୂଜିବି ମୁଁ କି ଉପହାରେ ॥
ଯେ ବର ତୁମ୍ଭ ଇଚ୍ଛା ମାଗ । ଦେବି ମୁଁ ଏବେ ମହାଭାଗ ॥
ଯମର ଶୁଣି ଏ ଉକତି । କହିଲି ଦେବ ଜନ୍ମପତି ॥
ପିତୃ ଆଦେଶେ ଏତେ ଦୂରେ । ଆସିଛି ମୁହିଁ ତବ ପୁରେ ॥
ଏଠାକୁ ଆସି କେହି ପ୍ରାଣୀ । ନ ଫେରି ମର୍ତ୍ତ୍ୟପୁରେ ପୁଣି ॥
ଯହିଁ ସୁକୃତବନ୍ତ ନରେ । ବସନ୍ତି ଆସିଣ ଏ ପୁରେ ॥

ସୁକୃତ ଫଳେ ଯେ ଯେ ଲୋକେ । ବସନ୍ତି ସ୍ୱର୍ଗେ ବିଶୋକେ ॥
ସେସବୁ ମୋତେ ଦୟା କରି । ଦେଖାଅ ଯମ ଦଣ୍ଡଧାରୀ ॥
ତହୁଁ ସେ ଯମ ଦିବ୍ୟଯାନେ । ବସାଇ ମତେ ନାନାସ୍ଥାନେ ॥
ଦେଖାଇ ବୁଲାଇଲେ ପୁର । ଅତି ଅଦ୍ଭୁତ ମନୋହର ॥
ସୁଦିବ୍ୟ ବହୁ ନିକେତନ । ଅତି ବିଚିତ୍ର ସୁଗଠନ ॥
ଶୋଭିତ ଅଶେଷ ରତନେ । ଖଚିତ ଅପୂର୍ବ ଯତନେ ॥
ଶୁଭ୍ର ଶରଦ ଚନ୍ଦ୍ର ସମ । ରୂପ ଗାମ୍ଭୀର୍ଯ୍ୟ ମନୋରମ ॥
ଅଷ୍ଟ ପଦସ୍ତ ଉଚ୍ଚ ପୁର । ବିରାଜେ କିଙ୍କିଣୀ ନୂପୁର ॥
ଅଟ୍ଟାଳି ଉପରେ ଅଟ୍ଟାଳି । ଉଠିଛି ଊର୍ଦ୍ଧ୍ୱେ ନୁହେଁ କଳି ॥
ପୁର ମଧ୍ୟରେ ଶୋଭାବନ । ସରିତ ଶୀତଳ କାନନ ॥
ବହଇ ସୁନିର୍ମଳ ନୀର । ବିରାଜେ କାହିଁ ସରୋବର ॥
ସୁବର୍ଣ୍ଣ ରଜତେ ଜଡ଼ିତ । ଶୋଭେ ତୋରଣ ଶତ ଶତ ॥
ସେ ପୁରର ଯେତେ ବସ୍ତୁ ଚୟ । ରତ୍ନେ ଉଜ୍ଜ୍ୱଳ ଦ୍ରବ୍ୟମୟ ॥
ବାଳାର୍କ କନକ ବରଣେ । ରଞ୍ଜିତ ଦିଗନ୍ତ ଯେସନ ॥
ଧଉତ କୋମଳ ସୁବସନ । ମଣ୍ଡିଛି ବିବିଧ ଆସନ ॥
ବିବିଧ ରସ ଭକ୍ଷ ଭୋଜେ । ଶଇଳ ଶିଖର ବିରାଜେ ॥
ଲତା ପାଦପେ ପାଏ ଶୋଭା । ରସାଳ ଫଳ ମନୋଲୋଭା ॥
ସୁଗନ୍ଧ ସୁନ୍ଦର ସୁମନ । ଫୁଟଇ କେତେ ଅଗଣନ ॥
ବହଇ ଦୁଗ୍ଧ ଦଧି ଧାର । କେ ସଂଖ୍ୟା କରିବ ତାହାର ॥
ପଥେ ବୁଲଇ ନାନା ଯାନ । ସୁନ୍ଦର ସ୍ୟନ୍ଦନ ବିମାନ ॥
ସୁରଭି ଶୀତଳ ସମୀର । ବହେ ସେ ପୁରେ ନିରନ୍ତର ॥
ନ ଲାଗେ ତହିଁ ଦେହେ କ୍ଳାନ୍ତ । ପ୍ରକାଶେ ଆଗମ ସୁଶାନ୍ତ ॥
ଦେଖି ସେ ପୁର ଅଦ୍ଭୁତ । ହେଲି ମୁଁ ମନେ କୃତକୃତ୍ୟ ॥
ପୁଚ୍ଛିଲି ତହୁଁ ଯମଦେବେ । ହେ ପ୍ରଭୁ ମୋତେ କହ ଏବେ ॥
ପୁଚ୍ଛିଲି ତହୁଁ ଯମଦେବେ । ହେ ପ୍ରଭୁ ମୋତେ କହ ଏବେ ॥
ଏ ଯେତେ ସରିତ ନିର୍ଝର । ବହଇ ଯହିଁ ନିରନ୍ତର ॥

ମଧୁର ଦୁଗ୍ଧ ଦଧିଧାର । ପାୟସ ବିବିଧ ପ୍ରକାର ॥
ଗିରି ସମ ଏ ପୁରପନ୍ତ । ପୁଣ୍ଡିଛି ଯହିଁ ସୁଖ ଶାନ୍ତ ॥
ଏ ସବୁ କାହା ଉପଭୋଗେ । ସର୍ଜିତ ଏଠେ ଉପଯୋଗେ ॥
ଯମ କହିଲେ ପୁଣ୍ୟଫଳେ । ଭୋଗନ୍ତି ପ୍ରାଣୀ ଏ ସକଳେ ॥
ଗୋ-ସେବା କରଇ ଯେ ନିତ । ଗୋ-ଦାନ କରେ କରି ପ୍ରୀତ ॥
କି ଅବା ଉପଯୁକ୍ତ ଜନେ । ତୋଷଇ ଗୋରସ ଭୋଜନେ ॥
ମୋ ପୁରେ ଆସିଲେ ସେ ନର । କରେ ଏ ସର୍ବ ଅଧିକାର ॥
ବହୁ ସହସ୍ର ବର୍ଷ ଯାଏ । ଫଳଭୋଗେ ଏ ପୁରେ ସେ ରହେ ॥
ଗୋ-ସେବା ଗୋ-ଦାନ ସମାନ । ପୁଣ୍ୟ ସୁକୃତ ନାହିଁ ଆନ ॥
କହିଲ ଗୋ-ଦାନେ କି ଫଳ । ସେ ପୁଣି କହିଲେ ସକଳ ॥
ଗୋ-ଦାନ ମାହାତ୍ମ୍ୟ ବିସ୍ତାରି । କହିଲେ ଯମ ଦଣ୍ଡଧାରୀ ॥
ଦେଖିସାରି ସେ ଦିବ୍ୟ ପୁର । ନ ଗଲି ମୁଁ ଅଧିକ ଦୂର ॥
ଯମଙ୍କ ଠାରୁଁ ପାଇ ଜ୍ଞାନ । ଆସିଲି ତବ ସନ୍ନିଧାନ ॥
ସେ ଋଷି ଶୁଣି ଏ ସମ୍ବାଦ । ପୁତ୍ରକୁ ଦେଲେ ଧନ୍ୟବାଦ ॥
କଲେ ବହୁତ ଧେନୁଦାନ । ଅନ୍ତେ ଲଭିଲେ ଏହି ସ୍ଥାନ ॥

## ସୂତ ଉବାଚ

ଭୀଷ୍ମଙ୍କ ଠାରୁଁ ଏ ଆଖ୍ୟାନ । ଶୁଣି ସେ ପାଣ୍ଡବ ପ୍ରଧାନ ॥
ହୋଇଲେ ହୃଷ୍ଟ ପୁଲକିତ । ଗୋ ଦାନେ ବଳାଇଲେ ଚିତ୍ତ ॥
ହେ ବ୍ରହ୍ମଋଷି ସତ୍ୟବ୍ରତ । ପଶୁର ଏ ପୁଣ୍ୟ ଚରିତ ॥
ଶୁଣନ୍ତୁ ବିଶ୍ୱବାସୀ ଜନ । କରନ୍ତୁ ସଦା ଗୋ ପାଳନ ॥
ଦିଅନ୍ତୁ ସାଦରେ ଗୋ-ଦାନ । ଗୋପର ଏହି ନିବେଦନ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଅନୁଶାସନକେ ପର୍ବଣି
ପିତୃ ସମୀପେ ନଚିକେତା ଗୋ-ପ୍ରଦାନ ପ୍ରତ୍ୟକ୍ଷ ଫଳ
ବର୍ଣ୍ଣନେ ନାମ ଦଶମୋଽଧ୍ୟାୟଃ



# ଏକାଦଶ ଅଧ୍ୟାୟ

ସେ ଯୁଧିଷ୍ଠିର ଧର୍ମ ସୁତ । ହୋଇଲେ ଅତି ହରଷିତ ॥
ଭୀଷ୍ମଙ୍କୁ କରି ନମସ୍କାର । କହନ୍ତି ବଚନ ମଧୁର ॥

## ଯୁଧିଷ୍ଠିର ଉବାଚ

ଋଷିକୁମାରେ ଯମବାଣୀ । କୃତାର୍ଥ ହୋଇଲି ମୁଁ ଶୁଣି ॥
ଅଜ୍ଞାତ ଅବୋଧ ଲଗି । ନୃଗ ହୋଇଲେ ଦୁଃଖଭାଗୀ ॥
କିନ୍ତୁ ମୋ ମନେ ପିତାମହ । ତଥାପି ରହିଛି ସନ୍ଦେହ ॥
ଗୋଲୋକ ପ୍ରତି ମୋ ସଂଶୟ । ତୁଟାଅ ହୃଦୁଁ ମହାଶୟ ॥
ଗୋ-ଦାନ ପୁଣ୍ୟ ଫଳେ ନର । ବସନ୍ତି ଯହିଁ ନିରନ୍ତର ॥
ସେ ଲୋକ ତତ୍ତ୍ୱ ସବିସ୍ତର । କହ ହେ କୁରୁ ଧନୁର୍ଦ୍ଧର ॥

## ଭୀଷ୍ମ ଉବାଚ

ଶୁଣ ହେ ପୂର୍ବ ଇତିହାସ । ଯେଣେ ତୁଟିବ ଅବଶ୍ବାସ ॥
ବ୍ରହ୍ମାଙ୍କୁ ଇନ୍ଦ୍ର ଯେ ବୃତ୍ତାନ୍ତ । ପୃଚ୍ଛିଲେ, କହେଁ ଶୁଣ ତାତ ॥

## ଇନ୍ଦ୍ର ଉବାଚ

ହେ ବ୍ରହ୍ମାଲୋକ ପିତାମହ । ମନେ ମୋ ଲାଗଇ ସନ୍ଦେହ ॥
ଦେଖେଁ ମୁଁ ଗୋଲୋକନିବାସୀ । ନନ୍ଦନ ସ୍ୱର୍ଗ ସୁଖରାଶି ॥
ଯାଆନ୍ତି ସ୍ୱର୍ଗଲୋକ ପରେ । ତେଣୁ ସଂଶୟ ମୋ ମନରେ ॥
କାହିଁ ଗୋଲୋକ କି ଆକାର । ଗୋ-ଦାନେ ଯହିଁ ଯାଏ ନର ॥
କି ଗୁଣ କି ଲକ୍ଷଣ ତାର । ମିଳେ ବା ଫଳ କି ପ୍ରକାର ॥

ଜଗତର ସେ ଲୋକ ପ୍ରାପତି । ନାହିଁ ବା କି ପରମ ଗତି ।।
ଏ ସବୁ ତତ୍ତ୍ୱ ଭଗବାନ । କେ ଜାଣେ ତୁମ୍ଭ ତହୁଁ ଆନ ।।
କର ମୋଠାରେ ଅନୁଗ୍ରହ । ସଦୟେ ସବୁ ତଥ୍ୟ କହ ।।

ବ୍ରହ୍ମା ଉବାଚ

ହେ ଇନ୍ଦ୍ର ତୁମ୍ଭେ ବଡ଼ ଧନ୍ୟ । କିଏ ବା ତୁମ୍ଭ ସମା ଅନ୍ୟ ।।
ପୁଚ୍ଛିବ ଗୋଲୋକ ସମ୍ବାଦ । ତୁମ୍ଭଙ୍କୁ ଶତ ଧନ୍ୟବାଦ ।।
ଅଛି ହେ ଇନ୍ଦ୍ର ବହୁ ଲୋକ । ଯହିଁ ନ ଲାଗେ ଦୁଃଖଶୋକ ।।
ସେସବୁ ତୁମ୍ଭଙ୍କୁ ଅଜଣା । ଯହିଁ ଅମର ହେବେ ବଣା ।।
ସେସବୁ ଗୋଚର ମୋହର । ଆବର ପଦବ୍ରଜା ନାସ୍ତି ।।
ନ ଜାଣେ ମତହୁଁ ଯେ ଆନ । ସେ ଜାଣେ ଯେ ଲୋକ ସନ୍ଧାନ ।।
ଯହିଁ ସୁବ୍ରତ ଋଷିଗଣ । କରନ୍ତି ସ୍ୱଚ୍ଛନ୍ଦେ ଗମନ ।।
ନିର୍ମଳ ମନେ ଯୋଗ ସାଧି । ଯୋଗିଏ ଧରନ୍ତି ସମାଧି ।।
ଯାନ୍ତି ଯେ ଲୋକେ ତେଜି ଅଙ୍ଗ । ଶୁଣ ହେ ସେ ଲୋକ ପ୍ରସଙ୍ଗ ।।
କାଳର ତହିଁ ନାହିଁ ଗତି । ପ୍ରକାଶେ ନାହିଁ ଅଗ୍ନି ଜ୍ୟୋତି ।।
ନାହିଁ ଜରାର ଆକ୍ରମଣ । ନାହିଁ କାହୁନ୍ହିଁ ଅକଲ୍ୟାଣ ।।
ନ ଅଛି ଆଧିବ୍ୟାଧି ଦୋଷ । ନ ଲାଗେ ଯହିଁ ଶ୍ରମକ୍ଳେଶ ।।
ଯେ ଯାହା ବାଞ୍ଛେ ହୃଦଗତେ । ସେ ତାହା ଲଭଇ ତୁରିତେ ।।
ପବିତ୍ର ଗୋଲୋକ ନିବାସୀ । ଭୁଞ୍ଜନ୍ତି ସବୁ ସୁଖରାଶି ।।
କରନ୍ତି ସ୍ୱଚ୍ଛନ୍ଦେ ବିହାର । ଭୋଗନ୍ତି ଐଶ୍ୱର୍ଯ୍ୟ ଅପାର ।।
ଶୋଭଇ ତହିଁ ସରୋବର । ସରିତ ବାପି ମନୋହର ।।
ବିବିଧ ବନ ପଲ୍ଲବିତ । ଗୃହ ପର୍ବତ ଅଗଣିତ ।।
ମନୋଜ୍ଞ ଦ୍ରବ୍ୟ ଯେତେ ଯହିଁ । ସକଳ ପୂରିଅଛି ତହିଁ ।।
ଏପରି ବହୁଳ ବିଭବ । ଅପର ଲୋକେ ଅସମ୍ଭବ ।।
ଗୁରୁବତ୍ସଳ ଶାନ୍ତ ଦାନ୍ତ । ଯେ ଅହଂକାର ବିରହିତ ।।

ଯେ ଜନ ମାତା ପିତା ଭକ୍ତ । ଆଚରଣୀଳ ସତ୍ୟଯୁକ୍ତ ॥
କରନ୍ତେ ଯେ ନିତ୍ୟ ଗୋ-ପାଳନ । ଗୋ-ହିତେ ବ୍ୟୟ କରେ ଧନ ॥
ଭୂମି ଯେ ଖଞ୍ଜଇ ଗୋ-ଚରେ । ଏମନ୍ତ ଜନ ଯେବେ ମରେ ॥
ଗୋ ଲୋକେ ପାଏ ସେ ସତ୍ଵର । ଭୋଗଇ ସୁଖ ନିରନ୍ତର ॥
ଶୁଣ ହେ ଏବେ ଶଚୀପତି । ଗୋ ଦାନେ ମିଳଇ ଯେ ଗତି ॥
ଯେ ନର ଧର୍ମାର୍ଜ୍ଜିତ ଧନେ । କିଣିଣ ଧେନୁ ଦିଏ ଦାନେ ॥
ଅକ୍ଷୟ ଲୋକ ତାକୁ ମିଳେ । । ଗୋଲୋକେ ବସେ କାଳେ କାଳେ
ଯେ ଦାନ ନେଇ ଦିଏ ଦାନ । ତାହାର ସର୍ବ ପୁରେ ସ୍ଥାନ ॥
ଗୋ ପ୍ରତି ନ ପାଞ୍ଚେ ଯେ ଦ୍ରୋହ । ଦେଖାଏ ତାହାଙ୍କରେ ସ୍ନେହ ॥
ଜୀବନ ଶୁଦ୍ଧ ଆଚରଣେ । ତନାଏ ନିତ୍ୟ ଗୋ ପାଳନେ ॥
ଗୋରୁଙ୍କୁ ଦିଏ ଜଳ, ଘାସ । ପାଏ ସେ ଗୋଲୋକେ ନିବାସ ॥
ସହସ୍ର ଗୋ ଦାନର ଫଳ । ଲଭେ ସେ ଲୋକେ ଚିରକାଳ ॥
ଯେ କ୍ଷମାଶୀଳ ଦୟାବନ୍ତ । ଦେବ ବ୍ରାହ୍ମଣ ଅନୁରକ୍ତ ॥
ସେ ଯେବେ ନିର୍ମଳ ଅନ୍ତରେ । ସୁପାତ୍ରେ ଧେନୁ ଦାନ କରେ ॥
ଲଭଇ ଗୋସହସ୍ର ଫଳ । ଭୋଗଇ ସୁଖ ସୁନିର୍ମଳ ॥
ଯେ ଆଗେ ନ କରେ ଭୋଜନ । ଗୋରୁଙ୍କୁ ଦିଏ ଜଳ ତୃଣ ॥
ସର୍ବଦା କହେ ସତ୍ୟ କଥା । ନ ଦିଏ କାହା ମନେ ବ୍ୟଥା ॥
ତା ବାଞ୍ଛା ପୂରେ ବରଷକେ । କେବେ ସେ ନ ପଡ଼ଇ ଶୋକେ ॥
ଦିନ ମଧ୍ୟରେ ଥରେ ଖାଇ । ଧନ ରଖି ଯେ କିଣେ ଗାଈ ॥
ପାଳେ ଯେ ଗାଈ କୁ ଆଦରେ । ସେ ପାଏ ସୁଖ ଏ ସଂସାରେ ॥
ସେ ପୁଣି କଲେ ଧେନୁଦାନ । ଲଭଇ ଅଶେଷ ସୁପୁଣ୍ୟ ॥
ପରଲୋକରେ ପାଏ ଗତି । ଜାଣ ନିଶ୍ଚୟ ଶଚୀପତି ॥
ସେ ଗୋରୁ ଦେହେ ଲୋମ ଯେତେ । ତେତେକ ବର୍ଷ ପର୍ଯ୍ୟନ୍ତେ ॥
ଗୋଲୋକେ କରଇ ବିହାର । କି ଭାଗ୍ୟ କହିବି ତାହାର ॥
ଦିବସି ବର୍ଷି ଜଳପାନେ । ଶୋଇ କେବଳ ଭୂଶୟନେ ॥
କଲେ ସବତ୍ସା ଧେନୁଦାନ । ବାଞ୍ଛଣ ଉତ୍ତମ ବ୍ରାହ୍ମଣ ॥

ଶୁଭ୍ର ସକଳ ସଦାଗ୍ରସ । ସୁଜ୍ଞାମ ପର ଜପକାସ ॥
ସେ ଦାତା ସ୍ୱର୍ଗପୁରେ ଯାଏ । ଚନ୍ଦ୍ର ଅଶେଷ ପୂଜା ପାଏ ॥
ଦଳ ବହିବା ସମରଥ । ବଳଦ ଯେ କରଇ ଦତ୍ତ ॥
ଯେ ଫଳ ଦଶ ଧେନୁ ଦାନେ । ତାହାର ଫଳ ସେ ପ୍ରମାଣେ ॥
ଦୁର୍ଭିକ୍ଷେ ଅନାବୃଷ୍ଟି କାଳେ । ଗୋରୁଙ୍କୁ ଖୁଆଇ ଯେ ପାଳେ ॥
ସେ ଅଶ୍ୱମେଧ ଫଳ ଲଭେ । ଏ ଲୋକେ ରହେ ଗଉରବେ ॥
ବାଞ୍ଛେ ଯା ମରଣ ସମୟେ । ସେ ଲୋକେ ତାହା ସବୁ ପାଏ ॥
ଉତ୍ତମ ଲୋକେ ଭୋଗ ନାନା । ଯାହା ତା ହୃଦସ୍ଥ କାମନା ॥
ମିଳେ ତା ସବୁ ଅନାୟାସେ । ଦେବତା ଲୋକରେ ବଳସେ ॥
ଗୋ ଦାନ ଫଳ ଏହିପରି । କହିବ କେତେ ବା ଆଦରି ॥

## ଗୁରୁ ଉବାଚ

ଇନ୍ଦ୍ର ବ୍ରହ୍ମାଙ୍କ ଏ ସମ୍ବାଦ । ଶୁଣିଲେ ନ ପଡ଼େ ପ୍ରମାଦ ॥
ନିତ୍ୟ ନିଷ୍ୟ ଲୋକରେ ପ୍ରଚାର । କର ଏ ଶୁଭ ସମାଚାର ॥
ହୋଇଲେ ଗୋ-ଜାତି ଉନ୍ନତ । ମେଣ୍ଟିବ ଲୋକଙ୍କ ଦୁର୍ଗତି ॥
ଶୁମ୍ଭର ଏଣେ ହେବ ଯଶ । ଭଣେ ଅଧମ ଗୋପ ଦାସ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଆନୁଶାସନିକେ ପର୍ବଣି
ଇନ୍ଦ୍ର ବ୍ରହ୍ମା ସମ୍ବାଦେ ଗୋଲୋକ ବର୍ଣ୍ଣନେ ନାମ
ଏକାଦଶୋଽଧ୍ୟାୟଃ



# ଦ୍ୱାଦଶ ଅଧ୍ୟାୟ

## ବିଷ୍ଣୁ ଉବାଚ

ବ୍ରହ୍ମା ବଚନେ ତୁଷ୍ଟ ଅତି । ହୋଇଲେ ଦେବ ଶଚୀପତି ॥
ପୁଚ୍ଛନ୍ତି କରଣ ଆଗ୍ରହ । କହ ହେ ଲୋକ ପିତାମହ ॥
ଯେ ଜାଣି ସ୍ତେଣ କଲେ ଗାଈ । କିବା ହରଇ ଧନ ଗାଈ ॥
ବଧଇ ଯାଭୂକେ ନିର୍ଦ୍ଦୟେ । କି ଅବା ନିଜେ ମାଂସ ଖାଏ ॥
ଏ ସବୁ ପାଆନ୍ତି କି ଗତି । କହ ସଦୟେ ବେଦପତି ॥

## ବ୍ରହ୍ମା ଉବାଚ

ଭକ୍ଷାର୍ଥେ କିବା ବନ୍ଦି ପାଇଁ । ଯେ ସ୍ତେଣ କରେ ଗୋରୁ ଗାଈ ।
ନେବ୍ରାଏ ଦାନ ଦେବା ଆଶେ । କିବା ବିକ୍ରୟ ଲାଗି ହିଂସେ ।
ଅଥବା ନିଜେ ଖାଏ ମାଂସ । ଶୁଣ ଏ ସଭିଙ୍କର ଦୋଷ ॥
ଯେ ଗୋରୁ କାଟି ବିକେ ମାଂସ । କି ଅବା ନିଜେ କରେ ଗ୍ରାସ ॥
ଘାତକେ ଯେ ହୁଏ ସହାୟ । ଏ ସର୍ବେ ଭଜନ୍ତି ନିରୟ ॥
ଗୋରୁ ଦେହରେ ରୋମ ଯେତେ । ତେତିକ ବର୍ଷ ପର୍ଯ୍ୟନ୍ତେ ॥
ଦୁସ୍ତର ନରକେ ମଜ୍ଜନ୍ତି । ଅସହ୍ୟ ଯାତନା ଭୋଗନ୍ତି ॥
ବ୍ରାହ୍ମଣ ଯଜ୍ଞେ କଲେ ଘାତ । ହୁଏ ଯେ ଦୋଷ ପରାହତ ॥
ଗୋ-ଅପହାର ବା ବିକ୍ରୟେ । ସେ ଦୋଷ ଘଟଇ ନିଶ୍ଚୟେ ॥
ଘାତକେ ଯେ କରେ ବିକ୍ରୟ । ତାହାର ବଂଶ ଯାଏ କ୍ଷୟ ॥
ନିଜେ ଭୋଗଇ ନର୍କେ କ୍ଳେଶ । ଲୋକେ ପ୍ରକଟେ ଅପଯଶ ॥
ଯେ ଖାଏ ଚୋର ଗାଈ ଦୁଧ । ହୁଏ ତା ହୃଦୟ ଅଶୁଦ୍ଧ ॥

ଯେ କରେ ଗୋ ମାଂସ ଭକ୍ଷଣ । କି ଅବା ମଦ୍ୟ ସୁରାପାନ ॥
ଯେ ଗୋରୁ ମାରେ ଦେଇ ବିଷ । ଖାଇବ ବୋଲି ତାର ମାଂସ ॥

କିବା କହିବ ତାର ଦୋଷ । ତ୍ରିପୁରେ ନାହିଁ ତାର ବାସ ॥
ନିଜେ ମରଇ ବଂଶ ମାରେ । ପଡ଼େ ନରକ ମହାଘୋରେ ॥

ଅନ୍ୟର ଗୋରୁ ଅପହରି । ଯେ ବିପ୍ରେ ଦିଏ ଦାନ କରି ॥
ସେ ଦାନେ ଫଳ ବିପରୀତ । ଦାତାର ଅଶେଷ ଦୁରିତ ॥

ସୁକୃତ ଯେତେ ଶୁଦ୍ଧଦାନେ । ଏଥି ଦୃଷ୍ଟାନ୍ତ ସେ ପ୍ରମାଣେ ॥
ଦାତାର ନୀଚ ଅପରାଧେ । ଗ୍ରହୀତା ପଡ଼ଇ ବିପଦେ ॥

ଗ୍ରହୀତା ବିପଦ କାରଣ । ଦାତାର ଦୋଷ ଦୁଇଗୁଣ ॥
ହେ ଯୁଧିଷ୍ଠିର ଧର୍ମସୁତ । କହିଲି ମୁଁ ଯେ ଏ ବୃତ୍ତାନ୍ତ ॥

ବ୍ରହ୍ମା ପ୍ରଥମେ ଇନ୍ଦ୍ର ଆଗେ । କହିଲେ ଏହା ଅନୁରାଗେ ॥
ଇନ୍ଦ୍ର କହିଲେ ଦଶରଥେ । ସେ ପୁଣି ନିଜ ଜ୍ୟେଷ୍ଠ ସୁତେ ॥

ଶ୍ରୀରାମ କହିଲେ ଲକ୍ଷ୍ମଣେ । ଲକ୍ଷ୍ମଣ ତହୁଁ ମୁନିଗଣେ ॥
ଶୁଣିଲେ ରାମ ବନବାସେ । ଏ ରୂପେ ଜଗତେ ପ୍ରକାଶେ ॥

ଧାର୍ମିକ ରାଜା ଋଷିଗଣ । ପାଳନ୍ତି ସଦା ଏ ବିଧାନ ॥
ଆଶ୍ଚର୍ଯ୍ୟ ମୁହିଁ ଏ ଚରିତ । ଶୁଣିଛୁ ଜାଣ ପାଣ୍ଡୁସୁତ ॥

ବିରିଞ୍ଚି ବାସବ ସମ୍ବାଦ । ଶୁଣିଲେ ତୁଟଇ ପ୍ରମାଦ ॥
ପଢ଼ି ଶୁଣାଏ ଯେଉଁ ଆନେ । ଗୋ-ଦାନେ ଶ୍ରାଦ୍ଧେ ଯଜ୍ଞସ୍ଥାନେ ॥

ସେ ପାଏ ଦେବଲୋକ ଗତି । କହି ଅଛନ୍ତି ବେଦପତି ॥
ଗୁରୁ କହନ୍ତି ଶିଷ୍ୟ ଠାଇଁ । ଶୁଣାଅ ଏହା ଲୋକେ ଯାଇ ॥

କେହି ନ ହରୁ ଅନ୍ୟ ଗାଈ । ନ ବିକୁ କେହି ଧନ ପାଇ ॥
ନ ମାରୁ କେହି ଦେଇ ବିଷ । ନ ଖାଉ କେହି ଗୋରୁମାଂସ ॥

ଯାଭୁକେ ଛାଡ଼ନ୍ତୁ ବେଭସା । ଆସିବ ଦେଶେ ଭଲ ଦଶା ॥
ଗୋ-ହିତେ ଜଗତ କଲ୍ୟାଣ । ଗୋ-ଜାତି ମାନବର ପ୍ରାଣ ॥

ବୁଝ ହେ ଏହା ସର୍ବଜନ । କରଇ ଗୋପ ନିବେଦନ ॥

ଇତି ଶ୍ରୀ ଗୋ ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଅନୁଶାସନିକେ ପର୍ବଣି
ଗୋ-ହରଣ ଗୋ-ମାଂସ ଭକ୍ଷଣାଦ ପାପଫଳ କଥନେ
ନାମ ଦ୍ୱାଦଶୋଽଧ୍ୟାୟଃ ।



## ତ୍ରୟୋଦଶ ଅଧ୍ୟାୟ

### ଗୁରୁ ଉବାଚ

ଗୋ-ଦାନ ବିଧାନ ବିସ୍ତାର । କହିଲେ ଶ୍ରୀଷ୍ଣୁ ବ୍ରହ୍ମତୁଷ ।
କି ଭଳି ଧେନୁ ଦେବ ଦାନ । ଥିବ ଚାରୁ କି ଚିହ୍ନମାନ ॥
ଦାନ ପୂର୍ବରୁ କି କି ବିଧି । ପାଳିଲେ ହୁଏ ସର୍ବ ସିଦ୍ଧି ॥
ଦାନେ ଦକ୍ଷିଣା ପରିମାଣ । ଦାନର ପାତ୍ର କାଳ ସ୍ଥାନ ॥
ଏ ସର୍ବ ବିଷୟ ବିଶେଷେ । ଶୁଣିଲେ ପାର୍ଥ ମନତୋଷେ ॥
ସ୍ମୃତିଶାସ୍ତ୍ରରେ ଏ ବିଧାନ । କରିବ ତୁମ୍ଭେ ଅନ୍ୱେଷଣ ॥
ସେ ସର୍ବ ବିଧି ନିଷ୍ଫଳ । କହିବାକୁ ମୋ ନାହିଁ ବେଳ ॥
କହିବା ପ୍ରୟୋଜନ କିସ । ଯହିଁ ଗୋରୁଙ୍କୁ ଦେଖ ବିଷ ।
ମାରନ୍ତି ଧନ ଆଶେ ଲୋକେ । ଯହିଁ ଗୋମାଂସ ଖାନ୍ତି ଥୋକେ ॥
କଂସାଇ ହସ୍ତୁଁ ପାଇ ଧନ । ଯହିଁ ଗୋ-ବିକ୍ରି କରେ ଜନ ॥
ଯହିଁ ଗୋଚରେ ହୁଏ ଚାଷ । ଗୋରୁଙ୍କୁ ନ ମିଳଇ ଘାସ ॥
ଗୋ-ଦାନେ ବିଧାନ ବର୍ଣ୍ଣନ । କରିବ ତହିଁ କି କାରଣ ॥
ଆଗେ ଗୋ-ଜାତି ପ୍ରାଣେ ରକ୍ଷ । ସ୍ୱଚ୍ଛନ୍ଦେ ଘାସ ଖାଇ ପାଉ ॥

## ଶିଷ୍ୟ ଉବାଚ

ଗୋ-ଜାତି ମାହାତ୍ମ୍ୟ ଶ୍ରବଣେ । ତୃପତି ନ ଆସେ ମୋ ମନେ ॥
ଗୋ-ଦାନ ବିଧାନ ପ୍ରସଙ୍ଗ । ଉପବାସାଦ୍ଦି ପର୍ବ ରଙ୍ଗ ॥
ଜାଣିଁ ମୋହର ପ୍ରୟୋଜନ । କିନ୍ତୁ କହ ହେ ତପୋଧନ ॥
ପୂର୍ବଗଣ ପ୍ରଥିତ ପୁରୁଷ । ରଖିଛନ୍ତି ଯାହାଙ୍କର ଯଶ ॥
କିଏ ସେ ଗୋପ୍ରଦାନ ଫଳେ । କୀର୍ତ୍ତି ରଖିଲେ ମହୀତଳେ ॥

## ଗୁରୁ ଉବାଚ

ହେ ବ୍ରହ୍ମଚାରି ତୁମ୍ଭେ ଧନ୍ୟ । କଲ ଏ ପ୍ରଶ୍ନ ବିଚକ୍ଷଣ ॥
ଅନେକ ରାଜ ଚକ୍ରବର୍ତ୍ତୀ । ଗୋ-ଦାନେ ରଖିଛନ୍ତି କୀର୍ତ୍ତି ॥
ଯୁଧିଷ୍ଠିରଙ୍କୁ କହୁ ନାମ । କହିଲେ ଭୀଷ୍ମ ସତ୍ୟକାମ ॥
ଶ୍ରୀରାମ ଦଶରଥ ସୁତ । ମାନ୍ଧାତା ନୈଷଧ ଭରତ ॥
ସୋମକ ଉଶୀନର ନୃଗ । ଯଉବନାଶ୍ୱ ମହାଭାଗ ॥
ଦିଲ୍ଲୀପ ପୁଣି ଭଗୀରଥ । ଆବର ପୁରୁରବା ଖ୍ୟାତ ॥
ଏ ଆଦି ଯେତେ ମହାରାଜା । ପାଳିଲେ ସୁଖେ ଜନପ୍ରଜା ॥
ସକଳେ ଥିଲେ ଗୋ-ରକ୍ଷକ । ସୁଦକ୍ଷ ଯଶସ୍ୱୀ ଧାର୍ମିକ ॥
କଲେ ବହୁତ ଧେନୁ ଦାନ । ପାଇଲେ ଅକ୍ଷୟ ସମ୍ମାନ ॥
ସେ ସର୍ବ ରାଜାଙ୍କ ଶାସନେ । ସୁଖରେ ଥିଲେ ପ୍ରଜାଗଣେ ॥
ଗୋଧନେ ପୂରିଥିଲା ଦେଶ । ପାଉ ନ ଥିଲେ ଲୋକେ କ୍ଲେଶ ॥
ଗୋଚର ଥିଲା ସୁବିସ୍ତର । ନ ଥିଲା କେହୁ କର-ଭାର ॥
ରାଜାଙ୍କ ସୁଶାସନ ଯୋଗେ । ପ୍ରଜାଏ ଥିଲେ ମହାଭୋଗେ ॥
କରି ସତତ ଗୋ-ପାଳନ । ଲଭିଲେ ସୁଖ ମାନ ଧନ ॥
ପ୍ରଜା ପୁଣ୍ୟରେ ଲଭି ପୁଣ୍ୟ । ରଜା ଗୁଣେ ହେଲେ ଧନ୍ୟ ॥
ସେ ସର୍ବେ ଗଲେ ସ୍ୱର୍ଗପୁରେ । ଯଶଃ ରଖିଣ ଏ ସଂସାରେ ॥

ସେ ରାଜାଗଣଙ୍କ ଚରିତ । ପରମ ପ୍ରସିଦ୍ଧ ଇତିବୃତ୍ତ ॥
ଭୀଷ୍ମଙ୍କ ମୁଖଁ ଯୁଧିଷ୍ଠିର । ଶୁଣିଣ ମନେ କଲେ ସ୍ଥିର ॥
ପାଳିବେ ଗୋ-ରକ୍ଷଣ ବ୍ରତ । ହେବ ଯହିଁରେ ପ୍ରଜାହିତ ॥
ସେ ଯୁଧିଷ୍ଠିର ସତ୍ୟସନ୍ଧ । କଲେ ଗୋ-କଲ୍ୟାଣେ ପ୍ରବନ୍ଧ ॥
ତେଣୁ ତାଙ୍କର ସୁଶାସନେ । ସୁଖେ ରହିଲେ ପ୍ରଜାଗଣେ ॥
ପଞ୍ଚେ ସେ ବହୁ ଧେନୁଦାନ । କରି ଲଭିଲେ ମହାପୁଣ୍ୟ ॥
ହେ ଶିଷ୍ୟ ଏ ଶୁଦ୍ଧ ଚରିତ । ଲୋକରେ କର ସୁବିଦିତ ॥
ରାଜା ଧନକ ବୃତ୍ତୀଶ୍ୱର । ହୁଅନ୍ତୁ ଗୋ-ରକ୍ଷେ ତତ୍ପର ॥
ଦେଖିଣ ତାଙ୍କ ଆଚରଣ । ଶିଖିବେ ରାଜ୍ୟ ପ୍ରଜାଗଣ ॥
ଗୋ-ରକ୍ଷା ହେଲେ ଧର୍ମରକ୍ଷା । ଲୋକରେ ପ୍ରଚରୁ ଏ ଶିକ୍ଷା ॥
ସକଳ ରାଜା ଭୂମିପତି । ଗୋପର ହେବ ଏ ଭାବନ୍ତି ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଅନୁଶାସନିକେ ପର୍ବଣି
ଗୋଦାତୃ ନୃପତିଗଣଗୁଣବର୍ଣ୍ଣନେ ନାମ
ତ୍ରୟୋଦଶୋଽଧ୍ୟାୟଃ ।



## ଚତୁର୍ଦ୍ଦଶ ଅଧ୍ୟାୟ

### ଗୁରୁ ଉବାଚ

ଆବର ଶୁଣ ଇତିହାସ । ଯହିଁ ଗୋ ମାହାତ୍ମ୍ୟ ପ୍ରକାଶ ॥
ଇକ୍ଷ୍ୱାକୁ ବଂଶରେ ସମ୍ଭୂତ । ବସିଷ୍ଠ ଦାସ ଭୂପ ବିଦିତ ॥
ବଶିଷ୍ଠ କୁଳପୁରୋହିତେ । ପୁଚ୍ଛିଲେ ରାଜା ଶୁଦ୍ଧଚିତ୍ତେ ॥

### ସୌଦାସ ଉବାଚ

ହେ କୁଳଗୁରୁ ମହାମତି । ସତସ୍ତୁ ତୁମ୍ଭ ମୋହପ୍ରତି ॥
ଅଛି ପଦାର୍ଥ କି ସଂସାରେ । ଯାହା କୀର୍ତ୍ତନେ ନର ତରେ ॥
ଯାହାର ସେବା ମହାପୁଣ୍ୟ । କହ ହେ ମହର୍ଷି ବରେଣ୍ୟ ॥

### ବଶିଷ୍ଠ ଉବାଚ

ଜଗତେ ଗାଈ ପୁଣ୍ୟତମ । ସକଳ ପୁଣ୍ୟ ସୁଖ ଧାମ ॥
ମଙ୍ଗଳ ସୁଗନ୍ଧର ଖଣି । ସେ ଭୂତଭବ୍ୟ ସନାତନୀ ॥
ଗୃହସ୍ଥ ଗୃହେ ଲକ୍ଷ୍ମୀ ଗାଈ । ତାପସ ଆଶ୍ରମେ ସୁରଭି ॥
ଗୋ-ସ୍ୱରେ ଯାହା ହୁଏ ଦାନ । ନୁହେଁ ତା କେବେ ଅକାରଣ ॥
ଗୋରୁ ନ ରଖେ କାହା ଋଣ । ସୃଷ୍ଟିର ତନ୍ତ୍ର ନର ମୂଳ ॥
ଦେବତା ମୁଖରେ ଆହୁତି । [illegible] ଯେସନ [illegible] ॥
ଗୋ-ମୁଖେ ଆହାର ତେସନ । ସକଳ ଦୁଃଖ ବିନାଶନ ॥
ଗୋ ତହିଁ ସ୍ୱାହା ବଷଟ୍କାର । ସେ ସବୁ ଯଜ୍ଞର ଆଧାର ॥
ସବୁକର୍ମ ଫଳେ ଗୋ-ପ୍ରାପତି । ଗୋଠରୁଁ କର୍ମ ଉତପତ୍ତି ॥
ଗୋ-ତନୁଁ ଲଭି ସଦା କ୍ଷୀର । ଅମୃତ ବିଶୁଦ୍ଧ ରୁଚିର ॥
ପ୍ରାତଃ ସନ୍ଧ୍ୟାରେ ମୁନିଗଣ । ହୋମ କରନ୍ତି ପ୍ରତିଦିନ ॥
ଦୁର୍ଗତି ଦୁଷ୍କୃତ ଅଶେଷ । ଗୋ-ଦାନେ ତରନ୍ତି ମନୁଷ୍ୟ ॥
ସବତ୍ସା କପିଳା ପତାନେ । ଜାଣ ଉଭୟ ଲୋକ ଜିଣେ ॥
ସୁଦୃଢ଼ ସୁଫଳ ଅକୃଶ । ଶତ ପୁଷ୍ଟ ଯୁବା ବୃଷ ॥
ଯେ ଦାନ କରେ ଦେବ ଅର୍ଥେ । ଜିଣେ ସକଳ ଲୋକସ୍ୱରେ ॥
ଜନ୍ମ ଜନମେ ସେହୁ ଆର୍ଯ୍ୟ । ଲଭଇ ଅତୁଳ ଐଶ୍ୱର୍ଯ୍ୟ ॥
ଗୋ ମାତାଙ୍କୁ ଯେ ଦଣ୍ଡବତ । କରେଣି ହୁଏ ନିଦ୍ରାଗତ ॥
ନିଦ୍ରା ଅନ୍ତରେ ଉଠି ପୁଣ । ସ୍ମରେ ଗୋ-ମାତା ପୁଣ୍ୟଗୁଣ ॥

ସନ୍ଧ୍ୟା ପ୍ରଭାତେ ନମେ ନିତ । ସେ ଲଭେ ଧନ ପୁଣ୍ୟ କୀର୍ତ୍ତି ॥
ଗୋ-ମୂତ୍ର ଗୋମୟ ଅଶୁଦ୍ଧ । ତା ଦେଖି ନ ହୋଇବ କ୍ରୁଦ୍ଧ ॥
ଖାଇବ ନାହିଁ ଗୋରୁମାଂସ । ଯହିଁରେ ସର୍ବ ଧର୍ମ ନାଶ ॥
ଗାଭେ ନ କର ଅପମାନ । କରିବ ତାର ଗୁଣଗାନ ॥
ଦୁଃସ୍ୱପ୍ନ ଅନ୍ତେ ନିଦ୍ରାଭଙ୍ଗେ । ଗୋ-ନାମ ବୋଲି ସଙ୍ଗ ସଙ୍ଗେ
ମେଣ୍ଟିବ ସେ ସ୍ୱପନ ଦୋଷ । ମନରେ ଜନ୍ମିବ ସନ୍ତୋଷ ॥
ଗୋମୟ ଲେପିଣ ଶରୀରେ । ଯେ ସ୍ନାନ କରେ ଶୁଦ୍ଧ ମାରେ ॥
ପିଏ ଅଳପ ଗୋରୁମୂତ । ତା ଦେହ ମନ ହୁଏ ପୂତ ॥
ଯେ ନିତ ଖାଇବ ଗୋ କ୍ଷୀର । ତେଜେ ଉଜ୍ଜ୍ୱଳେ ତା ଶରୀର ॥
ହୁଅଇ ବୁଦ୍ଧି ବିଚକ୍ଷଣ । ନ ଭୋଗେ ସେ ଦୁଃଖ କଷଣ ॥
ହୋମରେ ଦେଲେ ଘୃତାହୁତି । ମିଳଇ ଅକ୍ଷୟ ବିଭୂତି ॥
ଗୋ-ଘୃତେ କରିବ ସାଧନ । ଦେବତା ପୂଜା ସ୍ୱସ୍ତ୍ୟୟନ ॥
ଅପରେ ଖୁଆଇବ ଘୃତ । ତେଣେ ହୋଇବ କୃତ୍ୟକୃତ୍ୟ ॥
ଖାଇବେ ନିଜେ ନିତ ଘୃତ । ମଣିବ ସେ ଯେସନେ ଅମୃତ ॥
କରିବ ଗୋ-ଜାତିର ପୁଷ୍ଟି । ଗୋ-ଜାତି ଚଳାଏ ଏ ସୃଷ୍ଟି ॥
ଗୋମତୀ ମନ୍ତ୍ରେ ସ୍ଥିର ମନେ । ଶ୍ୟାମନ୍ତି ଧେନୁକୁ ଯତନେ ॥
ରଚନ ମନ୍ତ୍ରିଣ ତା ଗାହେ । ହୁଏ ଯେ ଉପଯୁକ୍ତ ପାହେ ॥
ଯାଏ ତା ସର୍ବ ପାପ ନାଶ । କେବେହେଁ ନ ପାଏ ସେ ହ୍ରାସ ॥
ପ୍ରତ୍ୟହ ପ୍ରାତଃ ସନ୍ଧ୍ୟାକାଳେ । ପଢ଼ିବ ଗୋସ୍ତବ ନିଷ୍ଠାଳେ ॥
କରିବ ଯୋଡ଼ି ବେନି ହାତ । "ହେ ପୁଣ୍ୟ ଧେନୁ ହେ ଗୋମାତ
ହେ ସ୍ୱର୍ଣ୍ଣଶୃଙ୍ଗି ଦୁଗ୍ଧବତି । ତୁମ୍ଭେ କେବଳ ମୋର ଗତି ॥
ସୁରଭିସୁତା ଶୁଦ୍ଧଗନ୍ଧା । ତୁମ୍ଭ ପାଦେ ମୋ ପ୍ରାଣ ବନ୍ଧା ॥
କରେ ମୁଁ ନିତ ଗୋ ଦର୍ଶନ । ହୁଅ ମା ମୋ ପ୍ରତି ପ୍ରସନ୍ନ" ॥
ସକଳ ଜନ ପ୍ରାଣଦାତା । ସୁଖଦା ସୁଭଦା ଗୋ ମାତା ॥
ଗୋ ମାତା ମୋର ମୁଁ ତାହାର । ନାହିଁ ଉଭୟେ ପରପର ॥
ଏକଇ ଉଭୟ ଉତ୍ପତ୍ତି । ଉଭୟେ ଉଭୟର ଗତି ॥

ପଢ଼େ ଯେ ନିତ୍ୟ ଏ ଗୋ-ସ୍ତବ । ନ ପାଏ କେବେ ପରାଭବ ॥
ବିପଦେ ପଢ଼େ ଯେ ବିଶ୍ବାସେ । ନ ପଡ଼େ କଦାପି ସେ ଫାସେ ॥
ସମ୍ପଦେ ଯେତୁ ଏହା ପଢେ । ଦିନୁଁ ଦିନୁଁ ତା ଭାଗ୍ୟ ବଢ଼େ ॥
ହେ ଶିଷ୍ୟ ଏ ପୁଣ୍ୟ ଗୋ-ସ୍ତବ । ଗୋ-ଜାତି ମାହାତ୍ମ୍ୟ ଗୌରବ
କହିବ ବୁଲି ଦ୍ୱାର ଦ୍ୱାର । କର ଏ ଲୋକ ଉପକାର ॥
ଏ ତତ୍ତ୍ୱ ହେଳୁ କର ଜନେ । ପାମର ଗୋପ ଦାସ ଭଣେ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଆନୁଶାସନିକେ
ପର୍ବଣି ସୌଦାସ ବଶିଷ୍ଠ ସମ୍ବାଦେ ଗୋ ସ୍ତବ ବର୍ଣ୍ଣନେ
ଗୋ-ମାହାତ୍ମ୍ୟ କଥନେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।



## ପଞ୍ଚଦଶ ଅଧ୍ୟାୟ

### ବଶିଷ୍ଠ ଉବାଚ

ଶୁଣ ହେ ସଉଦାସ ନୃପ । ଗୋଗଣ କଲେ ଘୋର ତପ ॥
ଦପାଞ୍ଚ ସହସ୍ର ବରଷ । ତପେ ବ୍ରହ୍ମାଙ୍କୁ କଲେ ତୋଷ ॥
ବୋଇଲେ ପ୍ରଭୁ ଦିଅ ବର । ହୋଇବୁ ଆମ୍ଭେ ସର୍ବୋପର ॥
ଦାନ ଦକ୍ଷିଣା ଆଦି କାର୍ଯ୍ୟେ । ଶ୍ରେଷ୍ଠ ମଣିବେ ସର୍ବ ଆର୍ଯ୍ୟେ ॥
ନ ଲଗୁ ଆମ୍ଭ ଦେହେ ଦୋଷ । ପବିତ୍ର ହେଉ ଆମ୍ଭ ବଂଶ ॥
ଦେହେ ଲଗାଉ ଆମ୍ଭ ମଳ । ହୁଅନ୍ତୁ ମାନବେ ନିର୍ମଳ ॥
ଦେବ ମାନବେ ଶୁଦ୍ଧ ଘୃତ । ମଣନ୍ତୁ ଆମ୍ଭ ମଳମୂତ୍ର ॥
ଚର ଅଚର ସର୍ବ ଭୂତ । ହୁଅନ୍ତୁ ଆମ୍ଭ ଯୋଗେ ପୂତ ॥
ଯେ ଦେବ ଆମ୍ଭ ମୁଖେ ଅନ୍ନ । ପାଇ ସେ ପୁଣ୍ୟଲୋକେ ସ୍ଥାନ ॥

ଏହେ ବରେଞ୍ଚ ତପଶେଷେ । ବର ପ୍ରଦାନ କଲେ ତୋଷେ ॥
ଯେ ବର ମାଗିଲ ଗୋଗଣ । ଦେବ ତା ନିଶ୍ଚୟ ପୂରଣ ॥
ଦେବ ନିଷ୍ପାପ ନିଷ୍କଳଙ୍କ । ତାରିବ ଭୁମ୍ଭେ ସର୍ବଲୋକ ॥
ଲଭିଣ ସିଦ୍ଧ ତପବଳେ । ଗୋ-ଜାତି ସିଦ୍ଧ ଏ ଭୂତଳେ ॥
ହୋଇଲେ ତହୁଁ ଲୋକମାତା । ସକଳ ଜନ-ପଣ୍ୟଦାତା ॥
ପ୍ରଭାତେ ନମିଲେ ଗୋ-ପଦ । ମିଳଇ ସକଳ ସମ୍ପଦ ॥
ସକଳ ଲୋକର ଆଶ୍ରୟ । ଗୋ-ଜାତି ଶୁଦ୍ଧ ପୁଣ୍ୟମୟ ॥
ତେଣୁ ସକଳ ଲୋକପର । ଗୋ-ଜାତି ଶ୍ରେଷ୍ଠ ଶୁଭକର ॥
ଗୋ-ଦାନେ ସୁକୃତ ଅଶେଷ । ସଂକ୍ଷେପେ ଶୁଣ ତା ନରେଶ ॥
ସବତ୍ସା କପିଳା ଯେ ଦିଏ । ସେ ବ୍ରହ୍ମଲୋକେ ସ୍ଥାନ ପାଏ ॥
ଦେଲେ ସବତ୍ସା ଶ୍ୱେତ ଗାଈ । ଅବଶ୍ୟ ଇନ୍ଦ୍ରଲୋକ ଲଭି ॥
ଦେଲେ ସବତ୍ସା କଳା ଗାଈ । ଅଗ୍ନି ଲୋକରେ ସ୍ଥାନ ପାଇ ॥
ଦେଲେ ସବତ୍ସା ଧୂମ୍ରବର୍ଣ୍ଣୀ । ଯମ-ଲୋକରେ ବସେ ଦାନୀ ॥
ସବତ୍ସା ଫେଣବର୍ଣ୍ଣୀ ଗାଈ । ଦେଲେ ବରୁଣଲୋକ ଯାଇ ॥
ବାୟୁ କୁବେର ବସୁ ଆଦି । ଶାସ୍ତ୍ରରେ ଯେ ଲୋକ ପ୍ରସିଦ୍ଧି ॥
ଗୋ-ଦାତା ସେ ସବୁଲୋକେ । ରହଇ ଆନନ୍ଦ ଅଶୋକେ ॥
ଧେନୁର ଗୁଣ ବର୍ଣ୍ଣଜାତି । ସବୁରେ ଦାତା ଲଭେ ଗତି ॥
ବୃଷ ବା ବଳଦ ପ୍ରଦାନ । ଗୋ-ଦାନୁ କଲେ ବା ସମାନ ॥
ଗାଈ ବୃଷଭ ବା ବଳଦ । ସକଳେ ସ୍ୱର୍ଗଫଳପ୍ରଦ ॥
ଭେଦି ଅମ୍ବରର ମେଘରାଶି । ଦିବ୍ୟ ଉଜ୍ଜ୍ୱଳ ଯାନେ ବସି ॥
ଗୋ-ଦାତା ଯାଏ ସ୍ୱର୍ଗବାସେ । ସୁରନାରୀ ତା ଚଉପାଶେ ॥
କରନ୍ତି ନୃତ୍ୟ ନାନାରଙ୍ଗେ । ରମେ ସେ ସୁଖେ ତାଙ୍କ ସଙ୍ଗେ ॥
ଗୋ-ଦେହେଁ ରୋମରାଜି ଯେତେ । ତେତିକି ବର୍ଷ ପର୍ଯ୍ୟନ୍ତେ ॥
ସ୍ୱର୍ଗଲୋକରେ ସେ ନିବସେ । ପୁଣି ଯେବେ ଏ ମର୍ତ୍ତ୍ୟେ ଆସେ ॥
ଜନମେ ଭାଗ୍ୟବନ୍ତ ଘରେ । ଜୀବନ କାଟଇ ସୁଖରେ ॥
କରେ ସତ୍କର୍ମ ଯାଏ ଯଶ । ଗୋ-ଦାନ ଫଳ ଏ ସୌଦାସ ॥

ବାଞ୍ଛା କରିବ ଯେ ଗୋ-ଧନ । କହିବ ଶୁଦ୍ଧ କରି ମନ ॥
"ଗୋ-ମାତା ଘୃତ-କ୍ଷୀର-ପ୍ରଦା । ଗୋ-ମାତା ସକଳ ବରଦା ॥
ଘୃତ ଉଦ୍ଭବ ଘୃତ ଯୋନି । ମୋ ଗୃହେ ରହ ତପସ୍ୱିନି ॥
ମୋ ନାଭି ହୃଦେ ଦେହେ ମନେ । ବିରାଜ୍ ଘୃତ ଅନୁକ୍ଷଣେ ॥
ମୋ ଆଗେ ପଛେ ଚଉପାଶେ । ସର୍ବଥ ସଦା ମୋର ବାସେ ॥
ସୁଖେ ରହନ୍ତୁ ଗୋନିଚୟ । ଗୋ-ଗଣେ ହେଉ ମୋ ଆଶ୍ରୟ ॥
ସୁରୂପା ବହୁରୂପା ଧେନୁ । ବଢ଼ନ୍ତୁ ମୋର ଦିନୁ ଦିନୁ ॥
ଯାହାର ଚର୍ମ ଶୃଙ୍ଗବାଳ । ଆଉର କ୍ଷୀର ମୂତ୍ରମଳ ॥
ଲୋକ-ହିତରେ ପ୍ରୟୋଜନ । ତା ତହୁଁ କେ ଆଉ ପ୍ରଧାନ ॥
ଯା ଦାନେ ପୁଣ୍ୟ ଅଗଣିତ । ବ୍ୟାପିଛି ଯେ ସର୍ବ ଜଗତ ॥
ମେ ଭୂତଭବ୍ୟ ମାତୃପଦେ । ସାଷ୍ଟାଙ୍ଗ ପ୍ରଣାମେ ମୁଁ ବନ୍ଦେ" ॥
ସ୍ଥିର ନିର୍ମଳ ଶୁଚିବନ୍ତ । ଯେ ଏହା ପଢ଼େ ସନ୍ଧ୍ୟା ପ୍ରାତଃ ॥
ବିଶ୍ୱାସେ ନମଇ ଗୋ-ପଦେ । ସେ କେବେ ନପଡ଼େ ବିପଦେ ॥
ଖଣ୍ଡେ ତାହାର ପାପମାନ । ଗୋ-ଧନେ ହୁଏ ଭାଗ୍ୟବାନ ॥

## ଶୁକ ଉବାଚ

ଏ ବ୍ରହ୍ମା ସୌଦାସ ସମ୍ବାଦ । ଶୁଣିଲେ ନ ଲଗେ ପ୍ରମାଦ ॥
ଶୁଣାଅ ଲୋକେ ଏ ଚରିତ । ଶୁଦ୍ଧ ସୁନ୍ଦର ସୁପବିତ ॥
ଗୋ-ଜାତି ପ୍ରତି ହେଲେ ଭକ୍ତ । ବଢ଼ିବ ଧନ ଜନ ଶକ୍ତ ॥
ଦିଅ ହେ ଜନେ ଏଣେ ମତି । ଘେନ ଗୋପର ଏ ବିନତି ॥

ଇତି ଶ୍ରୀ ଗୋ ମାହାତ୍ମ୍ୟେ ମହାଭାରତାର୍ଗତେ ଆନୁଶାସନକେ ପର୍ବଣି
ବ୍ରହ୍ମାସୌଦାସମ୍ବାଦେ ଗୋ-ସ୍ତବ ବର୍ଣ୍ଣନେ ଗୋ-ମାହାତ୍ମ୍ୟ
କଥନେ ନାମ ପଞ୍ଚଦଶୋଽଧ୍ୟାୟଃ ।

●

# ଷୋଡଶ ଅଧ୍ୟାୟ

## ଯୁଧିଷ୍ଠିର ଉବାଚ

ହେ କୁଳବୃଦ୍ଧ ପିତାମହ । ବଢ଼ଇ କ୍ରମେ ମୋ ଆଗ୍ରହ ॥
ଶୁଣି ଗୋ-ମାହାତ୍ମ୍ୟ ଅଦ୍ଭୁତ । ନ ହୁଏ ମୋ ମନ ତୃପତ ॥
ଆବର କହ ଗୋ-ଚରିତ । ସର୍ବ ସୁଖଦ ଶୁଦ୍ଧ ପୂତ ॥
ପବିତ୍ରେ ଯେ ପବିତ୍ରତମ । ସକଳ ଲୋକେ ଯେ ଉତ୍ତମ ॥
ଯେ ଲୋକ ପରମ ପାବନ । କହ ମୋତେ ସଂଶୋଧନ ॥

## ଭୀଷ୍ମ ଉବାଚ

ଗୋ-ଜାତି ସର୍ବାର୍ଥ ସାଧିନୀ । ସୁଖଦା ମାନବ-ପାବନୀ ।
ସକଳ କଲ୍ୟାଣ କାରଣ । ପାଳନ୍ତି ସଦା ପ୍ରଜାଗଣ ।
ଦେଇଣ ଘୃତ ଦଧି ଦୁଧ । ସାଧନ୍ତି ସର୍ବଜନ ମୁଦ ।
ଗୋ-ତନ୍ତୁଁ ବଳ ପୁଣ୍ୟତର । ତ୍ରିପୁରେ ନାହିଁ ଯୁଧିଷ୍ଠିର ।
ଦେବଙ୍କ ଉପରେ ଗୋ-ଜାତି । କରନ୍ତି ସ୍ୱର୍ଗେ ଅବସ୍ଥିତି ।
ଗୋ-ଦାନ ଫଳରେ ମାନବ । ଲଭନ୍ତି ଅକ୍ଷୟ ବିଭବ ।
ତରନ୍ତି ମହାବନ୍ଧ ଘୋର । ଯାଆନ୍ତି ଅନ୍ତେ ସ୍ୱର୍ଗପୁର ॥
ମାନ୍ଧାତା ଯୌବନାଶ୍ୱ ଆଦି । ଗୋଦାନ ଦେଇ ଯଥାବିଧି ॥
ପାଇଲେ ଯେ ପରମ ଗତି । ଦେବଙ୍କୁ ତା ଦୁର୍ଲ୍ଲଭ ଅତି ॥
କହିବି ଏବେ ମୁଁ ଗୋ-ଗୀତା । ଶୁକେ ଯା କହିଥିଲେ ପିତା ॥
ଦିନେ ସେ ଶୁକ ମହାମୁନି । ବ୍ୟାସଙ୍କ ଚରଣେ ପ୍ରଣମି ॥
ପୁଚ୍ଛିଲେ ତାଙ୍କୁ ଭକ୍ତିଭରେ । "ହେ ପିତା ଦୟାକର ମୋରେ ॥
କହ ହେ ତପସ୍ୱି ଉତ୍ତମ । କି ଯଜ୍ଞେ ଶ୍ରେଷ୍ଠତମ ।
କି କଲେ ଜଗତେ ମାନବ । ପାଏ ପରମପଦେ ଠାବ

କେଉଁ ପବିତ୍ର କର୍ମଯୋଗେ । ହେବେ ଉତ୍ତମ ସ୍ୱର୍ଗଭୋଗେ ॥
କି ଅବା ପଞ୍ଚର ପଞ୍ଚତ୍ୱ । କହ ମତେ ଏ ସବୁତତ୍ତ୍ୱ" ।
ସର୍ବ ଧର୍ମଜ୍ଞ ବ୍ୟାସମୁନି । ସୂତ ଚନ୍ଦ୍ରୁ ଏ ପ୍ରଶ୍ନ ଶୁଣି ।
କହିଲେ ତ କଥ୍ୟ ଯେ ବୃତ୍ତାନ୍ତ । ଶୁଣ ନିଷ୍ଠାରେ ପାଣ୍ଡୁସୁତ ॥

### ବ୍ୟାସ ଉବାଚ

ସକଳ ଭୂତରେ ପ୍ରତିଷ୍ଠା । ଗୋ-ଜାତି ଜାଣ ଏହି ନିଷ୍ଠା ।
ଗୋ-ସର୍ବ ପ୍ରାଣୀ ପରାୟଣ । ପବିତ୍ର ପାବନ ଗୋଧନ ॥
ଏ ପୂର୍ବ ଲୋକଙ୍କ ବଚନ । ଗୋ-ଜାତି ଥିଲେ ଶିଙ୍ଗହୀନ ॥
ପୂଜିଲେ ଶିଙ୍ଗପ୍ରାପ୍ତି ଆଶେ । ବ୍ରହ୍ମାଙ୍କୁ ଘୋର ଉପବାସେ ॥
ଦେଖିଣ ଗୋ-ଜାତିର କଷ୍ଟ । ଯମ ନିୟମ ବ୍ରତନିଷ୍ଠ ॥
ବ୍ରହ୍ମା ପାଇଲେ ପରିତୋଷ । ପୂରଣ କଲେ ଅଭିଳାଷ ॥
ଯେ ଯାହା ଇଚ୍ଛା ଅନୁସାରେ । ଉଠିଲା ଶିଙ୍ଗ ତାଙ୍କ ଶିରେ ॥
ଗୋ ବ୍ରହ୍ମବରଦତ୍ତ ଶୁଭ୍ର । ହବ୍ୟ କବ୍ୟଦା ପୁଣ୍ୟପ୍ରଦ୍ର ॥
ଶୁଭଗା ସର୍ବ ସୁଲକ୍ଷଣା । ଅକ୍ଷୟ ଅମୃତ ଝରଣା ॥
ଗୋ-ଦାନ ସର୍ବଦାନେ ସାର । କରନ୍ତି ଗୋ-ଦାନ ଯେ ନର ॥
ସେ କଲେ ସର୍ବଦାନ ଜାଣ । ଅତି ସୁକୃତି ଭାଗ୍ୟବାନ ॥
ବସନ୍ତି ସେ ପୁଣ୍ୟ ଗୋଲୋକେ । ସ୍ୱର୍ଗର ପବିତ୍ର ଆଲୋକେ ॥
ଫଳନ୍ତି ଯହିଁ ତରୁଦଳ । ମଧୁର ସୁରସାଳ ଫଳ ॥
ନାନା ବିଚିତ୍ର ପୁଷ୍ପପନ୍ତି । ସୁରଭି ଗନ୍ଧ ପ୍ରକାଶନ୍ତି ॥
ଭୂମି ଅପୂର୍ବ ମଣିମୟ । ସୁବର୍ଣ୍ଣ ବାଲୁକାନିଚୟ ॥
ତରୁଣ ଆଦିତ୍ୟ ବରଣ । ବିରାଜେ ଜଳାଶୟମାନ ॥
ସର୍ବଋତୁରେ ଯାଇ ଜନ । ପରଶେ ସୁଖ ସ୍ନିଗ୍ଧମନ ॥
ରକ୍ତ ଉତ୍ପଳେ ପାଏ ଶୋଭା । ଶୁଭ ବିଚିତ୍ର ମନୋଲୋଭା ॥

ନୀଳ ଉତ୍ପଳ ଶତଦଳ । କମଳ କେଶର ମଞ୍ଜୁଳ ।
ପଦ୍ମିନୀ ସଲିଳେ ବିକାଶେ । ଚଙ୍ଗ ଚନ୍ଦ୍ରୋଷ୍ଟ ତଟପାଶେ ॥
ବନେ ନଦୀରେ ସ୍ୱଚ୍ଛ ନୀର । ସୁରଶର୍ଚ୍ଚିତ ଦିଶେ ଖୀର ।
ଫୁଟିଛି କେତେ କଇଁଅର । ମଧୁର ଗୁଞ୍ଜରେ ଭ୍ରମର ।
ଉତ୍ଫୁଲ୍ଲ ସନ୍ଧ୍ୟାନିକ ବନ । ବେନ ପୁଲକନ ଶୋଭାବନ ॥
ଶୋଭେ ସୁବର୍ଣ୍ଣ ଶୈଳଶ୍ରେଣୀ । ଝଟକେ ସର୍ବ୍ବ ନନ ମଣି ॥
ନାନା ବିଟପ ଲତାଦ୍ରୁମ । ସୁନ୍ଦର ସୁଗନ୍ଧ କୁସୁମେ ॥
ଶୋଭିତ ସେ ଶଇଳପନ୍ତ । ପାଦପେ ଫଳରେ ଲୋଟନ୍ତି ॥
ଦିବ୍ୟ ସରସ ମିଷ୍ଟଫଳ । ସ୍ନିଗ୍ଧ ସୁଗନ୍ଧ ପତ୍ରଦଳ ॥
ତହିଁ ସୁପୁଣ୍ୟବନ୍ତ ଜନ । ରମନ୍ତି ସୁଖେ ନିତି ଦିନ ।
ଯହିଁ କାମନା ସର୍ବ୍ବା ସିଦ୍ଧ । ନାହିଁ ସନ୍ତାପ ଶୋକ କ୍ରୋଧ ।
ବିଟପ ମନୋଜ୍ଞ ବିମାନେ । ଭ୍ରମନ୍ତି ପୁଣ୍ୟକର୍ମୀମାନେ ।
ଶୁଭ୍ର ସୁନ୍ଦର ସ୍ୱର୍ଗବାଳା । କରନ୍ତି ତାଙ୍କ ସଙ୍ଗେ ଖେଳା ॥
ଏପରି ଲୋକେ ଦିବ୍ୟଗତି । ହୁଅର ଗୋ-ଦାନେ ପ୍ରାପତି ।
ଯେ କରେ ଗୋ-ସେବା ନିରତ । ତା ପ୍ରତି ଦେବଗଣେ ପ୍ରୀତ ॥
ଦିଅନ୍ତି ସୁଦୁର୍ଲ୍ଲଭ ବର । ସୁଖେ ଭୋଗେ ସେ ଇହ ପର ॥
ଗୋ-ଜାତି ପ୍ରତି କେବେ ମନେ । ପାଞ୍ଚିବ ନାହିଁ ଦ୍ରୋହ କ୍ଷଣେ ॥
ଭକ୍ତିରେ କର ନମସ୍କାର । ଚରଣେ ପୂଜିବ ତାଙ୍କର ।
ନିର୍ମଳ ଶାନ୍ତ ଶୁଦ୍ଧଚିତ୍ତ । ଗୋ-ସେବା କରଇ ଯେ ନିତ୍ୟ
ସେ ଲଭେ ଗୋ ମାତା କଲ୍ୟାଣ । ଅକ୍ଷୟ ତା ସୁକୃତ ଜାଣ ।
ଆଚମି ସୁନିର୍ମଳ ଜଳ । ବସି ଗୋଗୋଷ୍ଠ ମଧ୍ୟସ୍ଥଳେ ॥
ଗୋମନ୍ତ୍ର ଯେହୁ କରେ ଜପ । ନ ଲାଗେ ତାକୁ କେବେ ପାପ ॥
ଯେ ଲୋଡେ ସୁତ ପାଏ ସୁତ । ଅଥବା ସମ୍ପଦ ବହୁତ ।
ଯେ ନାରୀ ବାଞ୍ଛେ ଯେଉଁ ପତି । ତାହାର ହୁଏ ତା ପ୍ରାପତି ।
ଯା ପ୍ରତି ଗୋ-ମାତା ସନ୍ତୋଷ । କି ତାର ରହେ ଅବଶେଷ ॥
ଦେବେ ପୂଜନ୍ତି ଯାର ପଦ । ଭୁଞ୍ଜନ୍ତି ଦେବଙ୍କ ସମ୍ପଦ ।

ଏ ପଞ୍ଚମସ୍ତୁ ସୃଷ୍ଟି ମୂଳ । ପବିତ୍ର ପାବନ ଗୋକୁଳ ।
ତୁଷ୍ଟ ସେ ହେଲେ ଜନ ପ୍ରତି । ନ ହେବେ କା ଭାଗ୍ୟ ଖଣ୍ଡିତ ॥
ବ୍ୟାସଙ୍କ ମୁଖଁ ଏ ବଚନ । ଶୁଣି ସେ ଶୁକ ତପୋଧନ ॥
କଲେ ଗୋ ପଦେ ନିତ୍ୟ ପୂଜା । ହେ ଯୁଧିଷ୍ଠିର ମହାରାଜା ॥
ଗୋ-ପୂଜା ତୁମ୍ଭେ କର ସଦା । ଗୋ-ମାତା ହୋଇଲେ ବରଦା ॥
ପାଇବ ତୁମ୍ଭେ ସର୍ବ ସିଦ୍ଧି । ଗୋ ରକ୍ଷା କାର୍ଯ୍ୟେ ରଖ ବୁଦ୍ଧି ॥

## ଶୁକ ଉବାଚ

ଶୁକଙ୍କୁ ମହାମୁନି ବ୍ୟାସ । ଦେଲେ ଯେ ସାଧୁ ଉପଦେଶ ॥
ଯୁଧିଷ୍ଠିର ଯା ପିତାମହ । କହିଲେ କରି ଅନୁଗ୍ରହ ॥
ସେ ଦିବ୍ୟ ମହା ଉପଦେଶ । କହିବ ଲୋକରେ ବିଶେଷ ॥
ନରେ ତା କରିବ ପାଳନ । ପୂଜିବ ନିତି ଗୋ-ଚରଣ ।
ଗୋ-ମାତା କରିବେ କରୁଣା । ନ ହେବ ଧନ ଧାନ୍ୟ ଊଣା ।
ପୁତ୍ର କଳତ୍ର ଯଶ ପୁଣ୍ୟ । ଲଭିଣ ଲୋକେ ହେବ ଧନ୍ୟ ॥
ଶୁଣ ହେ ଜନେ ଏ ଚରିତ । ଖଣ୍ଡିବ ଅଶେଷ ଦୁରିତ ।
ବ୍ୟାସଙ୍କ ଉପଦେଶମାନ । କର ସତତ ଗୋ ପାଳନ ॥
ଗୋ-ମାତା ହେଲେ ସୁପ୍ରସନ୍ନ । ସୁଖେ ପାଇବ ବସ୍ତ୍ର ଅନ୍ନ ॥
ଅଧମ ଗୋପ ଯୋଡି କର । ଜଣାଏ ଏହା ବାରମ୍ବାର ॥

ଇତି ଶ୍ରୀ ଗୋ ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଅନୁଶାସନକେ ପର୍ବଣି
ବ୍ୟାସ-ଶୁକ ସମ୍ବାଦେ ଗୋମତିମନ୍ତ୍ରମାହାତ୍ମ୍ୟ କଥନେ
ନାମ ଷୋଡ଼ଶୋଽଧ୍ୟାୟଃ ।



## ସପ୍ତଦଶ ଅଧ୍ୟାୟ

### ସୂତ ଉବାଚ

ପୁନଶ୍ଚ ରାଜା ଯୁଧିଷ୍ଠିର । କହନ୍ତ ନୁଆଇଁଣ ଶିର ॥

### ଯୁଧିଷ୍ଠିର ଉବାଚ

ହେ ପିତାମହ ମହାଶୟ । ମନେ ମୋ ଲାଗଇ ସଂଶୟ ॥
ଗୋମୟେ ଲକ୍ଷ୍ମୀଙ୍କ ନିବାସ । ଶୁଣି ମୋ ନ ହୁଏ ବିଶ୍ବାସ ॥
ପ୍ରାଣୀର ପୃଷ୍ଠଷେ କପଣ । ରହିଲେ ଆସି ଦେବୀ ଶିଘ୍ର ॥
ତୁମ୍ଭେ ସକଳ ଜ୍ଞାନାଧାର । ସନ୍ଦେହ ଫେଡ଼ ହେ ମୋହର ॥

### ଭୀଷ୍ମ ଉବାଚ

ଶୁଣ ହେ ଗୋ-ଲକ୍ଷ୍ମୀ ସମ୍ବାଦ । ପ୍ରସିଦ୍ଧ ଏ ଲୋକ ପ୍ରବାଦ ॥
ସୁନ୍ଦର ଦିବ୍ୟରୂପ ଧରି । ଗୋଗଣେ ପ୍ରବେଶିଲେ ଶ୍ରୀଶ୍ରୀ ॥
ଦେଖି ସେ ରୂପ ମନୋହର । ଗୋରୁ ମଣନ୍ତି ଚମତ୍କାର ॥

### ଗାବଃ ଊଚୁଃ

କିଏ ସେ ତୁମ୍ଭେ କାହୁଁ ଆସି । ଆମ୍ଭ ଭିତରେ ଅଛ ପଶି ॥
ତୁମ୍ଭ ଏ ରୂପ ଅନୁତ୍ତମ । କହ ହେ ଦେବି ତୁମ୍ଭ ନାମ ॥
କାହିଁ ଏ ରୂପ ପଟାନ୍ତର । ଦେବ ମାନଙ୍କେ ଅଗୋଚର ॥
ଦେଖିଣ ଲାଗଇ ବିସ୍ମୟ । ଫେଡ଼ ଆମ୍ଭର ଏ ସଂଶୟ ॥
କର୍ପା ଆସିଛ କାହିଁ ପାଖ । କିଏ ସେ ତୁମ୍ଭେ ସତ କହ ॥

### ଶ୍ରୀ ଉବାଚ

ଶ୍ରୀ ବୋଲି ଜଗତେ ମୁଁ ଖ୍ୟାତ । ମୋ ଯୋଗେ ଲୋକେ ଭାଗ୍ୟବନ୍ତ
ଧନ ସମ୍ପଦ ଶୋଭା ଯଶ । ମୋ ଯୋଗେ ପାଆନ୍ତି ମନୁଷ୍ୟ ॥
ମୋର ବର୍ଜନେ ଦୈତ୍ୟକୁଳ । ନଷ୍ଟ ହୁଅନ୍ତି ଚିରକାଳ ॥
ଦେବତାଗଣ ମୋ ପ୍ରସାଦେ । ରହନ୍ତି ସର୍ବଦା ପ୍ରମୋଦେ ॥
ବିଷ୍ଣୁ ବାସବ ଚକ୍ଷ୍ମାନ । ମୋ ଯୋଗେ ସର୍ବେ ଭାଗ୍ୟବାନ
ନ ହୁଏ ମୁଁ ଯାହାର ବଶ । ହୁଏ ତାହାର ସର୍ବନାଶ ॥
ମୋ ଯୋଗେ ଧର୍ମ ଅର୍ଥ କାମ । ମୁଁ ସର୍ବଲୋକ ସୁଖଧାମ ॥
ଏସନ ଜାଣ ମୋ ପ୍ରଭାବ । ମନରେ ଅନ୍ୟଥା ନ ଭାବ ॥
କରିବ ତୁମ୍ଭ ଦେହେ ବାସ । ଏଣେ ମୋ କରୁଛି ମାନସ ॥
ତେଣୁ ଏଠାକୁ ଆଗମନ । ଦିଅ ହେ ମତେ ଏବେ ସ୍ଥାନ ॥
ଗୋ-ଗଣ ହୁଅ ଶ୍ରୀସମ୍ପନ୍ନ । ତୁମ୍ଭଙ୍କୁ ମୁଁ ଅତି ପ୍ରସନ୍ନ ॥

### ଗାବଃ ଊଚୁଃ

ପ୍ରକୃତି ତୁମ୍ଭର ଚଞ୍ଚଳ । ତୁମ୍ଭଙ୍କୁ ରଖି ନାହିଁ ଫଳ ॥
ଆଜି ରହିବ କାଲି ଯିବ । ଏଥିରେ କି ଲାଭ ମିଳିବ ॥
ନାହିଁ ଆମ୍ଭର ପ୍ରୟୋଜନ । ଯାଅ ଶ୍ରୀ ଦେଖି ଅନ୍ୟ ସ୍ଥାନ ॥

### ଶ୍ରୀ ଉବାଚ

ଶୁଣ ଗୋ-ଗଣ ମୋ ବଚନ । ନ ଦିଅ ମତେ ଅପମାନ ॥
ନ କର ମତେ ଅନାଦର । ଏ ନୁହେ ଉଚିତ ତୁମ୍ଭର ॥
ଲୋକରେ ମୁଁ ଅତି ଦୁର୍ଲ୍ଲଭ । ମୋ ଯୋଗେ ସକଳ ଗୌରବ ॥
ନିଜେ ଆସିଲି ତୁମ୍ଭ ପାଶ । ମାଗୁଛି ତୁମ୍ଭ ମଧ୍ୟେ ବାସ ॥

ତେଣୁ ସିନା ଏ ଅନାଦର । ଏମନ୍ତ ସଂସାର ଭେତର ॥
ଦେବତା ଦାନବ ମାନବ । ଉରଗ ପିଶାଚ ଗନ୍ଧର୍ବ ॥
ଅତି କଠୋର ତପଫଳେ । ଲଭନ୍ତି ମତେ ବହୁ କାଳେ ॥
ତ୍ରୈଲୋକ୍ୟ ପ୍ରଭବ ମୋହର । ମତେ ନ କର ଅନାଦର ॥
ତୁମ୍ଭ ଶରୀରେ ଦିଅ ସ୍ଥାନ । ଘେନ ମୋର ଏ ନିବେଦନ ॥

## ଗାବଃ ଊଚୁଃ

ଜାଣୁ ହେ ପ୍ରଭାବ ତୁମ୍ଭର । ନ କରୁଁ ତୁମ୍ଭେ ଅନାଦର ॥
ନ କରୁଁ କଦା ପରିଭବ । କି ଅବା ଆପଣା ଗରବ ॥
ଚଞ୍ଚଳ ତୁମ୍ଭର ପ୍ରକୃତି । କ୍ଷଣେ ସଂସ୍ଥିତ କ୍ଷଣେ ଗତି ॥
ତେଣୁ ନ ଲୋଡ଼ୁଁ ତୁମ୍ଭ ବାସ । ନ ଘେନ ଏଥି ଆମ୍ଭ ଦୋଷ ॥
ଅଧିକେ ନାହିଁ ପ୍ରୟୋଜନ । ଦେଖ ଗୋ ଦେବି ଅନ୍ୟ ସ୍ଥାନ ॥
ଆମ୍ଭର ଅଛି ଭଲ ବପୁ । ନିଜ ନିଜର ପୁଷ୍ଟ ତପୁଁ ॥
ନ ଲୋଡ଼ୁ ତେଣୁ ତୁମ୍ଭ ସଙ୍ଗ । ଅଟଇ ଯାହା କ୍ଷଣଭଙ୍ଗ ॥

## ଶ୍ରୀ ଉବାଚ

ହେ ସର୍ବ ସୁରଭି ତନୟା । କର ମୋ ପ୍ରତି ତୁମ୍ଭେ ଦୟା ॥
କରିବ ଯେବେ ପ୍ରତ୍ୟାଖ୍ୟାନ । ହେବ ମୋ ଘୋର ଅପମାନ ॥
ତୁମ୍ଭେ ସକଳ ଭାଗ୍ୟବତୀ । ଜଗତ ହିତେ ଉତପତ୍ତି ॥
ତୁମ୍ଭେ ସକଳ ଲୋକଗତି । ଘେନ ମୋହର ଏ ବିନତି ॥
ଭଜେ ମୁଁ ତୁମ୍ଭର ଶରଣ । ନ କର ମୋର ଅପମାନ ॥
ପବିତ୍ର ତୁମ୍ଭ କଳେବର । ଶୁଦ୍ଧ ମଙ୍ଗଳ ମନୋହର ॥
ଶ୍ରେଷ୍ଠାଙ୍ଗେ ନାହିଁ ମୋର ଆଶ । କୁତ୍ସିତ ସ୍ଥାନେ ଦିଅ ବାସ ॥
ତୁମ୍ଭର ଯେତେ ପ୍ରତି ଅଙ୍ଗ । ଲୋମ ଲାଙ୍ଗୁଳ ଖୁରା ଶୃଙ୍ଗ ॥

## ଶ୍ରୀ ଉବାଚ

ସକଳ ବିଶୁଦ୍ଧ ପବିତ୍ର । କାନ୍ତି ଶ୍ରୀ ମୂହଇ କୁତ୍ସିତ ॥
କରିବ କେଉଁ ଅଙ୍ଗେ ବାସ । ବିଚାରି ଦିଅ ହେ ଆଦେଶ ॥
କରୁଣ-ବତ୍ସଳା ଗୋ-ଜାତି । ଶୁଣିଣ ଲକ୍ଷ୍ମୀଙ୍କ ବଚନ ॥
ଆପଣା ମଧ୍ୟରେ ବିଚାର । କଲେ ସେ ସର୍ବେ ସୁଧିସ୍ଥିର ॥
ବିଚାରେ ସ୍ଥିର କରି କଥା । ଲକ୍ଷ୍ମୀଙ୍କି କହିଲେ ଗୋ-ମାତା ॥
ଶ୍ରୀ ଦେବି ତୁମ୍ଭେ ଯଶସ୍ୱୀନୀ । ସକଳ ଭାଗ୍ୟ ବିଧାୟିନୀ ॥
ଆସିଛ ନିଜେ ଆମ୍ଭ ପାଶେ । ଭଗିନୀ ସେନେହ ବିଶ୍ୱାସେ ॥
ଅବଶ୍ୟ ତୁମ୍ଭର ସତ୍କାର । ଉଚିତ ସମାନ ଆଦର ॥
କରିବା ବିହିତ ଆମ୍ଭର । ତେଣୁ କରୁଛୁ ଏହା ସ୍ଥିର ॥
ଆମ୍ଭର ମଳ ମୂତ୍ର ଜେନ । ପବିତ୍ର ଅଟେ ଗୋ ଭଗିଣି ॥
ଯେବେ ଏକାନ୍ତ ଅଭିଳାଷ । ତହିଁରେ ତୁମ୍ଭେ କର ବାସ ॥
ମୁଁ ଏହା ବଡ଼ ଭାଗ୍ୟ ମଣେ । ତୁମ୍ଭର ଆଦର ସମ୍ମାନେ ॥
ଗୋମୟ ଗୋ-ମୂତ୍ରେ ନିବାସ । କରି ପାଇବ ସଦା ତୋଷ ॥
ଯାହା କହିଲ ହେଉ ତାହା । ମୋ ପ୍ରତି ଅନୁଗ୍ରହ ଏହା ॥
ମୋ ସଙ୍ଗେ କଣ ଏହି ସତ୍ୟ । ଲକ୍ଷ୍ମୀ ହୋଇଲେ ଅନ୍ତର୍ହିତ ॥
ଏଣୁ ହେ ରାଜା ପାଣ୍ଡୁ ସୁତ । ଗୋ-ମୂତ୍ର ଗୋମୟ ପବିତ୍ର ॥

## ସୂତ ଉବାଚ

ହେ ଶିଷ୍ୟ ଏ ପୁଣ୍ୟ ଆଖ୍ୟାନ । ଲୋକଙ୍କ ମଧ୍ୟରେ ବଖାଣ ॥
ଗୋମୟେ ଲକ୍ଷ୍ମୀଙ୍କ ନିବାସ । ମନେ ରଖିଲେ ଏ ବିଶ୍ୱାସ ॥
ଲକ୍ଷ୍ମୀ ହୋଇବେ ସୁପ୍ରସନ୍ନ । ଦେବେ ସନ୍ତତ ପୂର୍ଣ୍ଣ ଅନ୍ନ ॥
ପୃଥିବୀ ଶସ୍ୟ କ୍ଷେତ୍ରମାନ । ବଢ଼ିବ ରାଜ୍ୟ ଧନଧାନ୍ୟ ॥
ଯେ ନାଶ ଏଣେ ତତ୍ତ୍ୱ ଜାଣେ । ଘରକୁ ଲିପଇ ଗୋବରେ ॥

ନିତି ନ ହେଲେ ଗୁରୁବାରେ । ଲକ୍ଷ୍ମୀ ସୁପ୍ରସନ୍ନ ତାହାରେ ॥
ହୁଏ ସେ ପୁତ୍ରକନ୍ୟାବନ୍ତ । ଚିତ୍ତ ପ୍ରସନ୍ନ ତାହା ପ୍ରତ ॥
ତା'ଘରେ ନ ପଶଇ ରୋଗ । କରେ ସେ ବହୁ ଭାଗ୍ୟ ଭୋଗ ॥
ଲକ୍ଷ୍ମୀଙ୍କର ଏ ମନ କଥା । କେବେହେଁ ନୁହଇ ଅନ୍ୟଥା ॥
ରଖ ହେ ଜନେ ଏ ବିଶ୍ୱାସ । ଗୀତେ କହଇ ଗୋପ ଦାସ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଆନୁଶାସନିକେ ପର୍ବଣି
ଗୋ-ମଳମୂତ୍ରେ ଲକ୍ଷ୍ମୀନିବାସନିରୂପଣେ ନାମ
ସପ୍ତଦଶୋଽଧ୍ୟାୟଃ ।



## ଅଷ୍ଟାଦଶ ଅଧ୍ୟାୟ

### ଶିଷ୍ୟ ଉବାଚ

ଗୋ-ଜାତି ମାହାତ୍ମ୍ୟ ବିସ୍ତର । ଶୁଣିଲି ତୁମ୍ଭ ମୁଖରେ ॥
ଶୁଣି ହେଲି ଭକ୍ତିଯୁକ୍ତ । ହୋଇଲି ଗୁରୁ କୃତ୍ୟ କୃତ୍ୟ ॥
ଦେବଙ୍କ ଠାରୁଁ ଗୋ ପ୍ରଧାନ । ବୁଝନ୍ତୁ ସର୍ବ ଲୋକେ ଅନ୍ଧ ॥
ଗୋ-ଜାତି କେବେ କାହା ପଶୁ । କେଉଁ ପୁଣ୍ୟେ ତା ପାପବଶୁଁ ॥
ମୋ ମନେ ଆସେ ଏ ସନ୍ଦେହ । ଯଥାର୍ଥ ତତ୍ତ୍ୱ କାସ କହ ॥

### ଗୁରୁ ଉବାଚ

ଗୋଲକ ମାହାତ୍ମ୍ୟ ବଖାଣି । ବାସବ ବ୍ରହ୍ମାଙ୍କ କାହାଣୀ ॥
ପୂର୍ବେ ଯା କହିଛନ୍ତି ସୁମର । ସେହି ପ୍ରସଙ୍ଗେ ବେଦବର ॥

ଇନ୍ଦ୍ରଙ୍କୁ କହିଲେ ଯା ଆଜ୍ଞ । ଶୁଣି ସନ୍ଦେହ ମନୁଁ ଯାଉ ॥
ଭୀଷ୍ମ ଏ ତତ୍ତ୍ୱ କଥାନ୍ତରେ । କହି ଅଛନ୍ତି ଯୁଧିଷ୍ଠିରେ ॥
ବ୍ରହ୍ମା ବାସବ କଥାମୃତ । ଏକାନ୍ତ ଚିତ୍ତେ ଶୁଣ ପୁତ ॥

### ବ୍ରହ୍ମା ଉବାଚ

ଗୋଗଣ ମହିମା ଅପାର । ତାହା ନ ଜାଣେ ସୁନାସୀର ॥
ଗୋଲୋକ ଦେବ ଲୋକ ଉପରେ । କହିଛି ଏହା ପୂର୍ବେ ଥରେ ॥
ଗୋ-ଜାତି ପରମ ପ୍ରଭବ । ଏକାନ୍ତେ ଶୁଣ ହେ ବାସବ ॥
ଗୋରୁ ବୋଲନ୍ତି ଯଜ୍ଞ ଅଙ୍ଗ । କହିଛି ପୂର୍ବେ ଏ ପ୍ରସଙ୍ଗ ॥
ଗୋରୁ ଦିଅନ୍ତି ଦୁଧ ଘୃତ । ତହିଁ ପ୍ରଜାଏ ଉପକୃତ ॥
ଗୋସୁତ ଚଷନ୍ତି ମୃତ୍ତିକା । ଚଳାନ୍ତି ପ୍ରଜାଙ୍କ ଜୀବିକା ॥
ଜନମେ ଧାନ୍ୟ ଶାଗ ଆଦି । ତହିଁରେ ଚଳେ ପଞ୍ଚବିଧି ॥
ସହି କଠୋର ଭୋଖ ଶୋଷ । ବହନ୍ତି କେତେ ଭାର କ୍ଳେଶ ॥
କରନ୍ତି ଜନ ଉପକାର । ଗୋ-ଜାତି ସୁକୃତ ଅପାର ॥
ଯେ ସଦା ପର ହିତ ସାଧେ । ସେ ବସେ ଦେବଗଣ କାନ୍ଧେ ॥
ଆପଣେ ବହୁ ଦୁଃଖ ସହି । ମରେ ଯେ ଜନ ପର ପାଇଁ ॥
ନାହିଁ ତା ସୁକୃତର ସୀମା । ଦେବେ ଅଜ୍ଞାତ ତା ମହିମା ॥
ତେଣୁ ଗୋଲୋକ ଶ୍ରେଷ୍ଠ ଅତି । ଦେବଙ୍କୁ ପ୍ରଧାନ ଗୋ-ଜାତି ॥
ଗୋରୁର ପ୍ରତି ଲୋମକୂପେ । ଦେବେ ବସନ୍ତି ନାନାରୂପେ ॥
ବହୁ ତପସ୍ୟା ଫଳେ ଗାଈ । ଅଛନ୍ତି ଏ ପ୍ରଭବ ଲଭି ॥
ବିଷ୍ଣୁ ବାସବ ଆଦି ଦେବେ । ଜନ୍ମିଲେ ଅଦିତି ଗରଭେ ॥
ପୁତ୍ରାର୍ଥେ କଷ୍ଟ ଘୋର ତପ । ଲଭିଲେ ଏ ଭାଗ୍ୟ ଅମାପ ॥
ସୁରଭୀ ଦକ୍ଷଙ୍କ ନନ୍ଦନା । ଦେଖିଣ ଅଦିତି ସାଧନା ॥
ତପ ସାଧିବା କଲେ ସ୍ଥିର । ଗଲେ ସେ କୈଳାଶ ଶିଖର ॥
ସେଠାରେ ବସି ଯୋଗାସନେ । ତପ ସାଧିଲେ ଏକଧ୍ୟାନେ ॥

ଦଶ ସହସ୍ର ବର୍ଷ କାଳ । ତେଜି ସଂପୂର୍ଣ୍ଣ ଅନ୍ନ ଜଳ ॥
ସୁରଭୀ କଠୋର ତପସ୍ୟା । ଦେବଙ୍କୁ ହୋଇଲା ସମସ୍ୟା ॥
ଗୋ-ମତେ ଦେବ ଋଷିଗଣ । କଲେ ସେ କୈଳାଶେ ଗମନ ॥
ତପସ୍ୟା ଦେଖି ହେଲ ଛନ୍ନ । ବନ୍ଦେଲ ସୁରଭି ଚରଣ ॥
ମୁଁ ପରଶଲ ସୁରଭୀଙ୍କି । ତପସ୍ୟା କରୁଛ କାହିଁକି ॥
ତୁମ୍ଭ ଏ ଦୁଷ୍କର ତପସ୍ୟା । ଦେଖି କରନ୍ତି ଦେବେ ଶଂସା ॥
ତୁମ୍ଭ ତପେ ମୁଁ ଅତି ପ୍ରୀତ । ମାଗ ତ ବର ଅଭିପ୍ରେତ ॥
ଯେ ବର ତୁମ୍ଭ ଇଚ୍ଛା ହେବ । ଜାଣ ମୁଁ ତାହା ସତ୍ୟ ଦେବ ॥

## ସୁରଭି ଉବାଚ

ହେ ସର୍ବ ଲୋକ ପିତାମହ । କରିଛ ମୋତେ ଅନୁଗ୍ରହ ॥
ମୋ ପ୍ରତି ଯେବେ ତୁମ୍ଭେ ପ୍ରୀତ । ମୁଁ ହେଲି ଆଜି କୃତ୍ୟ କୃତ୍ୟ ॥
ଲଭିଛୁ ଯେଣୁ ତୁମ୍ଭ ପ୍ରୀତି । ନାହିଁ ମୋ ଆନ ବରେ ମତି ॥

## ବ୍ରହ୍ମା ଉବାଚ

ସୁରଭି କଲ ଯେ ତପସ୍ୟା । ନ ରଖି ବର ଲଭେ ଆଶା ॥
ତେଣୁ ମୁଁ ହୋଇ ସୁପ୍ରସନ୍ନ । କରୁଛି ଏହି ବର ଦାନ ॥
ହେଉ ତୁମ୍ଭର ଅମରତ୍ୱ । ଲୋକରେ ପ୍ରକାଶୁ ମହତ୍ୱ ॥
ତ୍ରିଲୋକ ପରେ ତୁମ୍ଭ ସ୍ଥାନ । ହେବ ଗୋ ଏ ଶ୍ରେଷ୍ଠ ସମ୍ମାନ ॥
ଗୋଲୋକ ହେଉ ଲୋକେ ଖ୍ୟାତ । ତୁମ୍ଭେ ବୋଲାଅ ଲୋକମାତ ॥
ତୁମ୍ଭର ସନ୍ତାନ ସନ୍ତତି । ମର୍ତ୍ତ୍ୟେ ଲଭିବେ ଉତ୍ପତ୍ତି ॥
ସାଧିବେ ସଦା ପ୍ରଜା ହିତ । ହୋଇବ ଜଗତ ପୂଜିତ ॥
ସହସ୍ର କଷ୍ଟ ନିରନ୍ତର । କରିବେ ଲୋକ ଉପକାର ॥
ଧରିବେ ତୁମ୍ଭର ଲକ୍ଷଣ । ଲୋଭରେ ନ କରିବେ ମନ ॥

ଦେବେ ସକଳେ ଦିବ୍ୟ ଭୋଗ । ସାଧିବେ ଏହି କର୍ମ ଯୋଗ ॥
ମର୍ତ୍ତ୍ୟେ ଏ କର୍ମଯୋଗ ଶେଷେ । ଆସିବେ ପୁଣି ତୁମ୍ଭ ପାଶେ ॥
ରହିବେ ଗୋଲୋକେ ନିଶ୍ଚିନ୍ତ । ଭୁଞ୍ଜିବେ ଅକ୍ଷୟ ଅମୃତ ॥
ସୌଭାଗ୍ୟବତୀ ତୁମ୍ଭେ ଧନ୍ୟା । ବ୍ୟାପନ୍ତୁ ତୁମ୍ଭ ସୁତକନ୍ୟା ॥
ମାନୁଷଲୋକେ ଦେଶେ ଦେଶେ । ବଞ୍ଚାନ୍ତୁ ଲୋକେ ସୁଧାରସେ ॥
ଯେ ସୁଖ ତୁମ୍ଭ ଅଭିପ୍ରେତ । ତା ସବୁ ଦେବ ଜଗପତ ॥
ଆଲୋକେ ହେଉ ତୁମ୍ଭ ବାସ । ଯହିଁ ନ ପଶେ ମୃତ୍ୟୁ ତ୍ରାସ ॥
ଏପରି ଗୋଲୋକ ଉତ୍କୃଷ୍ଟ । କୃଷ୍ଣ ଏ ତତ୍ତ୍ୱ ଲକ୍ଷ୍ମୀପତି ॥
ଗୋଲୋକେ ନାହିଁ ଜରା ଶୋକ । ସେ ତେଜେ ମଳିନ ପାବକ ॥
ଦିବ୍ୟ କାନନ ଦିବ୍ୟ ଗିରି । ଦିବ୍ୟ ଭଜନ ଦିବ୍ୟ ଶିଖି ॥
ଦିବ୍ୟ ବିମାନ ଇଚ୍ଛା ଗତି । ଅଚିନ୍ତ୍ୟ ସେ ଲୋକ ବିଭୂତି ॥
ନାହିଁ ସେ ସ୍ଥଳେ ଦିବାନିଶି । ଗତି ନ କରେ ରବି ଶଶୀ ॥
ଦିବ୍ୟ ଆଲୋକ ଦିବ୍ୟ କାନ୍ତି । ସୁରଭି ଦ୍ୟୁଲୋକ ସୁଶାନ୍ତି ॥
ଦେବତା ମାନବ କଳ୍ପନା । ନ ଜାଣି ପାରେ ଯା ରଚନା ॥
ଗୋଲୋକେ ତାହା ସବୁ ଠୁଳ । ସମ୍ଭୋଗ ଐଶ୍ୱର୍ଯ୍ୟ ସଙ୍କୁଳ ॥
ତପସ୍ୟା ବ୍ରହ୍ମଚର୍ଯ୍ୟ ଦାନ । ସତ୍ୟ ତିତିକ୍ଷା ଦମ ଧ୍ୟାନ ॥
ଏ ଆଦି କଠୋର ସାଧନେ । ଗୋଲୋକେ ଯାନ୍ତି ଯୋଗୀଜନେ
ଅସୀମ ଗୋଲୋକେ ବିଭବ । କିବା ମୁଁ କହିବି ବାସବ ॥
ଏ ପୁଣ୍ୟ ଗୋଲୋକ ଚରିତ । ଶୁଣେ ଯେ ସେ ହୁଏ ପବିତ ॥
ପୂରେ ତା ସକଳ କାମନା । ସତ୍କର୍ମ ବଢ଼ଇ ସାଧନା ॥
ବଂଶ ପାବନ ସୁତ ଲଭେ । ବିଳସେ ଅତୁଳ ବୈଭବେ ॥
ନାରୀ ହୁଅନ୍ତି ଭାଗ୍ୟବତୀ । ସୁପୁତ୍ରୀ ପତିଭକ୍ତା ସତୀ ॥
ଗୃହେ ବିରାଜେ ଶାନ୍ତି ସଦା । ଗୋ-ମାତା ହୁଅନ୍ତି ବରଦା ॥
ସର୍ବ ଦୁରିତ ଯାଏ କ୍ଷୟ । କର ହେ ଜନେ ଏଣେ ଲୟ ॥
ବ୍ରହ୍ମା ଯା କହିଲେ ବାସବେ । ଅନ୍ୟଥା ନ ହେବ ତା କେବେ ॥
ଏ ବ୍ରହ୍ମା ବାସବ ସମ୍ବାଦ । ସର୍ବ ବିପଦ-ବିଘ୍ନ ହଦ ॥

ମର୍ତ୍ତି ଏହାକୁ କର ହେତୁ । ଜାଣ ଗୋ-ଜାତ ଧର୍ମ ସେତୁ ॥
କର ଗୋ-ରକ୍ଷା ସଦ୍ଭାବରେ । ପାମର ଗୋପ କହେ ଗୀତେ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଆନୁଶାସନକେ ପର୍ବଣି
ସୁରଭୀ ତପସ୍ୟା କର୍ତ୍ତନେ ନାମ
ଅଷ୍ଟାଦଶୋଽଧ୍ୟାୟଃ ।



## ଊନବିଂଶ ଅଧ୍ୟାୟ

### ଗୁରୁ ଉବାଚ

ହେ ବତ୍ସ ପ୍ରଶ୍ନର ଉତ୍ତର । ହେଲା ତ ତୁମ୍ଭର ଗୋଚର ॥
ସୂନାସୀରର ଯା ଆଦିପିତା । କହିଲେ ଗୋ-ଉତ୍ପତ୍ତି ଗୀତା ॥
ବୁଝିଲଟି କି ତାର ତତ୍ତ୍ୱ । ଗୋ-ଜାତି ଗୌରବ ମହତ୍ତ୍ୱ ॥
ମନରୁ ଗଲା ତ ସଂଶୟ । କହନ୍ତ ଏବେ ମୋ ସମୟ ॥
ଶୀଘ୍ର ମୁଁ ଛାଡ଼ିବି ଏ ଦେହ । ପଚାର ଆଉ କି ସନ୍ଦେହ ॥

### ଶିଷ୍ୟ ଉବାଚ

ଗୋ-ଜାତି ମାହାତ୍ମ୍ୟ ଆଖ୍ୟାନ । ଶୁଣି ମୁଁ ହୋଇଅଛୁ ଧନ୍ୟ ॥
ଗୋ-ଜାତି ଉପକାର କଏ । ସୁଝି ପାରିବ ନରଦେହେ ॥
ସନ୍ଦେହ ନ ମେଣ୍ଟିଲା କିନ୍ତୁ । ଗୋ-ଜାତି ପଶୁ କେଉଁ ହେତୁ ॥

## ଗୁରୁ ଉବାଚ

ଗୋ-ଜାତି ପଶୁରୂପ ମାତ୍ର । ଦେବତ୍ୱୁଁ ଅଧିକ ପବିତ୍ର ॥
ନର ଦେବତା ଆଉ ପଶୁ । ବିଭିନ୍ନ ଗୁଣ କର୍ମ ବଶୁଁ ॥
ରୂପ ଆକାରରେ ଯେ ବିଶେଷ । ତହିଁରେ ଲକ୍ଷନ୍ତି କିଶ ॥
ମାନବ କରେ ଅହଙ୍କାର । ମଣେ ନିଜକୁ ସର୍ବୋପର ॥
ଗୋ ଠାରୁଁ ବଡ଼ ସେ କିପରି । କହ ବିସ୍ତରି ବ୍ରହ୍ମଚାରୀ ॥
ଯେ ନର ଅଙ୍ଗ ସୁଘଟନା । ଅପର ସଙ୍ଗେ ତା ତୁଳନା ॥
କନ୍ଧ ବୃଷସ୍କନ୍ଧ ସମ । ମୃଗ ନୟନ ମନୋରମ ॥
କଟି କେଶରୀ ସଙ୍ଗେ ତୁଳ । ସ୍ୱନରେ ନ ଜିଣେ କୋକିଳ ॥
ନାସା ତୁଳନା ଶୁକ ସଙ୍ଗେ । ବିଶେଷ କି ମାନବ ଅଙ୍ଗେ ॥
ଭୋଜନ ଶୟନ ମୈଥୁନ । ଏ ଆଦି କ୍ରିୟା ସାଧାରଣ ॥
ପଶୁ ପକ୍ଷୀଏ କରେ ନର । ଏଥିକି ବିଶେଷ ତାହାର ॥
ଧର୍ମ ହିଁ ମାନବ ବିଶେଷ । ଧର୍ମେ ତରେ ସେ ଭବକ୍ଲେଶ ॥
ହୁଏ ସେ ଧର୍ମପୋତେ ପାର । ଏ ଘୋର ଦୁସ୍ତର ସଂସାର ॥
ଅଛି ନରର ବୁଦ୍ଧି ବଳ । ଅପୂର୍ବ କଳ୍ପନା କୌଶଳ ॥
ତେଣୁ ସେ ବସି ଧର୍ମନାବେ । ଆପଣା ବୁଦ୍ଧିର ପ୍ରଭାବେ ॥
ଜିଣି ପାରଇ ତିନି ଲୋକ । ଏହା ହିଁ ମାନବର ଟେକ ॥
ମାତ୍ର ଏ ସଂସାରେ ମାନବ । କରଇ କେବଳ ଗରବ ॥
ନିଜକୁ ମାତ୍ର ବଡ଼ ମଣେ । ଭାବେ ତା ପରି କାହିଁ ଜଣେ ॥
ସ୍ୱାର୍ଥେ ଜଡ଼ିତ ରହେ ନିତି । ତେଣେ ହୁଅଇ ଆତ୍ମଘାତୀ ॥
ଅପର ସୌଭାଗ୍ୟେ କାତର । ହିଂସଇ ପରେ ନିରନ୍ତର ॥
କମାଇ ମନେ ଭାବ ତେବେ । ମାନବ ଅଧିକ ଗୌରବେ ॥
ଯେ ନର ଜୀବନେ ବିଶେଷ । ନ ଦିଏ ଯେହ୍ନୁ ପରେକ୍ଲେଶ ॥
ପର ନିମନ୍ତେ କ୍ଲେଶ ସହେ । ପରର ଭାର ନିଜେ ବହେ ॥
ନ କରେ ନିଜ ପର ଭେଦ । ନ ଧରେ ହୃଦେ ହିଂସାବାଦ ॥

ସଂସାର ଭିତେ ଜନ୍ମ ତାର । କରେ ଯେ ସଦା ଏ ବିଚାର ।
ସେ ନର ଏକା ବୁଦ୍ଧିମାନ । ସେ ଏକା ମାନବ ସନ୍ତାନ ॥
ସେ ଧର୍ମ-ତରଣୀ କାଣ୍ଡାରି । ତରି ଅନ୍ୟକୁ କରେ ପାରି ।
ସକଳ ଧର୍ମେ ଶ୍ରେଷ୍ଠସାର । କେବଳ ପର ଉପକାର ।
ଏ ଧର୍ମ ପାଳନ୍ତି ଗୋ-ଜାତି । ଏ ଲାଗି ତାଙ୍କ ଉତପତ୍ତି ॥
ନାହିଁ ତାଙ୍କର ଅହଙ୍କାର । ବିଦ୍ୱେଷ କପଟ ବିଚାର ।
ସହନ୍ତି ପର ଲାଗି ଦୁଃଖ । କେବେ ହେଁ ନୁହନ୍ତି ବିମୁଖ ॥
ଆହାରେ ଭଲ ମନ୍ଦ ନାହିଁ । ଯେ ସ୍ଥାନେ ଯେମନ୍ତ ମିଳଇ ॥
ଭୋଗନ୍ତି ଖରା ବର୍ଷା ଶୀତ । ସାଧନ୍ତି ସଦା ଲୋକହିତ ।
ଧରନ୍ତି ପର ଲାଗି ପ୍ରାଣ । କରନ୍ତି ଲୋକେ ଅନ୍ନ ଦାନ ।
ଅନ୍ନେ ବଢ଼ଇ ସାରା ସୃଷ୍ଟି । ଅନ୍ନେ ସକଳ ଜୀବ ପୁଷ୍ଟି ॥
ଗୋ-ଜାତି ବହେ ପର ଭାର । ପରେ ବଞ୍ଚାଏ ଦେଇ କ୍ଷୀର ॥
ମରଇ ପର ଉପକାରେ । ଗୋ ସମ କେ ଅଛି ସଂସାରେ ॥
ନ ମଣ ତାକୁ ପଶୁ କରି । ସେ ଲୋକମାତା ବିଶ୍ୱମ୍ଭରୀ ॥
ଗୋ-ଧର୍ମ ସର୍ବ ଧର୍ମ ସାର । ଯେ କରେ ଗୋ-ଧର୍ମ ଆଚାର ।
ସାଧଇ ପର ଉପକାର । କ୍ଲେଶରେ ନ ହୁଏ କାତର ॥
ଚାଣି ଫୁଟାଇ ନିଜ ରକ୍ତ । ଅନ୍ୟ ଜୀବନ କରେ ଶକ୍ତ ।
ପିଆଏ ଅନ୍ୟେ ସୁଧାରସ । ଲଭି ଆପଣା ଦେହେ ତ୍ରାସ ॥
ଅନ୍ୟ ସକାଶେ ମରେ ଶେଷେ । ସେ ଲେଖା ଯଥାର୍ଥ ମନୁଷ୍ୟେ ॥
ଗୋ-ଧର୍ମ କରେ ଯେ ପାଳନ । ଗୋଲୋକେ ଯାଏ ସେହି ଜନ ।
ଯହିଁ ସୁରଭି ସୁତାସୁତ । ଯାନ୍ତି ସାଙ୍ଗ ଏ ମର୍ତ୍ତ୍ୟକୃତ୍ୟ ॥
ହେ ଶିଷ୍ୟ ବୁଝିଲ ତ ତତ୍ତ୍ୱ । ଗୋ ତହିଁ ନ ଲଗେ ପଶୁତ୍ୱ ॥
ଦେଖନ୍ତୁ ଯାର ମଳମୂତ୍ର । ଜାହ୍ନବୀ ସମାନ ପବିତ୍ର ॥
ଯାହାର ଲୋମେ ଦେବଗଣ । ବସି ହୁଅନ୍ତି ନିଜେ ଧନ୍ୟ ॥
ଯା ଯୋଗେ ଚଳେ ଲୋକସୃଷ୍ଟି । ଯା ରସେ ଦେବତାଙ୍କ ତୁଷ୍ଟି ।
ଜୀବନ ମରଣେ ଯେ ନିତି । ସାଧେ ସର୍ବଥା ଲୋକପ୍ରୀତି ॥

ପ୍ରଜାପତିଙ୍କ ଜ୍ୟେଷ୍ଠା କନ୍ୟା । ଶୁଭ୍ର ସୁସ୍ନିଗ୍ଧା ଲୋକମାନ୍ୟା ॥
ସଂସାରେ ନିଜ କର୍ମ ସାଧି । ଯିବ ସେ ନିତ୍ୟଧାମେ ଫେରି ॥
ସାମାନ୍ୟ ପଶୁ ବୋଲି ଭାବେ । ଯେ ଜନ ମନରେ ସଭ୍ୟରେ ॥
ସେ ନିଜେ ପଶୁ ନର ରୂପେ । ଭ୍ରମେ ସଂସାର ଅନ୍ଧକୂପେ ॥
ପଶୁ ରୂପରେ ବଶ୍ୟ ସାଇଁ । ଗୋ-କୁଳ ଅଛନ୍ତି ଉଠାଇ ॥
ଗୋ-ଜାତି କରି ନିଜ କର୍ମ । ଲୋକଙ୍କୁ ଶିକ୍ଷାନ୍ତି ଗୋ-ଧର୍ମ ॥
ଆଖି ଫିଟାଇ ବୁଝ ଜନେ । ବୁଡ଼ ନ ମର ଅଭିମାନେ ॥
ଏଣେ ମିଳିବ ସବୁ ଶୁଭ । ଛୁଟିବ ଭବବନ୍ଧ କ୍ଷୋଭ ॥
ସାର୍ଥକ ହେବ ଏ ଜୀବନ । କହନ୍ତି ଗୋପ ଅକିଞ୍ଚନ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ଗୁରୁଶିଷ୍ୟୋପାଖ୍ୟାନେ ଗୋ ଧର୍ମ
କଥନେ ନାମ ଊନବିଂଶୋଽଧ୍ୟାୟଃ ।



## ବିଂଶ ଅଧ୍ୟାୟ

### ଶିଷ୍ୟ ଉବାଚ

ହେ ଗୁରୁ ବୁଝିଲି ଗୋ-ତତ୍ତ୍ୱ । ହେଲି ମୁଁ ଏବେ ଶୁଦ୍ଧଚିତ୍ତ ॥
ପଶୁର କେବଳ ଆକାର । ଗୁଣକର୍ମେ ଗୋ ସର୍ବୋପର ॥
ମନୁ ମୋ ଦୂରୁଅଛୁ ଭ୍ରମ । ବୁଝିଲି ଯଥାର୍ଥ ଗୋ-ଧର୍ମ ॥
ଯେମନ୍ତ ତବ ଆଜ୍ଞା ଶିରେ । କଳ୍ପିତ ଏ ଧର୍ମ ଲୋକରେ ॥
ଆଜ ଯେ ତତ୍ତ୍ୱ ତପୋଧନ । ଜାଣୁନ୍ତୁ ମୋର ପ୍ରୟୋଜନ ॥
ସଦପ୍ରେ ମୋତେ କହ ତାତ । ଜଗତେ କଷ୍ଟେ ବିଖ୍ୟାତ ॥

## ଗୁରୁ ଉବାଚ

ଗୋ ଲୋକ ତତ୍ତ୍ୱ ଆଜ ଅଟଳୁ । କହିବି ଜାଣ ଥାଉଁ ଥାଉଁ ॥
ତାହାରେ ଭ୍ରମନ୍ତି ସିଦ୍ଧ ଘର । ଘୁଞ୍ଚିବ ମୁଁ ଏ କଳେବର ॥
ସିଦ୍ଧ ଲୋକ ଉପରେ ଗୋଲୋକ । ଯହିଁ ନ ପଶେ ଦୁଃଖ ଶୋକ ॥
ସେ ଲୋକ ଐଶ୍ୱର୍ଯ୍ୟ ଅତୁଳ । କହିବାକୁ ପୁଣି ସେ ସକଳ ॥
ଗୋ- ଲୋକନାଥ ସନାତନ । ଅନନ୍ତ ଶ୍ରୀ ପୁରୁଷୋତ୍ତମ ॥
ଶ୍ରୀ ବାସୁଦେବ ପ୍ରଭୁ ହରି । ଅଟନ୍ତି ଗୋଲୋକବିହାରୀ ॥
ଗୋଲୋକ ତାଙ୍କ ନିତ୍ୟ ଧାମ । ତେଣୁ ଏ ସବୁ ସୁରୋତ୍ତମ ॥
ଯହିଁ ବିଜୟେ ପୀତବାସ । ଲାଗିଛି ଯହିଁ ନିତ୍ୟ ରାସ ॥
ଉଛୁଳେ ଯହିଁ ନିତ୍ୟ ପ୍ରେମ । ସେ ଶ୍ରେଷ୍ଠ ବଇକୁଣ୍ଠ ଧାମ ॥
ମୁଁ ଏହା ବର୍ଣ୍ଣିବି ସଂକ୍ଷେପ । ଲକ୍ଷ୍ମୀ ଯେ ସ୍ୱର ପରିଚୟ ॥
ତହିଁ ପ୍ରବେଶ ଅଧିକାର । ନିଷ୍କାମ ପ୍ରେମେ ପାଏ ନର ॥
ଆଚରି ତପସ୍ୟା କଠୋର । ସୁରଭି ନ ବାଞ୍ଛିଲା ବର ॥
ଲୋଡ଼ିଲା ନିଷ୍କାମ ଭକତି । ତା ଲାଗି ଗୋଲୋକ ଉତ୍ପତ୍ତି ॥
ଝଟିଲେ ତହିଁ କାମଧେନୀ । ପରମ ନିତ୍ୟ ରାସସ୍ଥଳୀ ॥
ସୁରଭି ସୁଧାରସ ସୋଲ । ବହଇ ଯହିଁ ଓତପ୍ରୋତ ॥
ଯାଆନ୍ତି ତହିଁ ପୂର୍ଣ୍ଣକାମ । ବସନ୍ତି ସେହି ଅଭିରାମ ॥
ମନ୍ତ୍ରେ୍ୟ ନିଷ୍କାମ କର୍ମ ସାଧି । ଗୋ-ଜାତି ତହିଁ ପାନ୍ତି ସିଦ୍ଧି ॥
ଜଗତେ ନର ନାରୀପୁଣ । ତାଙ୍କୁ ଯେ ସେବେ ଅନୁକ୍ଷଣ ॥
ନିଷ୍କାମ ଭାବ ଧରି ହୃଦେ । ଅନ୍ତେ ଗୋଲୋକେ ବସେ ମୁଦେ
ଗୋଲୋକ-ନାଥ ବାସୁଦେବ । ମାନବେ କରି ଦୟାଭାବ ॥
ଗୋ-ଜାତି ଅଛନ୍ତି ପଠାଇ । ସଂସାରେ ଲୋକଶିକ୍ଷା ପାଇଁ ॥
ଗୋ-ଜାତି ଏଏ ଲୋକଶିକ୍ଷା । ନିଷ୍କାମ ଧର୍ମ ମହାଦୀକ୍ଷା ॥
ଈଶ୍ୱର-ଦୂତ ତାଙ୍କୁ ଜାଣ । ଯେ ଧରେ ନିଜ ହିତେ ପ୍ରାଣ ॥
ନିଷ୍କାମେ ଲୋକସେବା କରେ । ଲୋକଙ୍କ ହିତେ ବଞ୍ଚେ ମରେ ॥

ଗୋଲୋକ ପ୍ରାପ୍ତ ଏହି ପଥ । ଶିଖାନ୍ତୁ ଗୋ-ଜାତି ଜଗତେ ॥
ନିଜେ ଗୋଲୋକ-ନାଥ ହରି । ମାନବ ରୂପେ ଅବତରି ॥
ଦେଖାଇଛନ୍ତି ଗୋ ମହତ୍ତ୍ୱ । ଶିଖାଇ ଅଛନ୍ତି ଗୋ-ତତ୍ତ୍ୱ ॥
ଜନମ ଲଭି କ୍ଷତ୍ରିକୁଳେ । ରହିଲେ ଗୋପଗୋପୀ ମେଳେ ॥
ବନରେ ଚରାଇଲେ ଗାଈ । ଜନେ ମୋହିଲେ ବଂଶୀ ବାଇ ॥
ଗୋରୁଙ୍କୁ କଲେ ନିଜ ପ୍ରାଣ । ତାହାଙ୍କୁ ମଣିଲେ ସମ୍ମାନ ॥
ଗୋ-ସେବା ଲୋକସେବା ବ୍ରତ । ସ୍ୱଦେଶ ସେବା କର ତାତ ॥
ଏ ଉପଦେଶ ଦେଲେ ନନ୍ଦେ । ଗୋପାଳେ ମତାଇ ଆନନ୍ଦେ ॥
ନନ୍ଦନ କଲେ ଇନ୍ଦ୍ର ପୂଜା । କୋପିଲେ ତେଣୁ ଇନ୍ଦ୍ର ରାଜା ॥
ବାସବ କୋପକୁ ନ ଡରି । ନନ୍ଦ ଅର୍ଚ୍ଚନା କଲେ ଗିରି ॥
ସ୍ୱଦେଶ ମାଟି ଶିଳା ତରୁ । ନଦୀ ପର୍ବତ ଜନ ଗୋରୁ ॥
ଏ ଆଦି ଜଙ୍ଗମ ସ୍ଥାବର । ଇନ୍ଦ୍ରହୁଁ ବଳି ଗୁରୁତର ॥
ଏ ତତ୍ତ୍ୱ ବୁଝି ଗୋପବାସୀ । ବାସବ ପୂଜାଦ୍ରବ୍ୟରାଶି ॥
ଭେଟିଲେ କହି ଗିରିପଦେ । "ସଖା ତୁ ସମ୍ପଦ ବିପଦେ ॥
ତୁ ଗୋପପୁର ମୂର୍ତ୍ତିମନ୍ତ । ତୋ ସେନି ଆମ୍ଭେ ଭାଗ୍ୟବନ୍ତ ॥
ତୋର ଚରଣେ ପୂଜ ଆଜ । ତୁହିଁ ଦେବାଧିଦେବରାଜ ॥
ତୁ ଆମ୍ଭ ଇନ୍ଦ୍ର ଗୋବର୍ଦ୍ଧନ । ତୋ ଯୋଗେ ଆମ୍ଭେ ପାଉ ଅନ୍ନ
ତୁ ଆମ୍ଭ ସର୍ବ ସୁଖଦାତା । ତୁ ଆମ୍ଭ ପ୍ରତ୍ୟକ୍ଷ ଦେବତା ॥
ହେ ଗିରି ହୁଅ ଅନୁକୂଳ । ବଢ଼ନ୍ତୁ ଆମ୍ଭର ଗୋକୁଳ" ॥
ଏ ରୂପେ ଗିରି ପୂଜା ଧାରି । ସେ ଗୋପପୁର ନରନାରୀ ॥
ବ୍ରାହ୍ମଣ ଆଦି ସର୍ବବର୍ଣ୍ଣେ । ତୋଷିଲେ ବିବିଧ ବ୍ୟଞ୍ଜନେ ॥
ସୁରସ ଅନ୍ନ ପାନ ବାସ । ଗୋରୁଙ୍କୁ କରାଇଲେ ଗ୍ରାସ ॥
ଏରୂପେ ଗୋଲୋକ-ବିହାରୀ । ଲୋକରେ ଅଛନ୍ତି ପ୍ରଚାରି ॥
ଗୋ-ସେବା ମହାପୁଣ୍ୟବ୍ରତ । ଲୋକସେବାର ଅନ୍ତର୍ଗତ ॥
ନୁହଇ ଯାଗ ବଳି ହୋମ । ଗୋ-ସେବା ଲୋକ-ସେବା ସମ
ଏ ସେବାବଳେ ଗୋପଜନେ । ଇନ୍ଦ୍ରକୁ ନ ଡ଼ରିଲେ କ୍ଷଣେ ॥

ଇନ୍ଦ୍ର ବୋଲଇ ଦେବରାଜ । ପାଇଲି କିନ୍ତୁ ବଡ଼ ଲାଜ ॥
ଶ୍ରୀକୃଷ୍ଣେ ଶରଣ ପଶିଲି । ଗୋବିନ୍ଦ ନାମ ତାଙ୍କୁ ଦେଲି ॥
ଗୋ-ଜାତି ପ୍ରତି ଦାମୋଦର । କଲେ ଯେ ସେନେହ ଆଦର ॥
ତା ଦେଖି ଭକ୍ତ ଗଦଗଦେ । ସୁରଭି ନମିଲା ଶ୍ରୀପଦେ ॥
ବୋଇଲା "ଆଜ ମୋ ସନ୍ତତି । କୃତାର୍ଥ କଲ ହେ ଶ୍ରୀପତି ॥
ତୁମ୍ଭେ ହେ ଗୋକୁଳ-ମହେନ୍ଦ୍ର । ଗୋପରେ ଶ୍ରୀ ଗୋପାଳଚନ୍ଦ୍ର ॥
ଗୋ-ଜାତି ପୁଣ୍ୟ ପଣରାଶି । ପ୍ରକାଶ କଲେ ବ୍ରହ୍ମରାଶି ॥
ଗୋ-ସେବା ଆଚରି ଆପଣେ । ଶିଖାଇ ଗଲେ ବିଶ୍ୱଜନେ ॥
ଜ୍ୟେଷ୍ଠ ତାଙ୍କର ହଳଧର । ମର୍ତ୍ତ୍ୟେ ଅନନ୍ତ ଅବତାର ॥
ଶ୍ରୀ ବଳଦେବ ନାମେ ଖ୍ୟାତ । ସର୍ବଦା ହଳାୟୁଧହସ୍ତ ॥
ବଳଦଗଣଙ୍କ ଗୌରବ । ଏଥିରୁ କି ଅଧିକ ହେବ ॥
ବଳଦ ଜନ୍ତ କରେ ବୃଷ । ଗାଈ ଦିଅଇ ସୁଧାରସ ॥
ଏଣେ ବଞ୍ଚନ୍ତି ପ୍ରଜାକୁଳ । ଗୋ-ଜାତି ସର୍ବ ସୁଖମୂଳ ॥
ତେଣୁ ଗୋବିନ୍ଦ ହଳଧର । ପୂଜିଲେ ଗୋ-ଜାତି ପ୍ରଚୁର ॥
ଗୋ-ସେବା ସର୍ବ ଧର୍ମସାର । ଏହା ବୁଝିଲେ ସର୍ବ ନର ॥
ହୋଇବ ଏ ସଂସାର ସ୍ୱର୍ଗ । ଲଭିବେ ଲୋକେ ଅପବର୍ଗ ॥
ଶ୍ରୀ ବଳଦେବ ଜଗନ୍ନାଥ । ଦେଖାଉଛନ୍ତି ଏହି ପଥ ॥
ଚାଲ ହେ ଜନେ ଏହି ବାଟେ । ନ ପଡ଼ ବିଷମ ସଙ୍କଟେ ॥
ଏଣେ ହୋଇବ ବିଶ୍ୱହିତ । ଗୋଲୋକନାଥ ହେବେ ପ୍ରୀତ ॥
ଶ୍ରୀ ବଳଦେବ ଜଗନ୍ନାଥ । ପୂର୍ଣ୍ଣ କରିବେ ମନୋରଥ ॥
ଲଭିବ ଧନ ସୁତ ଯଶ । ଅନ୍ତେ ଗୋଲୋକଧାମେ ବାସ ॥
ଗୋରୁଙ୍କୁ ମଣ ନିଜ ପ୍ରାଣ । ମଣିଲେ ଯଥା ନାରାୟଣ ॥

ଗୁରୁ ଯା ଦେଲେ ଉପଦେଶ । ଗୀତେ ଭଣିଲ୍ଲ ଗୋପ-ଦାସ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ଗୁରୁଶିଷ୍ୟସମ୍ବାଦେ ଶ୍ରୀକୃଷ୍ଣସ୍ୟ
ଗୋ-ସେବା ରହସ୍ୟ ପ୍ରକଟନେ ଗୋ-ଗୌରବ
ବ୍ୟାଖ୍ୟାନେ ନାମ ବିଂଶୋଽଧ୍ୟାୟଃ ।



## ଏକବିଂଶ ଅଧ୍ୟାୟ

ଏବେ ହେବସ ଅବସାନ । ଆରକ୍ତ ଚର୍ଷ୍ଟିମ ଗଟନ ॥
ଅସ୍ତ ନ ହେଉଁ ହିବାକର । ଛାଡ଼ିବି ମୁଁ ଏ କଳେବର ॥
କହିଲି ଯେତେ ଉପଦେଶ । ଗୋ-ଧର୍ମ ଗୋପାଳନ ରହସ୍ୟ ॥
ସେ ସବୁ ମନେ ହେତୁ କରି । ଲୋକେ ପ୍ରଚାର ବ୍ରହ୍ମଗୃହୀ ॥
ଯାଅ ହେ ବାବୁ ଏବେ ଘର । ସୁଖେ ଗୃହସ୍ଥାଶ୍ରମ କର ॥
ଆଚର ଗୋ-ଧର୍ମ ସତତ । କର ଗୋ-ସେବା ନିତ୍ୟବ୍ରତ ॥
ଗୋ-ସେବା ଲୋକରେ ଶିଖାଅ । ଗୋ-ହିତେ ଧନ ମନ ଦିଅ ॥
ସେ ଫଳେ ଲଭ ଯଶମାନ । ଧନ ସମ୍ପଦ ସୁସନ୍ତାନ ॥
ଗୋବିନ୍ଦ ପଦେ ହେଉ ଭକ୍ତି । ପ୍ରକାଶୁ ହୃଦେ ଦିବ୍ୟ ଶକ୍ତି ॥
ଅନ୍ତେ ଗୋଲୋକେ ପାଅ ସ୍ଥାନ । କରନ୍ତୁ ପ୍ରଭୁ ଏ କଲ୍ୟାଣ ॥
ଛାଡ଼ ଯାଅ ହେ ମତେ ଏକା । ଏ ଜନ୍ମେ ଏହି ଶେଷ ଦେଖା ॥
ସନ୍ଧ୍ୟା ପ୍ରବେଶ ହୋଇ ଆଜ । ସରିବ ମୋର ଭବ କାର୍ଯ୍ୟ ॥
ବସିଣ ଧ୍ୟାନେ ଯୋଗବଳେ । ଗୋମତୀ ନଦୀ ଅନ୍ତର୍ଜଳେ ॥
ମିଶାଇ ପଞ୍ଚଭୂତେ କାୟା । କାଟିବି ଚିର ଭବମାୟା ॥
ଯିବି ତୁରିତ ଅନ୍ୟ ପୁରେ । ଦିଶଇ ତା ମୋତେ ଅଦୂରେ ॥
ଏ ଯେ ଗୋମତୀ ପୁଣ୍ୟସ୍ରୋତ । ଗୋଲୋକ ଧାମକୁ ଏ ପଥ ॥

ମର୍ତ୍ତ୍ୟ ସୁରଭି ସୁଧାଧାର । ଗୋଲୋକେ ଧାମକୁ ଦୁଆର ॥
ଗୋ-କ୍ଷୀର ପ୍ରତ୍ୟକ୍ଷ ଏ ଜନ । ଜାଣେ ସକଳ କମିଜନ ॥
ଏ ନନ୍ଦାଷ୍ଟରେ ପୁଣ୍ୟବନେ । ମୁଁ ଆଜ ଯୋଗଯୁକ୍ତ ମନେ ॥
କହିଲି ଭୃଗୁଙ୍କୁ ଯା ଶିଷ୍ୟ । ଗୋ-ତତ୍ତ୍ୱ ଗୋଲୋକେ-ରହସ୍ୟ
ଯେ ଏହା ପଢ଼େ ଶ୍ରଦ୍ଧାଚିତ୍ତେ । କେବେ ସେ ନ ପଡ଼େ ଦୁରିତେ ॥
ଗ୍ରହଣ କାଳେ ଗୋ-ପ୍ରଦାନେ । ଯେ ଅବା ପଢ଼େ ତୀର୍ଥ ସ୍ଥାନେ ॥
ଲଭଇ ବିଶେଷ ସୁକୃତ । ପୂରେ ତାହାର ମନୋରଥ ॥
ବଇତରଣୀ ଦାନ କାଳେ । ମୁମୂର୍ଷୁ ଜନେ ଶୁଣାଇଲେ ॥
ମିଳଇ ତାଙ୍କୁ ଦିବ୍ୟ ଗତି । ଉପୁଜେ ଗୋବିନ୍ଦ ଭକତି ॥
ଗୋଗୋଷ୍ଠେ କି ଅବା ଗୃହାଳେ । ପଢ଼ଇ ଯେ ନିତ୍ୟ ନିଷ୍ଠେଳେ ॥
ସେ ଲଭେ ବର୍ଦ୍ଧିତ ଗୋଧନ । ଲକ୍ଷ୍ମୀ ହୁଅନ୍ତି ସୁପ୍ରସନ ॥
ଶ୍ରାବଣ ପୂର୍ଣ୍ଣିମୀ ତିଥିରେ । ଗୋରୁଙ୍କୁ ପୂଜିବ ବିଧିରେ ॥
ଗାଧୋଇ ତାଙ୍କୁ ଶୁଦ୍ଧ ନୀରେ । ହଳଦୀ ବୋଳିବ ଶରୀରେ ॥
ଶିଙ୍ଗରେ ଲଗାଇବ ତେଲ । ଶିରେ ସିନ୍ଦୂର ଫୁଲମାଳ ॥
ପୂଜିତ ଦେବତା ଧିଆନେ । ଭକ୍ତି ଆଦର ସନମାନେ ॥
ଖୁଆଇ ପିଠା ଘାସ ଅନ୍ନ । କରିବ ତାଙ୍କୁ ସୁପ୍ରସନ୍ନ ॥
କାର୍ତ୍ତିକ ଶୁକ୍ଳାଷ୍ଟମୀ ଦିନ । ଗୋକୁଳେ କରିବ ଅର୍ଚ୍ଚନ ॥
ତୃଣ ତୋଡ଼ାଣି ମିଷ୍ଟ ଅନ୍ନ । ଗୋଗଣେ କରିବ ପ୍ରଦାନ ॥
ଗ୍ରାମର ଯେତେ ଗୋରୁଗାଈ । ଆଣି ସକଳେ ଏକଠାଇଁ ॥
କରିବ ଔଷଧ ଉତ୍ସବ । ଏଣେ ସନ୍ତୁଷ୍ଟ ବାସୁଦେବ ॥
ଆବର ଫାଲଗୁନ ମାସେ । ପ୍ରସିଦ୍ଧ ପୂର୍ଣ୍ଣିମୀ ଦିବସେ ॥
ଖେଳନ୍ତି ଯେବେ ସୁଖେ ଦୋଳ । ରାମଗୋବିନ୍ଦ ବନମାଳୀ ॥
ଗୋ-ଗଣେ ପୂଜିବ ଆଦରେ । ଔଷଧ ଖାଦ୍ୟ ଉପହାରେ ॥
କରାଇ ସ୍ନାନ ସୁମାର୍ଜନା । ଦେବ ତୋଡ଼ାଣି ପାଣି ପଣା ॥
ଏ ତିନ ଶ୍ରେଷ୍ଠ ଗୋ-ଉତ୍ସବ । ଗୃହସ୍ଥ ଅବଶ୍ୟ ପାଳିବ ॥
ଗୋଗୋଷ୍ଠେ କିବା ଗୋ ଗୃହାଳେ । ଅଥବା ଗୋରୁ ମହାମେଳେ ॥

ଶ୍ରଦ୍ଧାରେ ଯେହୁ ଏହା ପଢ଼େ । ପଢ଼ି ଗୋଗଣ ପଦେ ପଡ଼େ ॥
କହଇ ଯୋଡ଼ି ବେନି ହାତ । ହେ ଧେନୁ ତୁମ୍ଭେ ମୋର ମାତ ॥
ହେ ବୃଷ ତୁମ୍ଭେ ମୋର ପିତା । ବଳଦ ଭ୍ରାତା ଅନ୍ନଦାତା ॥
ଘେନ ମୋ ପୂଜା ଆରାଧନ । ହୁଅ ସର୍ବଦା ସୁପ୍ରସନ୍ନ ॥
ସେ ଜନ ପାଏ ମହା ଫଳ । ସଦା ସମ୍ପୂର୍ଣ୍ଣ ଅନ୍ନଜଳ ॥
ତା ଘରେ ନ ପଡ଼େ ଦୁର୍ଗତି । ବଢ଼ଇ ବଂଶ ଧନ ଖ୍ୟାତି ॥
ଅନ୍ତେ ସେ ପାଏ ସଦଗତି । ଲଭଇ ଗୋବିନ୍ଦେ ଭକତି ॥
ଯେ ଗ୍ରାମେ ମିଳି ଲୋକ ସର୍ବ । କରନ୍ତି ଏ ତିନି ଉତ୍ସବ ॥
ସକଳ ବର୍ଣ୍ଣ ସର୍ବ ଜାତି । ଏକତ୍ରେ ଉତ୍ସବ ପାଳନ୍ତି ॥
କରନ୍ତି ଗୋ ପ୍ରତି ଆଦର । ବାରନ୍ତି ନାହିଁ ନିଜ ପର ॥
ସେ ଗ୍ରାମେ ନ ପଶଇ କଳି । ସୁଖେ ରହନ୍ତି ସର୍ବେ ମିଳି ॥
ଶିଘ୍ର ସେ ଗ୍ରାମରୁ ନ ତୁଟେ । ଲୋକଙ୍କ ଦେହେ ତେଜ ଫୁଟେ ॥
ନ ଘଟେ ଗ୍ରାମେ ମାଘ୍ରଭୟ । ନୁହେ ଅକାଳେ ଜନକ୍ଷୟ ॥
ଯେ ଗ୍ରାମେ ମିଳି ସର୍ବ ନର । ରଖନ୍ତି ବହୁତ ଗୋଚର ॥
ସେ ଗ୍ରାମ ଜାଣ ପୁଣ୍ୟସ୍ଥଳୀ । ତହିଁ ନ ଯାଏ କେବେ କଳି ॥
ହୁଅନ୍ତି ସର୍ବଜନେ ସୁଖୀ । ନ ରହେ ପର ମୁଖ ପେକ୍ଷୀ ॥
ଯେ ଘରେ ନାହିଁ ଗାଈଗୋରୁ । ସେ ଘର ଭୟଙ୍କର ମରୁ ॥
ସେ ଗୃହ ଅଟେ ଶମଶାନ । ନୁହେ ଲକ୍ଷ୍ମୀଙ୍କ ବାସସ୍ଥାନ ॥
ଗୋ ରଖି ଘରେ ଯେଉଁଜନ । ନ ହୁଏ ସଦା ସାବଧାନ ॥
ଗୋରୁଙ୍କୁ କରେ ଅବହେଳା । ବୁଡ଼ିବ ଜାଣ ତାର ଭେଳା ॥
ପଡ଼ଇ ଯେବେ ଗୋ-ନିଃଶ୍ୱାସ । ବଂଶ ସମ୍ପଦ ସର୍ବନାଶ ॥
ବଳଦେ କଷଣା ଯେ ବୃଷ । ନ ଦିଏ ପୂର୍ଣ୍ଣ ଜଳ ଘାସ ॥
ବୃଷ ଉତ୍ପନ୍ନ ଖାଏ ଆପେ । ସେ ବୁଡ଼େ ମରେ ମହା ପାପେ ॥
ଖାଏ ସେ ସାକ୍ଷାତ ଗୋ-ମାଂସ । ତା ଇହ ପରକାଳ ନାଶ ॥
ଯେ ଗାଈଠାରୁ ଖାଏ ରସ । ନ ଦେଇ ତାକୁ ପୁରା ଗ୍ରାସ ॥
ବତ୍ସାକୁ ନ କରେ ଯତନ । କରେ ସେ ଗୋ-ଶୋଣିତ ପାନ

ତା ଦେଖି କୁହିପାଏ ଶିଶୁ । ତା ପୁତ୍ରକନ୍ୟା ଯାନ୍ତି ମରି ॥
ବଳଦ ଲଗାଇଣ ଗୃହେ । ଚକଳ ଯେ ବୁଢ଼ା ବୟସେ ।
ବିଶେଷେ ମଦ୍ୟ ଧନ ପାଇଁ । ଯାନ୍ତି କେ ବିକେ ଗୋରୁ ଗାଈ ।
ଜାଣ ସେ କଷ୍ଟି ଥାଉଁ ମରେ । ଜଘନ୍ୟ ପାପୀ ସେ ସଂସାରେ ॥
ତା ସାତ ଉପର ପୁରୁଷ । ସାତ ପୁରୁଷ ତଳ ବଂଶ ॥
ଅନନ୍ତ ଦୁସ୍ତର ନରକେ । ପଡନ୍ତି ଘୋର କୁମ୍ଭିପାକେ ॥
ନ ହୁଏ ତା କୁଳ ଉଦୟ । ସକଳ ଶିଘ୍ର ଯାଏ କ୍ଷୟ ॥
ଯେ ନାରୀ କରନ୍ତି ଗୋ-ସେବା । ସେ କେବେ ନୁହନ୍ତି ବିଧବା ॥
ବିଧବା ଗୋ ସେବା କରି । ଭବ ଦୁଃଖରୁ ଯାନ୍ତି ତରି ॥
ଗୋ-ଜାତି ସର୍ବ ସୁଖାଳୟ । ଗୋ ଜାତି ସର୍ବ ଶୁଭମୟ ॥
ଗୋ-ଜାତି ଲୋକ ପିତାମାତା । ଗୋ-ଜାତି ଶକ୍ତି ମୁକ୍ତିଦାତା ॥
ଗୋ-ଜାତି ଦେବଗଣ ପରେ । ଏ ତତ୍ତ୍ୱ ଦେଖୁ କର ନରେ ॥
ଗୋ-ସେବା କର ଘରେ ଘରେ । ଗୋ ହିତ ଚିନ୍ତର ମନରେ ॥
ଗୋ-ରକ୍ଷା କର ଗ୍ରାମେ ଗ୍ରାମେ । ହାଟେ ନଗରେ ପୁଣ୍ୟଧାମେ ॥
ଯାହାଙ୍କୁ ଭଜି ଭଗବାନ । କରିଅଛନ୍ତି ଭାଗ୍ୟବାନ ॥
ଗୋ-ନାମେ ଝଞ୍ଜନ୍ତି ସେ ବୁଦ୍ଧି । ଗୋଚର ପରମ ସୁକୃତି ॥
ଗ୍ରାମରେ ପାଳନ୍ତି ବୃଷଭ । ସେ ଯେ ସାକ୍ଷାତେ ମହାଦେବ ॥
ପ୍ରାଣାନ୍ତେ ଗୋଲାଙ୍ଗୁଳେ ଧରି । ବଇତରଣୀ ହେବ ପାରି ॥
ସଂସାରେ ଥିବ ଯେତେ କାଳ । ଲଭିବ ଧନ ଜନ ବଳ ॥
ଗୋ-ଧର୍ମ ପାଳ ହେ ମାନବ । ଯେବେ ଗୋଲୋକଧାମେ ଯିବ ॥
ହେ ଶିଷ୍ୟ ମୋ ଏ ଧ୍ରୁବ ବାଣୀ । ଲୋକରେ ପ୍ରଚାର ସର୍ବଥା ॥
ଗୁରୁଙ୍କ ଉପଦେଶ ଶେଷେ । ଶିଷ୍ୟ ନମିଲେ ପାଦଦେଶେ ॥
ସାଷ୍ଟାଙ୍ଗେ ପଡ଼ିଲେ ପଦ୍ମରେ । ଦେଲେ ଆଶିଷ ସେ ଶିରେ ॥
ଗୁରୁ ଅନୁଜ୍ଞା ଅନୁସାରେ । ଆସିଲେ ଶୀଘ୍ର ନିଜ ଘରେ ॥
ଶିଷ୍ୟଙ୍କୁ ବିଦା ଦେଇ ମୁନି । ବସିଲେ କ୍ଷଣେ ଧ୍ୟାଇ ଭୁନି ॥
ପରେ ଗୋମୂତ୍ର ଜଳେ ପଶି । ତନୁ ତେଜିଲେ ଯୋଗେ ଋଷି ॥

ଗୋଲୋକଧାମେ ଗଲେ ନେଇ । ପର୍ଶି ଗୋପଦ ନିତ୍ୟ ସ୍ତୁତି ॥
ଗଲେ ସେ ମୁକ୍ତ ହୋଇ ଶେଷେ । ଶୁଣ ହେ ଜନେ ତାହା ତୋଷେ ॥
ଗୋରକ୍ଷା କର ହୋଇ ନିରତ । ଆଚର ଗୋପାଳନ ବ୍ରତ ॥
ଗୁରୁଶିଷ୍ୟଙ୍କ ଏ ସମ୍ବାଦ । ମତ୍ତ ଖଣ୍ଡିବ ପରମାଦ ॥
ଗୁରୁ-ଗୋବିନ୍ଦେ ହେବ ଭକ୍ତି । ହୃଦେ ଜନ୍ମିବ ଦିବ୍ୟ ଶକ୍ତି ॥
ସେ ଶିଷ୍ୟ ଗୁରୁ ଆଜ୍ଞା ମାନି । ସେପାରେ ଗଲେ ପା ବଖାଣି ॥
ଅଧମ ଗୋପ ତାହା ଗୀତେ । ପ୍ରକାଶ କଲା ଲୋକହିତେ ॥
ଦିଅ ହେ ଜନେ ଏଥି ଧ୍ୟାନ । ମନରେ ନ ଭାବର ଆନ ॥
ଗୋପ ଜୁମ୍ବର ଗାବେ ଭୃତ୍ୟ । କର ହେ ତାଙ୍କୁ କୃତ୍ୟକୃତ୍ୟ ॥
ଗୋ-ଲୋକନାଥ ବାଞ୍ଛାନିଧି । କରନ୍ତୁ ସର୍ବ ବାଞ୍ଛାସିଦ୍ଧି ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ଗୋଗଣୋତ୍ସବ କର୍ତ୍ତନେ
ଫଳଶ୍ରୁତି ନିର୍ଣ୍ଣୟେ ନାମ
ଏକତ୍ରିଂଶୋଽଧ୍ୟାୟଃ ।



# ପରିଶିଷ୍ଟ

## ସଂକଳନଭୁକ୍ତ ହୋଇନଥିବା ଲେଖାବଳୀ

## ଭକ୍ତର ମୃତ୍ୟୁ

[ ସତ୍ୟବାଦୀ ତୃତୀୟଖଣ୍ଡ ମିଥୁନ ଓ କର୍କଟ ୧୩୨୪, ଓ ଚତୁର୍ଥ ସଂଖ୍ୟା ସୂଚୀପତ୍ରରେ "ଭକ୍ତର ମୃତ୍ୟୁ"ର ଡାହାଣ ପାଖରେ ଲେଖକଙ୍କର ନାମ ସ୍ଥାନରେ ... (ଡଃ) ଅଛି । ଏ ସଂଖ୍ୟାରେ ଯେତେ ଲେଖା ··· ··· (ଡଃ) ଦ୍ୱାରା ଚିହ୍ନିତ ସେ ସମସ୍ତ ସମ୍ପାଦକ ଅର୍ଥାତ ଶ୍ରୀ ଗୋପବନ୍ଧୁ ଦାସଙ୍କର । ଗଦ୍ୟ ଓ ପଦ୍ୟର ସ୍ୱରରୁ, ଭାଷା ଓ ଶୈଳୀର ଉପଧାମିଳନରୁ ତାହା ଗୋପବନ୍ଧୁଙ୍କର ଲେଖା ବୋଲି ପ୍ରତିପାଦିତ ହେଉଅଛି । ଲେଖାର ପ୍ରଥମରୁ ଭାଗବତ ବାଣୀର ଉଦ୍ଧୃତି ହିଁ ତାହାର ସମର୍ଥନ କରୁଛି । ତେଣୁ ଭକ୍ତର ମୃତ୍ୟୁ ଗୋପବନ୍ଧୁଙ୍କର ରଚନା ଭାବରେ ଗ୍ରହଣ କରୁଛି । ]

ଏକାଦଶୀ ବ୍ରତ ଆସୁଅଛି ପାଖ
ପଡୁଛି ଆକାଶେ ଭବ ଜଳେଁ ନାହିଁ ।

ଭକ୍ତ କୁଳମଣି ପ୍ରଭୁ ସେବାକାରୀ
ଆଜୀବନ ସିଂହ ଦୁଆରେ ଦୁଆରୀ ।

ଶୁଚିବନ୍ତ ହୋଇ ସାରି ପ୍ରାତଃ ସ୍ନାନ
ମୁଖେ ଉଚ୍ଚାରୁଛି ପ୍ରିୟ ପ୍ରଭୁନାମ ।

ଡକାଇ ସକଳ ପରିଜନ ଜନେ
ଲଗାଇଲା ଯେଝା ସେବା କବଜନେ ।

ତୁଳସୀରେ ଜଳ ଦେଇ ଭକ୍ତି ଭରେ
ମୃତ୍ତିକା ନେଇଣ ଲଗାଇଲା ଶିରେ ।

ଗରୁଡ଼ ସନ୍ନିଧେ ହେଲା ଯାଇ ଉଭା
ପ୍ରକାଶିଲା ମୁଖେ କି ଅପୂର୍ବ ଆଭା ।

"ଗୋପାଳ" "ଗୋପାଳ" କହୁଅଛି ତୁଣ୍ଡ
ଗରୁଡ଼ସ୍ତମ୍ଭରେ ଲଗିଅଛି ମୁଣ୍ଡ ।

ଯୁଗଳ ମୂରତି ଚରଣେ ଅନାଇ
ରହିଅଛି କ୍ଷଣେ ପିଣ୍ଡେ ପ୍ରାଣ ନାହିଁ ।

ମୃତ କି ଜୀବିତ ଯାଏ ନାହିଁ ଜଣା
ରହିଛି ଆଖିରେ ପୂର୍ବ ଜ୍ୟୋତି କଣା ।

ଶରୀରର ଶିର ଢଳାଣେ ଦରୁଣ
ବୋଲୁଛି ସତେ କି ମୁଖେ ହରିଗୁଣ ।

ଚକିତେ ନୟନେ ଚାହିଁଲେ ସକଳେ
ଗମ୍ଭୀରରୁ ଧାଡ଼ ଲାଭିଲା ଏ କାଳେ ।

ପ୍ରଭୁଙ୍କ ଶ୍ରୀ ଅଙ୍ଗେ ଭକ୍ତ ଗଲା ଲଖି
ଜାଣିଲେ ସରବେ, ନ ଦେଖିଲା ଆଖି ।

କୁନ୍ତମଣି ପାତ୍ର ସତ୍ୟବାଦୀ ଗୋପାଳଜୀ ମନ୍ଦିରର ଜଣେ ଦ୍ୱାରୀ ବୟସ ୭୫ ବର୍ଷ । ଜାତିରେ ଓଡ଼ ଖଣ୍ଡାୟତ । କଳାଷଠା ଷାଠିଏ ଟପିଥିଲେ ମଧ୍ୟ ବାର୍ଦ୍ଧକ୍ୟ ଲକ୍ଷଣ କିଛି ଦେଖା ଯାଇ ନଥିଲା । ଦେଖିବାକୁ ଦୀର୍ଘକାୟ, ଅଙ୍ଗପ୍ରତ୍ୟଙ୍ଗ ସାନ୍ଦ୍ର, ସୁଗଠିତ । ପ୍ରାଚୀନ ଉତ୍କଳ ସୈନିକ ପାଇକମାନଙ୍କ ବଂଶଧର ବୋଲି ଜଣା ପଡୁଥିଲା ।



# ବିଦାୟ ଗୀତିକା

[ ୧୯୧୦ ରେ ଗୋପବନ୍ଧୁ ମୟୂରଭଞ୍ଜ ଷ୍ଟେଟ୍‌ରେ ଷ୍ଟେଟ୍ ଆଡ଼ଭୋକେଟ ଭାବରେ ଯୋଗ ଦେଇଥିଲେ । ସେହିବର୍ଷ ମହାରାଜା ଶ୍ରୀ ରାମଚନ୍ଦ୍ର ପୃଥିବୀ ଭ୍ରମଣ ପାଇଁ ଯାତ୍ରାରମ୍ଭ କଲେ । ଏହି ପ୍ରସ୍ତାବ ଶୁଣି ରାଜ୍ୟର ଅନେକେ ବିବ୍ରତ ଓ କୁଣ୍ଠିତ ହେଉଥିଲେ ମାତ୍ର ଗୋପବନ୍ଧୁ ସେଥିପାଇଁ ତାଙ୍କୁ ପ୍ରୋତ୍ସାହିତ କରିଥିଲେ । ତାଙ୍କର ଯିବା ପୂର୍ବରୁ ବାରିପଦାରେ ଏକ ବିଦାୟ ସଭା ଅନୁଷ୍ଠିତ ହୋଇଥିଲା । ଗୋପବନ୍ଧୁ ତାଙ୍କ ବିଦାୟ ସମୟରେ ଯେଉଁ ଗୀତଟି ରଚନା କରିଥିଲେ ତାହା ସଭାରେ ବୋଲା ହୋଇଥିଲା । ସେହି ଗୀତଟି ଏଠାରେ ଉଦ୍ଧୃତ ହୋଇଅଛି । ]

ରାମଚନ୍ଦ୍ର ମହାରାଜା ପରଜା-ପରାଣଧନ,
ଯାଉଛ କେଉଁ ବିଦେଶେ ହେ ଭଞ୍ଜ-କଞ୍ଜ-ତପନ ।

ମହାରାଜା ତନୁ ଆନ
ନ ଜାଣୁ ବିଧିବିଧାନ,
ବଞ୍ଚିବୁ କିପରି କହ ବିରହେ ଏ କେତେଦିନ ?

ମୃତକ ପରାଏ ହୋଇ
ବାଟ ରହିଲୁ ଅନାଇ,
ଫେରି ଦେଖିଲେ ଏ ପିଣ୍ଡେ ପଶିବ ସିନା ଜୀବନ !

ଭୁଲିବ ନାହିଁ ଭୂପାଳ
ସରଳ ଶୁଦ୍ଧ ସଲିଳ
ମେଘାସନ ଗୃହକୁଞ୍ଜ ବୁଢ଼ାବଳଙ୍ଗ ପୁଳିନ ।

ଗେହ୍ଲାଡ଼ ପାହାଡ଼ ଦେଶ
ଭୁଲିବ ନାହିଁ ନରେଶ
ଯେନ ଦିବ୍ୟ ଅବଧାନେ ଏ ଭକତ ନିବେଦନ ।



# ପ୍ରାର୍ଥନା

ଶୁଭ୍ର ଶୁଭ ଶଙ୍ଖ ପଡ଼ୁ ହୁଳହୁଳି,
ବାଜୁ ତୂରୀ ଭେରୀ ମଙ୍ଗଳ ମହୁରି ।

ନାଚୁ ପ୍ରୀତ ପ୍ରାଣ ଉଲ୍ଲାସେ ଉଚ୍ଛୁଳି,
ଜାତି ଯଶେ, ଜନ ଯାଉ ସ୍ୱାର୍ଥ ଭୁଲି ।

ଛୁଟୁ ହୃଦୁଁ ଭୟ ଜଡ଼ତା ଶିକୁଳି,
ଉଠୁ କର୍ମବୀର ବୋଲି ଦେଶଧୂଳି ।

ଅନ୍ତରେ ଅନ୍ତରେ ଝଟକୁ ବିଜୁଳି,
ଏ ଅଭୟ ବର ଦିଅ ଦେବ ଶୂଳୀ ।



ହେଲଣି ତ ଏବେ ସତ
ହେ ସୋଦର,
ପୂର୍ବ ଯଶୋରାଶି କାଳବଳେ ଆସି
ଗଲଣି ତ ସବୁ ସତ ।ଘୋଷା।

ତ୍ରିବେଣୀ ତଟରୁ ଗୋଦାବରୀ ପାଏ
ଦିନେ ଭାଗ୍ୟ ଗରିମା,
ଆମ୍ଭ କର୍ମ ଦୋଷେ ଆଜି ସେ ଜନନୀ
ଆହା ପଥ ଭିକାରୁଣୀ । ୧ ।

ପୂର୍ବ କାଶଗର          ଚିହ୍ନମାନେ ସ୍ପଷ୍ଟ
ଦିଶଇ କେତେ ମଳିନ
କାହିଁ ପୂର୍ବ ଧନ          କାହିଁ ପୂର୍ବ ପୁଣ୍ୟ
ଶୁଖିଛି ମୁଖ ନଳିନ । ୨ ।

ଉଷ୍ଣାତ ଭାରତ          ଅଶାନ୍ତ ଚଭୁକ୍ତ
କି ହେବ ଗାଇ କେବଳ,
ପୂର୍ବ ଆଦରଶେ          ନବୀନ ସାହସେ
ଦେଖାଇବା ନିଜ ବଳ । ୩ ।

ନ କର ଆଳସ୍ୟ,          ନ ହୁଅ ହତାଶ
ଶୁଭ ଯୋଗ ଉପଗତ
ଦେଖ ନବଯୁଗ          ମହାକର୍ମ ଯୋଗେ
ମତ୍ତ ସମସ୍ତ ଜଗତ । ୪ ।

[ ଶ୍ରୀ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ସଙ୍କଳିତ 'ଜାତୀୟ ସଙ୍ଗୀତ' ପୁସ୍ତକର ଭୂମିକା । ଉପରୋକ୍ତ କବିତା ଦୁଇଟି ଏହି 'ଜାତୀୟ ସଙ୍ଗୀତ' ପୁସ୍ତକରୁ ଗୃହୀତ ]

ଗଞ୍ଜାମ ଜାତୀୟ ସମିତିର ଅଧିବେଶନ ସମୟରେ କେତେଜଣ ବନ୍ଧୁଙ୍କ ସହିତ ବ୍ରହ୍ମପୁରସ୍ଥ ଖଲିକୋଟ ମହାରାଜାଙ୍କ ବଙ୍ଗଳାରେ ବସି ଦେଶୋନ୍ନତି ବିଷୟରେ ଆଲୋଚନା କରୁ କରୁ ପ୍ରସଙ୍ଗକ୍ରମେ ଜାତୀୟ ସଂଗୀତର କଥା ଉତ୍‌ଥାପିତ ହେଲା । ଉତ୍କଳରେ ଜାତୀୟ ସଂଗୀତର ନାମ ସୁଦ୍ଧା ନଥିବାରୁ ସମସ୍ତେ ଦୁଃଖ ପ୍ରକାଶ କଲେ ଏବଂ ଏହି ଅଭାବ ପୂରଣାର୍ଥ ଯଥାସାଧ୍ୟ ଚେଷ୍ଟା କରିବାର ଭାର ସମସ୍ତେ ମୋ ଉପରେ ନ୍ୟସ୍ତ କଲେ । ମୁଁ ପ୍ରଜାବନ୍ଧୁରେ ବିଜ୍ଞାପନ ଦେଇ, ପୁରସ୍କାର ଘୋଷଣା କରି ଏବଂ ନାନାସ୍ଥାନର ଉପଯୁକ୍ତ ବ୍ୟକ୍ତିମାନଙ୍କ ନିକଟକୁ ପ୍ରାର୍ଥନା ପତ୍ର ପଠାଇ ଅନେକ ଗୁଡ଼ିଏ ସଂଗୀତ ସଂଗ୍ରହ କରିଥିଲି । ତହିଁ ମଧ୍ୟରୁ ନିର୍ବାଚିତ ସଂଗୀତଗୁଡ଼ିକ ଏହି ପୁସ୍ତକରେ ସନ୍ନିବେଶିତ ହୋଇଅଛି ।     ×          ×          ×

ସଂଗୀତ ଗୁଡ଼ିକ ସଂଗୃହୀତ ହୋଇ ଅର୍ଥାଭାବରୁ ପ୍ରାୟ ଏକ ବର୍ଷ କାଳ ଅମୁଦ୍ରିତ ଅବସ୍ଥାରେ ପଡ଼ିଥିଲା । ସଂପ୍ରତି ମାନନୀୟ ଶ୍ରୀଯୁକ୍ତ ଖଲିକୋଟ ଅଷ୍ଟଦୁର୍ଗାଧୀଶ୍ୱର ମହୋଦୟଙ୍କ ଅନୁଗ୍ରହରୁ ଏହି ପୁସ୍ତକ ଖଣ୍ଡି ବିତରଣୋ-ଦ୍ଦେଶ୍ୟରେ ପ୍ରକାଶିତ ହେଲା । ଏଥିସକାଶେ ଉକ୍ତ ମହୋଦୟ ବିଶେଷ ଧନ୍ୟବାଦର ପାତ୍ର ।

ରମ୍ଭା ରାଜପ୍ରାସାଦ
୧୫ । ୭ । ୦୪

ଶ୍ରୀ ନୀଳମଣି ବିଦ୍ୟାରତ୍ନ
ସଂପାଦକ, ପ୍ରଜାବନ୍ଧୁ

[ଏଥିରୁ ଅନୁମିତ ହେଉ ଅଛି ଯେ "ଜାତୀୟ ସଂଗୀତ" ପୁସ୍ତକଟି ନିଶ୍ଚିତ ଭାବରେ ୧୯୦୩ ର ଲେଖା । ସଂକଳକ ]



# ଜାଗରଣ

୧

କାହିଁ କେତେ ଦୂରେ ବାଜେ ଏ ଅମୃତମୟୀ ବୀଣା,
ମୋ ଚଞ୍ଚଳ ମତ ଏଥି କମ୍ପାଇଁ ଅଚିରେ କଣା ?
ଏ ତ ଅଦଭୂତ
କି ଭାବେ ଏ ହୃଦ ମୋର ହୁଏ କ୍ଷଣେ ଅଭିଭୂତ !

୨

ସ୍ୱେର ନିଶୀଥ କାଳ, ନୀରବ ନିସ୍ତବ୍ଧ ମହୀ
କିଏ କେତେ ଦୂରୁଁ ମୋତେ, ଡାକେ ଦୂରେ ରହି ରହି ?
ସେ ମଧୁର ଆମନ୍ତ୍ରଣ
ଏ ବିକଳ ପ୍ରାଣେ କମ୍ପା ଦିଏ ପ୍ରୀତି ଆଶ୍ୱାସନ ?

୩

କିଏ ମୋ ହୃଦୟୁ ଗୀତି, ଗାଏ ଏ ପ୍ରଭାତ ରାଗେ ?
ନିରାଶ ଜୀବନ ମୋର, ଜାଗେ ନବ ଅନୁରାଗେ ।
ଆଶାର ମୋହନ ବାଣୀ
ଏ କ୍ଷୁଦ୍ର ଶରୀରୁ ମୋତେ ନିଏ କେଉଁ ରାଜ୍ୟ ଟାଣି ?

୪

ନିବିଡ଼ ତିମିର ଭେଦ ଆସେ କ୍ଷୀଣ ଜ୍ୟୋତି ଧାର,
ସତେ କାହିଁ କେତେଦୂର ଅଛି କି ମୋ ଧ୍ରୁବତାର ?
ମୁଁ କି ଦେଖଇ ସ୍ୱପନ ?
ସ୍ୱପନ. ନୁହଇ ଏହା ମଧୁମୟ ଜାଗରଣ ।

୫

ଜାଗିଛୁ ଜଗତେ ଏବେ ନବ ଆଶା ନବ ବଳେ,
ଉଇଁ ଆସୁଅଛି ଭାନୁ ପୂରୁବ ଗଗନ ତଳେ ।
ଏ ଯେ ସ୍ୱରଗ ଆହ୍ୱାନ,
ଦେବକାର୍ଯ୍ୟ, ପିତୃକାର୍ଯ୍ୟ କରିବାକୁ ସମାପନ ।

ମୁକୁର ୮ମ ଭାଗ ୧୦।୧୧ ସଂଖ୍ୟା ୧୩୨୧ ସାଲ



## ସରଳତା

୧

ଆସ ସରଳତା କୋମଳ ଭାଷିଣୀ
ନମ୍ର ବନଗିରି ନଭୃତ ବାସିନୀ
ଉଦାର ଉଜ୍ୱଳ ଆଲୋକ ପିହିତା
ପ୍ରକୃତିର ସୃଷ୍ଟି ପ୍ରଥମ ଦୁହିତା ।

୨

ଉବର ବିଭବ ବିକୃତ ରଚନା
ଲୋକ ଆଡ଼ମ୍ବର ବଡ଼ିମା ବାସନା ।
ଦୂରେ ପରିହରି ଯୋଗି ଜନ ପରି
ପଲ୍ଲୀପଥେ ସଦା ବିହର ସୁନ୍ଦରି ।

୩

ସତ୍ୟ ସହୋଦର ପ୍ରିୟ ସହଚରୀ
ହେ ଚିର କୁମାରୀ ଶୁଦ୍ଧ ଦିଗମ୍ବରୀ

ତବ ପାଣେ ହସେ ନିରତେ ଝକାଶେ
ଫୁଲ ରାଜି ବନେ, ତାରକା ଆକାଶେ ।

୪

ନାହିଁ ତୋର ଭୟ ନ ଥୁଏ ସଂଶୟ
ସହଜେ ସକଳେ ଦେଉ ପରିଚୟ ।

ସରଳତା ତୋର ମଧୁର ମୂରତି
ଜନମାଏ ଚିତ୍ତ ପରଣେ ପୀରତି ।

୫

ପଞ୍ଚନଦ ତୀରେ ପବିତ୍ର କୁଟୀରେ
ଯଜ୍ଞବେଦୀପୀଠେ ଶୁଦ୍ଧ ସାମ ଗୀରେ ।

ଆର୍ଯ୍ୟ ଋଷି ହୃଦେ ହେଲା ତୋ ଉଚ୍ଛ୍ୱାସ
ଉଚ୍ଛୁଳିଲା ଖିଳ ଜଗତେ ଉଲ୍ଲାସ ।

୬

ଘୋରବନେ ଯେବେ ଦେଖି କୌଞ୍ଚବଧ
ବ୍ୟାକୁଳେ ବାଲ୍ମୀକି ସେ ଅମର ପଦ, ।

ଗାଇଲ ଅଧୀରେ ପୁଣ୍ୟ ସିପ୍ରାଙ୍ଗରେ
ପ୍ରକଟିଲୁ ଭୂଷି କାବ୍ୟେ କ ରୁଚରେ ।

୭

କବି ଜଗନ୍ନାଥ ଭଗତ ଜଉମ
ସାଗର ସୈକତେ ବରଣ ଆଶ୍ରମ ।
ପ୍ରାଚୀର ସଂସ୍କାର ଅନ୍ଧ କୁଳଙ୍ଗର
ଦୂରେ ତେଜ କଲେ ସତ୍ୟର ପ୍ରସ୍ତର ।

୮

କଳ୍ପବଟ ସ୍ନିଗ୍ଧ ଗ୍ଛାୟାତଳେ ବସି
ଗାଇଲେ ଯେ ଗୀତ ଉତ୍କଳ ତପସ୍ୱୀ ।
କଳା କୁଟିଳତା ନାହିଁ ତହିଁ ଲେଶ
ଉଚ୍ଚଭାବ ସଙ୍ଗେ ତୋର ସମାବେଶ ।

୯

ସେ ସ୍ୱର୍ଗୀୟ ଭାବ ଅପୂର୍ବ ମାଧୁରୀ
ଥାଉ ନିରନ୍ତର ମୋ ଅନ୍ତର ପୂରି ।
ଆସ ମଧୁମୟୀ ଶାନ୍ତ ସରଳତା
ପ୍ରଚାର ମୋ ହୃଦ ଗଭୀର ବାରତା ।

('ମୁକୁର' ୬ଷ୍ଠ ଭାଗ ୩ୟ ସଂଖ୍ୟା ୧୩୧୮ ସାଲ)

[ ପଣ୍ଡିତ ଗୋପବନ୍ଧୁଙ୍କର ବିଭିନ୍ନ ସମୟରେ ରଚିତ କେତେକ କବିତା ସଂଗୃହୀତ ହୋଇ 'ଅବକାଶ ଚିନ୍ତା' ନାମକ ପୁସ୍ତକରେ ପ୍ରକାଶିତ ହୋଇଛି । ତାଙ୍କର ଆଉ କେତେକ କବିତା ଏବେ ମଧ୍ୟ ଅଜ୍ଞାତ ହୋଇ ରହିଯାଇଛି ।

ଉପରୋକ୍ତ କବିତା ଦୁଇଟି 'ଜାଗରଣ' ଓ 'ସରଳତା' 'ମୁକୁର' ସାହିତ୍ୟ ପତ୍ରିକାରେ ପ୍ରକାଶିତ ହୋଇଥିଲା । ପ୍ରଥମେ ପ୍ରାଚୀନ ମୁକୁରରୁ ସଂଗ୍ରହ କରିଥିଲେ ପୂର୍ଣ୍ଣଚନ୍ଦ୍ର କଲେଜର ଅଧ୍ୟାପକ ଶ୍ରୀ ନଟବର ସାମନ୍ତରାୟ (ବର୍ତ୍ତମାନ ଅବସରପ୍ରାପ୍ତ) । ]



# ମୂକ ମିନତି

ପୁଣ ଆଜ କଟକର ଜଲ ମେଜେଷ୍ଟ୍ରାର
ଏକଶତ ଚୌବାଳିଶ ଦଫାରେ ଅର୍ଡର

ଜାରି କରି ମୋର ମୁଖ କରିଛନ୍ତି ବନ୍ଦ
ସେଥି ଲାଗି ନୁହେ ମୁହିଁ ତିଳେ ନିରାନନ୍ଦ ।

ହୁକୁମ ନ ମାନି କାର୍ଯ୍ୟ କରିବାକୁ ଯାଇ
ମୋ ହୃଦେ ଶକତି ଦେଇଛନ୍ତି ବିଶ୍ୱସାଇଁ ।

କିନ୍ତୁ କଂଗ୍ରେସର ନାହିଁ ସେପରି ଆଦେଶ
ତେଣୁ ଏ ମୂକ ମିନତି କଲି ପରକାଶ ।

ହେ ପ୍ରିୟ ଉତ୍କଳବାସୀ ମୋ ଭାଇ ଭଉଣୀ
କାତର ନ ହୁଅ କେହି ଏ ବାରତା ଶୁଣି

ଯାହା କହିବାର ମୋର ଥିଲା ଦରକାର
କହିଅଛି ସମସ୍ତଙ୍କୁ ଦେଶେ ବାର ବାର ।

ମୋ ଶକତିମତେ ଯାଇ କରିଛି ପ୍ରଚାର
ନଗ୍ରେ ଗ୍ରାମେ ସ୍ୱରାଜ୍ୟର ଶୁଭ ସମାଚାର ।

ଅସହଯୋଗର ଶୁଦ୍ଧ ପୂର୍ଣ୍ଣ ମହାଦୀକ୍ଷା
ମହାତ୍ମା ଗାନ୍ଧିଙ୍କ ମନ୍ତ୍ର ଦେଇଅଛି ଶିକ୍ଷା ।

ଶୁଣିଛ ସକଳେ ହେବ ସ୍ୱରାଜ୍ୟ ପ୍ରଗତି
ଏକମେଳ ହୋଇ କଲେ ଭାରତ ଉନ୍ନତି !

କର ଆଗେ ଆତ୍ମ ଶୁଦ୍ଧି, ଅଫିମ, ଗଞ୍ଜେଇ
ମଦ, ଜୁଆଖେଳ, ନାଶ ଛାଡ଼ ଶୀଘ୍ର ଭାଇ ।

ଗ୍ରାମେ ଗ୍ରାମେ ପଞ୍ଚାୟତ କର ହେ ସ୍ଥାପନ ।
ପାପ ଅର୍ଜନାହିଁ ଦେଇ ଅଦାଲତେ ଧନ ।

ବିଦେଶୀ ବସ୍ତ୍ରକୁ ବୁଝ ପାପ ଆବରଣ,
ଛୁଅଁ ନାହିଁ; କର ତାହା ସତ୍ୱର ଦହନ ।

ପୂର୍ବର ଅରଟେ ସୂତା କାଟ ଘରେ ଘରେ
ଏ ଦେଶ କଉଡ଼ ଆଜ ନ ଖାଆନ୍ତୁ ପରେ ।

ହେଉ ପଛେ ଯେତେ ମୋଟା ସ୍ୱଦେଶୀ ବସନ
ପିନ୍ଧ ତାହା ଜନଗଣ ହୁଅଇ ଧନ୍ୟ ।

କହୁଛୁ ମୁଁ କେତେଥର ଏହି ଉପଦେଶ
ବକ୍ତୃତାର କାର୍ଯ୍ୟ ମୋର ହୋଇଅଛି ଶେଷ ।

ମୋ ପ୍ରିୟ ଉତ୍କଳବାସୀ ରୁଦ୍ଧ ମୋର ମୁଖ
ମୂକ ମୋତେ ଦେଖି ମନେ ପାଅ କି ହେ ଦୁଃଖ ?

ମୋ ମୁଖେ ଲଗାମ ପାଟି ନ ପାରିବ ଖୋଲି
ହାତ ଗୋଡ଼େ ପରେ ଲାଗିପାରେ ବା ଶାଙ୍ଖୋଳି ।

ନ କର ହେ ଏଥି ଲାଗି ଭୟ ବା ଭାବନା,
ସ୍ୱରାଜ୍ୟ ସାଧନ ପଥେ ଏ ଶୁଭ ସୂଚନା ।

ତୁମ୍ଭର ମୋ ପ୍ରତି ଥିଲେ ସେନେହ ମମତା
ଲାଗି କାର୍ଯ୍ୟେ ଶୁଣ ନାହିଁ ଅନ୍ୟ କାହା କଥା ।

ହେ ସ୍ୱରାଜ ମଣ୍ଡଳ କର କେତେ ବାହାଦୁରୀ
ଦେଶର ଉଦ୍ଧାର ପାଇଁ ପକାଅ ତ ହୁରି ।

ତ୍ରିପାବ କଟାକ ବେଳେ ଗଲା ଏବେ ଜଣା
ତୁମ୍ଭ ଦେଶଅନୁରାଗ ଜଘନ୍ୟ ଛଳନା ।

ଏବେ ସୁଦ୍ଧା ଅଛି ବେଳ, ଥିଲେ ହେ ବିଶ୍ୱାସ
ସେ ଗୋଲାମ କାରଖାନା ଛାଡ଼ି ବେଗେ ଆସ ।

ତୁମ୍ଭଲାଗି ବହୁ କାର୍ଯ୍ୟ ରହିଛି ଦେଶରେ
ବୀର ପ୍ରାଣେ ଲାଗ ଚିନ୍ତି ଉଲ୍ଲାସ ବେଶରେ ।

ଓକିଲ ଭାଇଏ କର ସ୍ୱାଧୀନ ଜୀବିକା
ଫଳରେ ଠକାରେ ତୁମ୍ଭ ଜୀବ ହେଲା ଶିକା ।

ଦେଶର ହିତୈଷୀ ବୋଲି କରୁଥିଲ ଗାନ
କହୁଥାଅ କେତେ ଲମ୍ବା ଲମ୍ବା କଥାମାନ ।

ଅସହଯୋଗ ଦଶାରେ ହେଲେ ଯେବେ ଭୁଲ
ଦେଖାଗଲା ତୁମ୍ଭ ମଧ୍ୟେ କାର କେତେ ମୂଲ ।

ଭାଇ ଭାଇ ବିବାଦରେ ତୁମ୍ଭର ବିଭବ
ଧଳା କଳା କରିବାରେ ତୁମ୍ଭ ଗଉରବ ।

ନିଜ ବୁକେ ହାତ ଦେଇ କହ ଭଲ ଭାଇ
ଅଦାଲତେ ଦେଶ ଧନ-ଧର୍ମ ଯାଉନାହିଁ ?

ଜାଣେ ତୁମ୍ଭ ମଧ୍ୟେ କେତେ ଛନ୍ତି ସଦାଶୟ
ଭବିଷ୍ୟତ ଭାବନାରେ ମନେ ତାଙ୍କ ଭୟ ।

ହୃଦୟର ଦୁର୍ବଳତା ବେଗେ ପରିହରି
ଦେଶ କାର୍ଯ୍ୟେ ଲାଗିଯାଅ ବୋଲି ହରିହରି ।

ତୁମ୍ଭଙ୍କୁ ଦେଖିଲେ ଲୋକେ ହେବେ ଉତ୍ସାହିତ
ବସାଇବେ ପଞ୍ଚାୟତ ହେବ ଦେଶହିତ ।

ଖୋଲିଦିଅ ଭାଇ ଦେଶୀ ନୂଆ କାରବାର
ନିଶ୍ଚୟ ସେଥିରେ ତୁମ୍ଭ ଚଳିବ ସଂସାର ।

ସରକାରୀ ନଉକରୀ କର ଯେବେ ଭାଇ
ଦେଶ କଥା ଏକାବେଳେ ଭୁଲିଯାଅ ନାହିଁ ।

ଏବେ ସୁଦ୍ଧା ଯାହାଙ୍କର ମନେ ଅଛି ଟାଣ
ଛାଡ଼ ସେ ଗୋଲାମି ଦିଅ ଦେଶକାର୍ଯ୍ୟେ ପ୍ରାଣ ।

ଯାହାଙ୍କର ଜନ୍ମି ଅଛି ଉତ୍କଟ ଆସକ୍ତି
ସ୍ୱୀକର ନ ଛାଡ଼ି କର ସଦା ତୁମ୍ଭ ଶକ୍ତି ।

ନ ପାରିଲେ କିଛି ଭାଇ ଅନିଷ୍ଟ ନ କର
ନିଜ ଜାତି ଖ୍ୟାତି ଗୋଟେ ନ ବିସ୍ମର ପର ।

ରାଜା ଜମିଦାର ଶୁଣ ମୋର ଏ ମିନତି
ଦେଇଛନ୍ତି ମହାପ୍ରଭୁ ତୁମ୍ଭଙ୍କୁ ସକତି ।

ଇଚ୍ଛୁକଲେ କରିପାର ବହୁଲୋକ ହିତ
ସ୍ୱାର୍ଥ ଅହଂକାରେ ଖାଲି ନ ରହ ଜଡ଼ିତ ।

ଅକାରଣ ପୀଡ଼ା ନାହିଁ ପରଜା ଖାତକ
ସୁରଗ ସୁବିଧା ପାଇ ନ ଲୋଡ଼ ନରକ ।

ପରଜା ଖାତକେ ଦେଖ ଏବେ କେତେ ସର ।
ଦାନା କନା ବିନା ଆହା ଯାଉଛନ୍ତି ମରି ।

ତାଙ୍କ ଭଲେ ତୁମ୍ଭ ଭଲ ବୁଝ ଯେବେ ଥରେ
ନ ମଜ୍ଜିବ କେବେ ହେଲେ ସରକାର ଡ଼ରେ ।

କରାଅ ହେ ଘରେ ଘରେ ଅରଟ ପ୍ରଚାର
ଗ୍ରାମେ ଗ୍ରାମେ ପଞ୍ଚାୟତେ କରାଅ ବିଚାର ।

ଏ ସବୁ ବିଧାନ ଆମ୍ଭ ଦେଶ ପୂର୍ବ ପ୍ରଥା
ଏଥିରେ କି ଅଛି କହ ରାଜଦ୍ରୋହ କଥା ?

ଉତ୍କଳର ନରନାରୀ ଜନସାଧାରଣ
ତୁମ୍ଭଠାରେ ଶେଷେ ମୋର ଏହି ନିବେଦନ ।

ଅନ୍ନ ବସ୍ତ୍ର ବିନା ଦେଶ ଏବେ ହୀନମାନ
ଲୁଟି ଖାଅ କାଟି ପିନ୍ଧ ପୂର୍ବ କଥା ମାନ ।

ସ୍ୱଦେଶୀ ବସନ ପାଶେ କେବେହେଁ ନଯାଅ
ଘରେ ଘରେ ସୂତ ବନ ଅରଟ ଚଳାଅ ।

ଲୁଗା ବୁଣି ଗ୍ରାମ ତନ୍ତୀ ରହନ୍ତୁ ସୁଖରେ
ହଟିବ ଦୁକାଳ ତାଙ୍କ ବରସ ମୁଖରେ ।

ଦେଶୀ ମୋଟା ଖଦି ପିନ୍ଧ ହୁଅ ଭାଗ୍ୟବାନ,
ଭାରତ ଜନନୀଙ୍କର ତାହା ଦିବ୍ୟ ଦାନ ।

ବିଦେଶୀ ସୁନ୍ଦର ଲୁଗା ସରୁ ସୂକ୍ଷ୍ମ ଧଡ଼ି
ଲୋଭେ ଚକ୍ଷୁ ଯାଅନାହିଁ କେବେ ଆଉ ପଡ଼ି ।

ଭୁଲାଇବା ପାଇଁ ଆଣି ଅଳପ ଦାମରେ
ବିଦେଶୀ ସଉଦାଗରେ ବିକବେ ଗ୍ରାମରେ ।

ହେଲେ ବେଶ୍ୟା ଯେତେ ଶସ୍ତା ଚତୁରୀ ସୁନ୍ଦରୀ
ହେବ କି ସେ ଧନୀଙ୍କର କୁଳବଧୂ ପରି ?

ଏବେ କାଳ ଘଟିଅଛି ଆତ୍ମ ଧର୍ମ ହାନି,
ଏଣିକି ଚଳ ହେ ଗାନ୍ଧି ଉପଦେଶ ମାନି ।

ସ୍ୱରାଜ୍ୟ ପାଣ୍ଠି କି କର ଶକ୍ତିମତେ ଦାନ,
ରହିବ ଏଥିରେ ଆମ ଜାତି ସନମାନ ।

ଜାଣେ ମୁଁ ଅନେକସ୍ଥାନେ ପାଷାଣ୍ଡ ଅନେକ
ଉଗ୍ରନ୍ତି ସ୍ୱମକୁ ନିଜେ ରଖିବାକୁ ଠେକ ।

ସେ ବୃଥା ଧମକେ ତୁମେ ନ ଡ଼ରିବ ଲେଶ
ହେଲେ ହେଉ ଯେତେ କଷ୍ଟ ଦୁଃଖ ଅବା କ୍ଳେଶ—

ସହିବା ସେ ସବୁ ଧରି ପଥରର ଗୁଣ,
ଚନ୍ଦ୍ରବଦନ ନ ଥିବ ଏ ଅମାବାସ୍ୟା ଘୃଣ ।

ସହିଛନ୍ତି କେତେ ବାଳ କେତେ ଅତ୍ୟାଗୁର
ସିଦ୍ଧି ପଡ଼ି ହେଲାଣି ଏ ଦେଶ ଘୁରଖାର ।

କି ସୁଖ ଅଛି ଜୀବନେ, ତେବେ କଆଁ ଭୟ
ସହିଲେ ସକଳ ଦୁଃଖ ଶେଷେ ହେବ ଜୟ ।

'ଅହିଂସା ପରମ ଧର୍ମ' ଏ ମହା ମନ୍ତ୍ର
ସଦା ଜପି ହୃଦେ ହୁଅ କାର୍ଯ୍ୟେ ଅଗ୍ରସର ।

ଧୀରତା ସଂଯମ ଶାନ୍ତ ରଖ ଅବିରତ
ଭାରତେ ସ୍ୱରାଜ୍ୟ ଲଗି ଏହି ଏକା ପଥ ।

ହେ ଉତ୍କଳବାସୀ ରଖ ଏ ମୂକ ମିନତି
ଅଛି ଯେବେ ସ୍ନେହ ଦୟା ଅକଞ୍ଚନ ପ୍ରତି ।

'ସମାଜ' ୨୪ । ୯ । ୧

[ ୮ । ୯ । ୨୧ ତାରିଖରେ ଅସହଯୋଗ ଆନ୍ଦୋଳନ ଫଳରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଉପରେ ପ୍ରଥମ ହୋଇ ୧୪୪ ଧାରା ଜାରି ହୋଇଥିଲା। ସେତେବେଳେ ସେ କୌଣସି ସଭାସମିତିରେ ଭାଷଣ ଦେବାକୁ ବଞ୍ଚିତ ହୋଇ ଏହି କବିତାଟି ଲେଖିଥିଲେ । ]